# ଟିପି ଟିପି ଅନ୍ଧାର

ରଜନୀକାନ୍ତ ମହାନ୍ତି



# ଝିପିଝିପି ଅନ୍ଧାର

ଗଳ୍ପ-ଗ୍ରନ୍ଥ

ଲେଖକ : ରଜନୀକାନ୍ତ ମହାନ୍ତି ■ ପ୍ରକାଶକ : ଅକ୍ଷର, କଲ୍ୟାଣୀନଗର, କଟକ-୧୩ ■ ଅକ୍ଷରସଜ୍ଜା : ଶବ୍ଦଲିପି, କଲ୍ୟାଣୀ ନଗର, କଟକ-୧୩ ■ ମୁଦ୍ରଣ : ଟେକ୍ନୋ ଆର୍ଟସ ଅଫ୍‌ସେଟ୍, କଲ୍ୟାଣୀନଗର, କଟକ-୧୩ ■ ମୂଲ୍ୟ : ଟ.୬୦/-

ପ୍ରଥମ ସଂସ୍କରଣ ■ ବସନ୍ତ ପଞ୍ଚମୀ, ୨୦୦୨

## JHIPI JHIPI ANDHARA

*A collection of short stories*

Author : **Rajanikanta Mohanty** ■ Publisher : **AKSHARA**, Kalyani Nagar, Cuttack-13 ■ Type setting : **SABDALIPI**, Kalyani Nagar, Cuttack-13 ■ Printed at **Techno Arts Offset**, Kalyani Nagar, Cuttack-13 ■ Price : Rs. 60/-

First Edition ■ Basanta Panchami-2002

# ମୁଖବଂଧ

ଏହି ସଂକଳନରେ ସ୍ଥାନିତ ଗଳ୍ପ ଗୁଡ଼ିକ ବିଗତ ଦୁଇ ଦଶଂଧି ମଧ୍ୟରେ ଓଡ଼ିଶାର ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ହୋଇଥିଲା । କେତୋଟି ଗପ ତାର ଆବେଦନର ତୀବ୍ରତା ଯୋଗୁଁ 'ବିଶେଷ ଗଳ୍ପ' ଓ 'ସ୍ମରଣୀୟ ଗଳ୍ପ' ସ୍ତରରେ ପତ୍ରିକାମାନଙ୍କରେ ମଣ୍ଡିତ ହୋଇଛି । ସେ ପତ୍ରିକାମାନଙ୍କର ସୁଯୋଗ୍ୟ ପ୍ରକାଶକ ଓ ସଂପାଦକଙ୍କଠାରେ ମୁଁ କୃତଜ୍ଞ ।

ଗପଗୁଡ଼ିକ ନିଜେ ହିଁ ନିଜର ପରିଚୟ । ପ୍ରତିଟି ଗପର ଭାବଭୂମିରେ ବାସ୍ତବତାର ବୀଜ ଖୋଜିଲେ ମିଳିବ । ଚରିତ୍ର, ତାର ବାତାବରଣ ଓ ପରିବେଶର ଯେଉଁ ଅମର ମୁହୂର୍ତ୍ତ ସହ ମୁଁ ଏକାତ୍ମ, ସେହି ସୃଷ୍ଟିଅଙ୍କୁର ହିଁ ଗପ ହୋଇଯାଇଛି । ଚରିତ୍ର ଓ ଲେଖକ ସମାନ୍ତର ଭାବରେ ଗତି ନ କରି ଅର୍ଥାତ୍ ଲେଖକ ଦ୍ୱିତୀୟ ପୁରୁଷ ବା ଧାରକ ନ ରହି ଏକ ଓ ଅଭିନ୍ନ ହୋଇଯାଇଛନ୍ତି, ନିବିଡ଼ ଓ ଏକାତ୍ମ ହୋଇ ଯାଇଛନ୍ତି ଗପରେ । ଉତ୍ତର ବିଂଶ ଶତାବ୍ଦୀର କଥା ସାହିତ୍ୟରେ ଏଭଳି ଗତିଶୀଳ ପ୍ରକ୍ରିୟା ଏକ ସ୍ୱତନ୍ତ୍ର ସ୍ଥାନ ଗ୍ରହଣ କରିଛି । ଏହାହିଁ ସୃଜନଶୀଳ ବାସ୍ତବତା ବା Creative Realism. ଚରିତ୍ର

ମଧ୍ୟରେ ଲେଖକର ପ୍ରବେଶ ଏବଂ ଲେଖକ ଭିତରେ ଚରିତ୍ରର ପ୍ରବେଶ ଘଟିଛି ସୃଜନ ପ୍ରବଣତାରେ ।

ପୂର୍ବରୁ ସାମାଜିକ ଅଂଗୀକାରକୁ ନେଇ ଗପ ଲେଖା ଯାଇଛି ଅର୍ଥାତ୍ ଲେଖକଙ୍କର ସଚେତନତା ସେଠି କ୍ରିୟାଶୀଳ ହୋଇପଡ଼ିଛି । ଅଷ୍ଟମ ଦଶକ ପରେ ସମାଜ ନିଜେ ହିଁ ଲେଖିହୋଇଯାଇଛି । ଆଙ୍କି ହୋଇ ଯାଇଛି । ଲେଖକ ସୃଷ୍ଟିକ୍ରିୟାର ଏକ ମାଧ୍ୟମ ପାଲଟି ଯାଇଛି । ସଂକଳିତ ଗପଗୁଡ଼ିକ ମଧ୍ୟରେ କେତୋଟି ଗପ ଏଇ ପୃଷ୍ଠଭୂମିରେ ଉତ୍ତୀର୍ଣ୍ଣ ।

ଏଇ ସଂକଳନଟିକୁ ଆଲୋକକୁ ଆଣିବାରେ ପ୍ରଖ୍ୟାତ 'ଅକ୍ଷର' ପ୍ରକାଶନୀ ସଂସ୍ଥାର ନିର୍ଦ୍ଦେଶକ ତଥା କବି ବଂଧୁ ଶ୍ରୀ ଗିରିଜାକୁମାର ବଳୀୟାରସିଂଙ୍କ ଅନ୍ତରଂଗ ଆଗ୍ରହ ମୋତେ ଅଭିଭୂତ କରିଛି । ବଂଧୁତ୍ୱ ଐଶ୍ୱର୍ଯ୍ୟର ପ୍ରତିଦାନ ନାହିଁ । ଭାଷା ଅସମର୍ଥ ସେଠି ।

ଏହି ସଂକଳନଟିକୁ ପ୍ରସ୍ତୁତ କରିବାରେ ଓ ନାମକରଣ କରିବାରେ ମୋର ଭ୍ରାତୃବଧୂ ଶ୍ରୀମତୀ ଶୁଭଶ୍ରୀ ଦାସ ଏବଂ କନ୍ୟା ଲୋପାମୁଦ୍ରାର ଭୂମିକା ସ୍ମରଣୀୟ ଓ ଶ୍ରଦ୍ଧାସ୍ପଦ ।

ମୋର ଅନ୍ୟାନ୍ୟ ସଂକଳନ ଭଳି ଏହି ପୁସ୍ତକଟି ପାଠକୀୟ ଶ୍ରଦ୍ଧା ଲାଭ କରିବ ବୋଲି ବିଶ୍ୱାସ ।

ବସନ୍ତ ପଂଚମୀ — ବିନୟାବନତ

ଭଦ୍ରକ — **ରଜନୀକାନ୍ତ ମହାନ୍ତି**

# ସୂଚୀ


ଅକାଳ ■ ୧

ଲଗ୍ନାଧିପତି ■ ୧୦

ବାଟୋଇ ■ ୨୪

ଗୁଧାଡ଼ି ବେଳ ■ ୩୩

ଗଣନାୟକ ■ ୪୪

ନଅଙ୍କ ■ ୫୬

ଶିଶୁ ■ ୬୩

କାଳଫାଶ ■ ୭୪

ମା ■ ୮୨

ଆବିଷ୍କାର ■ ୯୦

କାନି ■ ୧୧୨

# ଅକାଳି

ପାଗଳ ରାତି ତା'ର ଅନାବନା ସଙ୍ଗୀତରେ ବିଭୋର । ତା'ର ଆବେଶରେ ଦନେଇ ଛନ୍ଦିଗଲାନି । ଆକାଶରେ ଲଗ୍ନଛୁଆଁ ମେଘ ସବୁ ଲାଜ ଲାଜ ଅପସରି ଯାଉଛନ୍ତି । ଥୋପା ଥୋପା ଜହ୍ନ ବିଛୁରି ହୋଇପଡ଼ି ନିଜକୁ ନିଃଶେଷ କରିବାରେ ଆକୁଳ । ଚାହାଁକା ମାରି ବିନିଦ୍ର ତାରା ସବୁ ପୁତ୍ରହରା ବୃଦ୍ଧ ଭଳି ଏକୁଟିଆ ଏକୁଟିଆ ନିଃସ୍ୱପ୍ନ । ସେ ସବୁକୁ ଲଳିତ ନେତ୍ରରେ ଅପଲକ ହେବା ଦୂରର କଥା, ଦନେଇ ଆଖି ସେ ଆଡ଼କୁ କଣେଇଲା ନାହିଁ । ଅଂଧାରର ପର୍ଦ୍ଦାକୁ ଡେଣାରେ ଆଡ଼େଇ କେତୋଟି ନିଶାଚର ନିସ୍ତବ୍ଧତାର ସୁଯୋଗରେ ନିଜର ରାବକୁ ଜାହିର କରି ଉଡ଼ିଯାଉଥିଲେ ଦୂରକୁ । ସେ ଶବ୍ଦ ଦନେଇ କାନ ଭେଦ କରିପାରିଲାନି । ଏକ ନାହିଁନଥିବା ଆଖିରେ ଚାହିଁ ରହିଥିଲା ତା ସ୍ତ୍ରୀ ରତନୀ ଚୁଲି ଉପରେ ତାଉଆରେ ସେକୁଥିବା ରୁଟିକୁ । ଫୁଲି ଉଠୁଥିଲା ରୁଟି । ଫୁଲି ଉଠୁଥିଲା ଦନେଇର ଆଖି । ଫୁଲି ଉଠିଲା ରତନୀର ମୁହଁ : କାଲିଠୁଁ ମୋ ଛୁଆ ଉପାସରେ ଆଉଟି ପାଉଟି ହଉଚନ୍ତି । ସକାଳେ ମୁଢ଼ି ଟଙ୍କାକର ସମସ୍ତଙ୍କର ପାଟିରେ ବାଜିଛି ଯାହା । ତିନି ବର୍ଷର ପୁଅ ମୁଠୁ, ପାଞ୍ଚ ବର୍ଷର ଝିଅ ମନ୍ଦି, ସାତ ବର୍ଷର ପୁଅ ଚଗଲା, ନଅବର୍ଷର ଝିଅ ସାବି ଚୁଲି ଚାରିପାଖକୁ ଘେରି ନାହାଳଉଛନ୍ତି । ଚଗଲା କହୁଛି : ବୋଉ ! ଆଗ ମୋତେ ଦବୁ । ମୁଠୁ କହୁଚି : ବୋଉ, ଉଟି ! କାଶୀ ବିଲେଇଟା ମିଆଁଉ ମିଆଁଉ ହୋଇ ଏପାଖ ସେପାଖ ହଉଚି । ରତନୀ ଲିଭିଯାଉଥିବା ଚୁଲି ଭିତରକୁ ଅମରୀଡ଼ାଙ୍ଗ ମୁହାଁଇ ଦଉଚି । ପିଲାମାନଙ୍କୁ କହୁଚି- 'କେହି ପାଟି କରନି । ଚୁପ୍‌ଚାପ୍ ବସ । ପେଟେ ପେଟେ ରୁଟି ଖାଇ ପାଣି ପିଇ ଶୋଇ ପଡ଼ିବ ।'

ଦନେଇ ଏକାଧାରରେ ଚାହିଁଚି ଫୁଲି ଉଠୁଥିବା ରୁଟିକୁ । ଏଇ ରୁଟି : ଫୁଲୁଚି ଆକାଶର କଳାହାଣ୍ଡିଆ ମେଘ ଭଳି । ସାଗରର ଢେଉ ଭଳି । ଯୌବନର ଛାତି ଭଳି ।

ଗର୍ଭିଣୀର ପେଟ ଭଳି । ଏଇ ରୁଟି ଆଣିଚି ହିଂସା ଓ ଅହିଂସାର ଆଦର୍ଶ । ରୁଟି ଜୀବନ ନେଇ ଆସିଚି । ଦନେଇ ଆଣ୍ଠୁ ଯୋଡ଼ି ତା ଉପରେ ମୁଣ୍ଡ ଥୋଇ ଚାହିଁଚି ସଂସାର ଆର ପାରିର ଆଖିରେ । ପୁଅ ଡୋଳା ବୁଲୁନାହିଁ । ମୁହଁରେ ବିଧବା ହସ, ଯେଉଁ ହସର ନାମକରଣ ବିଶ୍ୱକୋଷରେ ନାହିଁ । ମୁହଁର ହସ ଓ ଆଖିର ଚାହାଣି ପାଇଁ ବନ୍ଦିତ ଶ୍ରୀକୃଷ୍ଣର ହସ ଓ ଚାହାଣି ସେଠି ନିସ୍ତେଜ !

ଘରଚଟିଆ ବାୟା ହେଇ ଏପାଖରୁ ସେ ପାଖ ଉଡୁଚି । ଏ ରୁଅରୁ ଯାଇ ସେ ରୁଅରେ ବସୁଚି । ପାଖ ସଜନା ଗଛ ଉପରୁ ପେଚା ହୁତ୍ରୁତ୍ରୁ ହୁତ୍ରୁତ୍ରୁ ହେଉଚି । ଗଡ଼ିଆ ପାଣି କଳାଘୁମର କାଟି ଫୁଲିଉଠୁଚି । ମଥାନ ରୁଅ କଟ୍‌କଟ୍ ହେଲାରୁ ଚମକିଗଲା ରତନୀ । ପଚାରିଲା : ଶୁଣୁଚ ! ରୁଅ କଟ୍‌ମଟ୍ ହଉଚି । କେତେ ଅଶୁଭ, କି କାଳ ଯୁଟିଛି ଆସି, ହେ ଭଗବାନ୍ !

ଭଗବାନଙ୍କ ନାଁ ଶୁଣି ଦନେଇର ଆଖି ପୁଣି ସଂସାରୀ ହେଇଉଠିଲା । ଓହ୍ଲାଇ ଆସିଲା ଦୂରନ୍ତ ନାମହୀନ ରାଜ୍ୟରୁ । ସେ ହସିଲା । ହସରେ ସାମାନ୍ୟ ଶବ୍ଦ କି ସ୍ୱର ନାହିଁ । ଅଥଚ ବିଦ୍ରୂପ ଓ ବିଦ୍ରୋହର ତୀବ୍ର ଝଲକ ମୁହଁରେ ଖେଳିଗଲା । ଭଗବାନ ! ତମର ଏମିତି କେବେ ହେଇଚି ଯେ ତମ ପିଲାମାନେ ଦୁଇଦିନ ଉପବାସ ରହିବା ପରେ ତମ ସ୍ତ୍ରୀ ତୁମକୁ କହିଲା : ତୁମ ବାପା ପଣିଆକୁ ଚାହିଁ ରହିବା ଅପେକ୍ଷା ରାତିରେ ହାଇୱେ ସଡ଼କକୁ ଉଠିଯାଇ ଲାଇନ୍ ଟ୍ରକ୍‌କୁ ହାତ ଟେକି ଅଟକାଇ ଡ୍ରାଇଭର ସହ ଅମରୀ ବୁଦା ମୂଳକୁ ଚାଲି ଯାଇଥିଲେ ମୋ ଛୁଆ ଉପାସ ରହି ନଥାନ୍ତେ ! କିନ୍ତୁ ମୋର ଦୁର୍ଭାଗ୍ୟ ଯେ ଏ ଦେହ ସେତକ ପାରିବ ନାହିଁ । ମୋ ରୂପ ଦେହ ଏମିତି ହେଇଯାଇଚି ଯେ ମାଗଣାରେ ବି କେହି ମୋତେ ଛୁଇଁବ ନାହିଁ । ସେଠୁ ତମ ଚାରୋଟି ଯାକ ଛୁଆ ମାଆକୁ ଘେରି କୁହାଳିଲେ : ବୋଉ ! ଭୁକ ଲାଗିଲାଣି, ବୋଉ ଖାଇତେ ଦେ' ବୋଲି ! ଏବଂ ତୁମର ସ୍ତ୍ରୀ ଦୁଃଖ ଓ ରାଗରେ କଡ଼ମଡ଼ ହୋଇ ଗୋଟେ ଅମରୀ ଡାଙ୍ଗରେ ଛୁଆମାନଙ୍କୁ ନିର୍ଘାତ ପିଟିଲା ଏବଂ କହିଲା- ବିଷ ଟିକେ ମିଳନ୍ତା ଭଲା, ତମକୁ ସବୁ ଟିକେ ଟିକେ ଦେଇ ମୁଁ ବି ଖାଇ ଦିଅନ୍ତି । କିନ୍ତୁ ସେ ଜିନିଷ କେହି ବି ଧାର ଉଧାର ଦେବେ ନାହିଁ । ଯାଆ, ଜନ୍ମକରା ବାପ ପାଖକୁ ଯାଆ ! ତମ ସ୍ତ୍ରୀ ଭୋଭୋ କାନ୍ଦିଲା । ପିଲାମାନେ ରାହା ଛାଡ଼ି କାନ୍ଦି ଉଠିଲେ । ଖୁଁ ଖୁଁ କାଶୁଥିବା ଛାତି ପିଞ୍ଜରାରୁ ତମର ଦୀର୍ଘଶ୍ୱାସ ଲହଡ଼ି ମାରିଲା । ତମେ ଆଶ୍ଚର୍ଯ୍ୟ ହେଲ । ଖୁଁ ଖୁଁଇଁଆଁ କାଶରେ ନଷ୍ଟ ହୋଇ ସାରିଥିବା ଛାତି, ସରୁପେଁ ହାତଗୋଡ଼, ହାତୀପାଦ ଭଳି ମୋଟା ବାତୁଆ ପାଦ ଓ ଇଞ୍ଚେ ଲେଖାଁ କୋଟରଗତ ଆଖି ବିଶିଷ୍ଟ ତମ ଦେହ ଯେଉଁଥିରେ କଣ୍ଟା ବାଜିଲେ ବି ରକ୍ତ ହଠାତ୍ ବାହାରି ପାରେନି, ନିଃଶେଷ ପ୍ରାୟ କଲିଜା, ସେଭଳି ଦେହର ଆଖିକୋଣରୁ ତମର ତତଲା ଲୁହ ଆସିଲା କିପରି !

ବଞ୍ଚିବା ଲାଗି ସଂଘର୍ଷ ନାମକ ଆପ୍ତବାଣୀକୁ କାନ୍ଧେଇ ତମେ ସଂଜ ସଂଜୁଆ ହିଡ଼ରେ ଢିପେଇ ଢିପେଇ ବଜାରକୁ ଗଲ । ତମେ ଜାଣ ତମକୁ କେହି ଧାର ଉଧାର ଦେବେ ନାହିଁ । କାରଣ ତମଠୁ କେବେ ପରିଶୋଧ ପାଇବାର ଆଶା ନାହିଁ । ତମେ ତମର ପୁରାତନ କାଠ କାରଖାନାରେ ପହଞ୍ଚିଲ । ବଢ଼େଇ ହିସାବରେ ସେଠି ତମେ ପନ୍ଦର ବର୍ଷ ଖଟିଛ । କାଠମିସ୍ତ୍ରୀ ଭାବରେ ତମର ସୁନାମ ଥିଲା । ତମକୁ କାରଖାନାର ମାଲିକ ଚାହିଁଲା । ଦେଖିଲା । କେମିତି ଅଛୁ ଦନେଇ, ଦେହ କେମିତି ଅଛି, କିଛି ପଚାରିଲାନି । ଅଥଚ ତମେ ଦୀର୍ଘ ପନ୍ଦର ବର୍ଷ ଧରି  କାମ କରି କାରଖାନାର ନାଁ ବଢ଼େଇବାରେ, ମାଲିକର ରୋଜଗାର ବଢ଼େଇବାରେ ଶ୍ରେଷ୍ଠ ଅଂଶୀଦାର ଥିଲ । ମାଲିକ ଗଂଭୀର ହୋଇ ତା ନିଜ କାମରେ ଲାଗିଲା । ଖାଲି ସେତିକି ନୁହେଁ । ତମେ ସେଠି ପହଞ୍ଚିବା କ୍ଷଣି ମାଲିକ ମୁହଁରେ କିଛି ବିରକ୍ତି, କିଛି ଅସନ୍ତୋଷ ନେସି ହେଇଗଲା । ସେ ଜାଣେ ତମେ ସେଠି ପହଞ୍ଚିବାର ପ୍ରକୃତ କାରଣଟି । ତମର ପୂର୍ବତନ ସହକର୍ମୀମାନେ ତୁମକୁ ଦେଖିଲେ । ମୁହଁ ତଳକୁ କଲେ । ଦୀର୍ଘଶ୍ୱାସ ଛାଡ଼ିଲେ । ସେମାନଙ୍କର ମୁହଁ ଗୁଡ଼ିକ କାଆଁଳ ରୋଗୀଭଳି ଶେତା ପଡ଼ିଗଲା । କାହିଁକି ଜାଣ ? ତମକୁ ଦେଖି ସେମାନଙ୍କ ମନରେ ସଚେତନତାର ଦ୍ୱାର ଖୋଲିଗଲା । ଯେଉଁ ମିସ୍ତ୍ରୀ ଦୀର୍ଘ ପନ୍ଦର ବର୍ଷ ଧରି ରକ୍ତ ଦେଇ କାରଖାନାର ଚଉତରାକୁ ମଜବୁତ୍ କରିଗଲା, ସେଇ ମିସ୍ତ୍ରୀ ଆଜି ସେଇ କାରଖାନାର ମାଲିକ ପାଖରେ ହାତପାତି ବସିଛି । ସାଜିଛି ଭଦ୍ର ଭିକାରୀ । କାଳେ ଆମର ପରିସ୍ଥିତି କେବେ ଏମିତି ହେଇଯିବ କି ? ଏଇ ଅକାଳ ଭୟରୁ !

ତମେ ଚୁପ୍‌ଚାପ୍ ଗୋଟେ ବେଞ୍ଚରେ କାଙ୍କରି କୁଙ୍କୁରି ବସିଲ । କାରଖାନା ମାଲିକ କିଛି କହିଲାନି । ତମେ ବି ମୁହଁ ଖୋଲି ପାରିଲନି । ଅନ୍ୟକୁ ମାଗିବା, ହାତପାତିବାରେ, ଏପରିକି ଭିକ ମାଗିବାରେ ବି ଏକ ସମ୍ମାନ ଜନକ ଉପ୍ରୋଧ ରହିଛି । ମାଗିବାକୁ ମୁହଁ ଖୋଲେ ସତ, କିନ୍ତୁ ଦାବି କଲାଭଳି ତା'ର ରୂପ ସେତେ ସିଧା, ସହଜ ହୁଏନା । ପାଟି ଓ ତଣ୍ଟିର ସ୍ନାୟୁ ଓ ମାଂସପେଶୀ ଏତେ ଖୋଲା ହୋଇ ପାରନ୍ତି ନାହିଁ ।

ରାତି ବଢୁଛି । ତମେ ବସିଲ ଚୁପ୍‌ଚାପ୍ । ବେଳେବେଳେ ଖୁଁ ଖୁଁ କାଶିଲ ବି । ତମର ସେ କାଶ ମାଲିକକୁ, ସହକର୍ମୀମାନଙ୍କ ଛାତିକୁ ଦୋହଲାଇ ଦେଉଥିଲେ ବି ସେମାନେ ତୁମ ଆଡ଼କୁ କଣେଇ ଚାହିଁଲେନି । ସେମାନେ ଦେଖେଇ ଦେବାକୁ ଚାହାନ୍ତି ଯେ ତମର ଉପସ୍ଥିତି ସେମାନଙ୍କଠି ଗୁରୁତ୍ୱହୀନ । ରାତି ବଢ଼ିଲାରୁ ଜଣେ ଜଣେ ମିସ୍ତ୍ରୀ ବିଦାୟ ନେଲେ । ତମେ କିନ୍ତୁ ବସିଛ । କେମିତି ଏକ ଜିଦ୍‌ରେ । ତମେ ଆଜି ହାରିବାକୁ ଆସିନାହଁ । କାରଖାନା ମାଲିକ ଆସି ଚେୟାରରେ ବସିଲା । ତମେ ମୁହଁ ଖୋଲିଲ : ବାବୁ ମୁଁ ଆସିଥିଲି.........

ଦେଖ୍ ଦନେଇ, ତୁ ଆଉ ଏଠି ଝମେଲା କରନା । ମୋତେ ଆଉ ହଇରାଣ କରନା । ତୁ କ'ଣ ପାଇଁ ଆସିଛୁ, ମୁଁ ଜାଣେ....... ମାଲିକ ଉତ୍ତର କଲା ।

ବି ଦିନ୍ ହେଲା ପିଲାଙ୍କ ମୁହଁରେ ତୁଣ୍ଡି ଦିଆହେଇଚି । ଟିକେ ଦେହ ଭଲ ଲାଗିଲେ କାମ କରି ସୁଝି ଦେବି ଯେ ! ଏତକ କହିଲା ବେଳକୁ ତୁମ ତଣ୍ଟି ରୁନ୍ଧ ହୋଇ ଆସିଲା ।

ଏମିତି ତ ତିନିଥର ନେଲୁଣି । ମୁଁ ଆଉ କେତେ ସମ୍ଭାଳିବି ? ତୁ ଅନ୍ୟ ପନ୍ଥା ଦେଖ । ମାଲିକ ଚଢ଼ାଗଳାରେ ଦାବିଲା ।

ମୁଁ ଆଜି ଫେରିବିନି ବାବୁ ! ତୁମ ଥରିଲା କଣ୍ଠରେ ଥିଲା ଦୃଢ଼ତା ।

ମାଲିକ କିଛି ସମୟ ଗୁମ୍ ମାରି ବସିଲା । ତା'ପରେ ନିଜ ବିରକ୍ତିକୁ ବ୍ୟବସାୟୀ ଢଙ୍ଗରେ ଚାପିଧରି କହିଲା-ପନ୍ଦର ବର୍ଷ ମୋର କାରଖାନାରେ କାମ କରିଛୁ । ସେ ଉପ୍ରୋଧକୁ ମୁଁ ଏଡ଼ି ପାରୁନି । ତୋ ଅବସ୍ଥାକୁ ବି ଏଣେ ସହିପାରୁନି । ଶେଷଥର ପାଇଁ ମୁଁ କହି ଦେଉଚି, ଆଉ କେବେ ଆସି ମୋତେ ହର୍‌କତ କରିବୁନି । ସେତେବେଳେ ମୁଣ୍ଡ କୋଡ଼ିହେଲେ ବି ମୁଁ ଶୁଣିବିନି । କାରଖାନାରେ କାମ କଲାବେଳେ ତୋତେ ସବୁଠୁଁ ବେଶି ଦରମା ଦେଇଚି । ତୋର ସୁବିଧା ଅସୁବିଧାରେ ଛିଡ଼ା ହୋଇଚି । କହ ହଁ କି ନାହିଁ ? ଏତକ କହି ମାଲିକ ତମକୁ ପାଞ୍ଚ ଟଙ୍କା ବଢ଼ାଇଲା ।

ହଁ, ମୋଠୁ ସେମିତି କାମ ପାଉଥିଲ । ମୋ ଯୋଗୁ ତମ କାରଖାନା ଏ ସହରରେ ସବୁଠୁଁ ନାଁ ଡାକ୍ । ସେଥିପାଇଁ ଦେଉଥିଲ । ସୁବିଧା ଅସୁବିଧା ବୁଝୁଥିଲ । ମୁଁ ଯେମିତି ତୁମର କରଛଡ଼ା ନ ହୁଏ । ସେଭଳି ଫାନ୍ଦରେ ମୋତେ ଅଟକେଇ ରଖିବା ପାଇଁ ମୋ ଭଲ ମନ୍ଦ ସୁବିଧା ଅସୁବିଧା ପ୍ରତି ତମର ନଜର ଥିଲା । ନ ହେଲେ କ'ଣ ଖାଲିଟାରେ ତମର ସ୍ନେହ ଶ୍ରଦ୍ଧା ଉଛୁଳି ପଡୁଥିଲା ମୋ ଉପରେ ? ଦିଅ ନିଅ, ଏଇଟା ଯେତେବେଳେ ଏ ହିସାବୀ ଦୁନିଆଁର ସବୁଠୁଁ ବଡ଼ ସର୍ତ୍ତ, ତମେ ତାଠୁଁ କେତେ ଅଧିକା ଆଗେଇଚ ଯେ ! ଆଜି ଯଦି କିଛି ଟଙ୍କା ନଦିଅ କାଲି ତମର ଅପମାନ ହେବ ଯେ, ଯେଉଁ ମିସ୍ତ୍ରୀ ବର୍ଷ ବର୍ଷ ଧରି କାରଖାନାରେ ରକ୍ତ ନିଗାଡ଼ି କାରଖାନାକୁ ଏତୁଟିଏ କଲା, ସେହି ମିସ୍ତ୍ରୀର ରକ୍ତ ଶୁଖି ଯାଉଥିଲାବେଳେ କାରଖାନା ମାଲିକ ତା ଥାଳକୁ ଫେରାଇ ଦେଲା ! ..... କିନ୍ତୁ କିଛି କିହିଲନି ତମେ ।

: ଆଉ ଗୋଟେ... କହି ତମେ ହାତ ପାତିଲ । ଏକ ପ୍ରକାର ଜିଦ୍‌ରେ । କାରଖାନା ମାଲିକ ବିରକ୍ତି ସଡ଼ ସଡ଼ ମୁହଁରେ ଆଉ ଗୋଟେ ଟଙ୍କା ତୁମକୁ ବଢ଼େଇଲା ଏବଂ ତମେ ସିଧାସଳଖ ବଜାର ଭିତରକୁ ଆସିଲ । କିଛି ଅଟା କିଛି ଆଳୁ କିଣିସାରିଲା ପରେ ଝୁଲାଟା ଜଣାଗଲା ଯେମିତି ତମର, ତମ ସ୍ତ୍ରୀର, ତମ ପିଲାମାନଙ୍କର ଜୀବନ ସେଇ ଝୁଲାଟିରେ ଖେଳୁଛି । ତମ ମୁହଁରେ ହସ ଚହଟିଲା ଏବଂ ତମେ ତରତର ପାଦରେ ଘର ମୁହାଁଇଲ । କିଛି ବାଟ ଆସିଲା ପରେ ତମ ମୁହଁ ଶୁଖିଆସିଲା । ପାଦ ଥିର ଥିର ପଡ଼ିଲା । ନିଃଶ୍ୱାସ ଦୁହିଁ ଆସିଲା । ତମେ ପ୍ରଶ୍ନକଲ ନିଜକୁ : ଏ ଓଳିଟା ବଞ୍ଚିଗଲେ କାଲିକୁ ? ପଅର ଦିନକୁ ? ତା'ପର ଦିନକୁ ? ଏ ପ୍ରଶ୍ନ ପରେ ତମେ

ଛିଡ଼ାହେଇ ପଡ଼ିଲ । ଆଖି ଆଗକୁ ବଢ଼ିଲାନି । ଭବିଷ୍ୟତ ବର୍ତ୍ତମାନର ବିଛଣା ସଜାଡ଼ି ଦେଉଛି । ତମେ ଜଡ଼ସଡ଼ ହୋଇପଡ଼ିଲ । ଆକାଶରେ ତାରାମାନେ ନଥିଲେ, ନଥିଲେ ବି ଜହ୍ନ ଓ ମେଘ । ପାଦତଳେ ଭୂଇଁ ନଥିଲା । ଏକ ଶୂନ୍ୟ ମଣ୍ଡଳରେ ତୁମର ଅସ୍ତିତ୍ୱ ମିଳାଇ ଯାଉଥିଲା । କିଟିକିଟା ଅନ୍ଧାରପଲର ହୁଙ୍କାରରେ ତମ ନିଃଶ୍ୱାସର ଶବ୍ଦ ଧୀରେ ଧୀରେ ଅସ୍ତ ହୋଇଗଲା ଯେମିତି । ଅଟା ଓ ଆଳୁ ଥଳି ଧରି ତମେ ବସିପଡ଼ିଲ ରାସ୍ତା କଡ଼ରେ । ରାସ୍ତା ଥିଲା ଶୁନ୍‌ଶାନ୍ । ବଜାର ହାଟ ଫେରନ୍ତା ବାଟୋଇ ସବୁ ଘରକୁ ଫେରି ସାରିଥିଲେ । ଜନପଦ ଶୂନ୍ୟ ବିଲ ମଝାମଝି ରାସ୍ତାରେ ବସି ଏକୁଟିଆ ତମେ କାନ୍ଦିଲ । ରାତି ପୃଥିବୀର ବୟସକୁ ଚାଟୁଥିଲା ଆସ୍ତେ ଆସ୍ତେ । ତମେ ଆଉ ଅପେକ୍ଷା କଲ ନାହିଁ । ଏଥର ଛିଡ଼ା ହୋଇପଡ଼ିଲ । ଖୁବ୍ ଦମ୍ଭରେ । ଏଭଳି ଦମ୍ଭ ତମ ଜୀବନରେ କେବେ ଥାଳି ସଜାଡ଼ି ନଥିଲା । ତମର ଆଖି ହେଲା ରୁଦ୍ର । ମୁଖ ହେଲା କଠିନ : ଏଇ ଆଜିଠାରୁ ଛତୁଚୂନା ହେଉ ବିଶ୍ୱ । ଆଜିଠାରୁ ଫିଙ୍ଗିଦେବି ଏ ସଂସାର, ଏ ପୃଥିବୀ, ଆଜିଠାରୁ ସବୁ ରକ୍ତ ଶୋଷି ହୋଇ ଯାଉ, ସବୁ ସମ୍ପର୍କ ହେଉ ଧୂଆଁମଗ୍ନ, ଆଜିଠାରୁ ଲିଭିଯାଉ ଚନ୍ଦ୍ର ସୂର୍ଯ୍ୟ ତାରା ଓ ଆକାଶ, ଆଜିଠାରୁ ପୋଛିଯାଉ ଦୁଃଖ ଶୋକ ଯନ୍ତ୍ରଣା ଆଉ ଅପେକ୍ଷା ନିଃଶ୍ୱାସ, ହଁ ଆଜି, ଏଇ ଆଜି, ଏକଦମ୍ ଆଜି, ଆଉ ନୁହେଁ ଆଜି, ଏବଂ ଆଜି, କେବଳ ଆଜି ! ଆଜିଠାରୁ ଲୋପ ହେଉ ଧର୍ମ, ଭଗବାନ, ସ୍ନେହ ଓ ଆଦର୍ଶ । ଆଜିଠାରୁ ମାଟି ଗର୍ଭ, ନାରୀ ଗର୍ଭ, ସବୁ ଗର୍ଭ ବାଞ୍ଝ ଗର୍ଭ ହେଉ !''

ଭୟଙ୍କର ଅଶାନ୍ତ ତାଡ଼ନାରେ ତମେ ପୁନର୍ବାର ବଜାର ଭିତରକୁ ପ୍ରବେଶ କଲ । ସେତେବେଳକୁ ବଜାର ବନ୍ଦ ହୋଇ ଆସୁଥିଲା । ତମେ ପକେଟରେ ବାକିଥିବା ପଇସାରେ ପୋକମରା ବିଷ ଧରି ଫେରିଲ । ନିଛାଟିଆ ବିଲ ମଝି ରାସ୍ତାରେ ପୁଣି ବସି ପଡ଼ିଲ । ତାଳୁରୁ ତଳିପା ଯାଏ ଗରମତାଦି ଦ୍ୱମକୁ ଝାଳ ସର ସର କରି ସାରିଥିଲା । ତମେ ଏକ ବିଦ୍ରୂପ ହସ ହସିଲ । ଯେଉଁ ହସରେ ସମଗ୍ର ପୃଥିବୀରେ ଅଂଧାର ଛାଇଗଲା । ତମେ ସେ ବିଷତକ ଏକା ନିଃଶ୍ୱାସରେ ଅଟାରେ ଗୋଳାଇ ଦେଲ ଏବଂ ଢ଼ିପେଇ ଢିପେଇ ଘରକୁ ଗଲ । ଏ ଅଟା ବଂଶଯାକ ଖାଇବୁ କି ନା, ଏଇ ଆବେଗର ଛୁଞ୍ଚି ତୁମକୁ ବିନ୍ଧ କରୁ କରୁ ତମେ ଘରେ ପହଞ୍ଚିଗଲ । ଏବଂ ଭଗବାନ ! ତମେ ବସିଚ ବର୍ତ୍ତମାନ ଚୁଲି ମୁଣ୍ଡରେ ଏବଂ ତମର ସ୍ତ୍ରୀ ସେଇ ବିଷଗୁଳା ରୁଟି ସେକୁଚି । ଚୁଲି ଚାରିପାଖେ ତମର ପିଲାମାନେ ବସି କୁହାକୁଛନ୍ତି-

-ବୋଉ, ରୁଟି ଦେ !

କୁହ ଭଗବାନ ! ତମର କେବେ ଏଭଳି ପରିସ୍ଥିତି ଜୁଟିଛି । ଏ ଭଳି ଅନୁଭୂତି ତମର କେବେ ଆସିଛି ? ମୋ ଜାଣିବାରେ ତୁମେ ଏ ଭଳି ଅବସ୍ଥାର କେବେ ସାମ୍ନା ସାମ୍ନି ହୋଇନାହଁ । ତମେ ତ ସବୁବେଳେ ରାଜପୁତ୍ର ହୋଇ ଜନ୍ମ ହେଇଚ ! ଶାସନର

ଦଣ୍ଡଧରି ତମେ ପୃଥିବୀକୁ ଆସିଚ । ତମେ ବି କମ୍ ଚାଲାକ୍ କି ? ଲକ୍ଷ୍ମୀଙ୍କୁ ପରା ସ୍ତ୍ରୀ କରିନେଇଚ ! ଅର୍ଥ, ସମ୍ପତ୍ତି ପରା ତମର ପ୍ରାଣର ଦୋସର, ପ୍ରାଣପ୍ରିୟା ! ତମଛଡ଼ା ଆଉ କିଏ ଭଗବାନ ହୋଇପାରିବ ଯେ ! କିଏ ହୋଇପାରିବ ଜଗତ ଈଶ୍ୱର ଯାହାର ସ୍ତ୍ରୀ ଲକ୍ଷ୍ମୀ ନୁହେଁ ! ତୁମ ନାମ ନ ଭଜିଲେ ତ୍ରାହି କାହିଁ ? କାହିଁ ପରିତ୍ରାଣ ଆହେ ଲକ୍ଷ୍ମୀଈଶ, ଅର୍ଥ ସମ୍ପତ୍ତିର ପ୍ରଭୁ ! ତମେ ଚିରକାଳ ସେଇ ଭଗବାନ ହୋଇ ରହିବା ପାଇଁ କେତେ କଷ୍ଟ; କେତେ ସାଧନା ! ସେଥିପାଇଁ କେତେ ଛଳନା, କେତେ ପ୍ରତାରଣା, କେତେ କୌଶଳ, କେତେ ଦ୍ୱନ୍ଦ୍ୱ, କେତେ ସଂଘାତ, କେତେ ଯୁଦ୍ଧ ! ତମେ ପରିଶେଷରେ ସେଇ ଭଗବାନ ହେଇ ହିଁ ରହିଗଲ ସତ, କିନ୍ତୁ ସତ ଚେଷ୍ଟା କଲେ ବି ଦନେଇ ହୋଇ ପାରିବ ନାହିଁ ।

ହଠାତ୍ ଭୂଇଁରୁ ଏକ ଶଂଖ ଶବ୍ଦ ହେଲା । ଦନେଇ, ରତନୀ ଚମକି ଉଠିଲେ ! ପିଲାମାନେ ଡରିଯାଇ ମା' ପାଖକୁ ଭିଡ଼ି ଆସିଲେ । କି କାଳ ଅଶୁଭ ପଡ଼ିଚିଲୋ ମା ! ରୁଅ ଖଟ ଖଟ କରୁଚି । ପେଚା ରାବୁଚି । ଭୂଇଁ ଶଙ୍ଖ ଶୁଭୁଚି । ହେ ପ୍ରଭୁ ! କି ବିପଦ ଅଛି କେଜାଣି ? ରତନୀ ବ୍ୟାକୁଳ ହୋଇ ଏତକ କହିଲା ବେଳକୁ ଦନେଇ ମୁହଁରେ ହସ ଏ କଳରୁ ସେ କଳଯାଏ ବ୍ୟାପିଗଲା । ସେ ହସର ଗୁମର ଏମିତି ଥିଲା, ଯେମିତି ସେ ହସ ସାରା ପୃଥିବୀକୁ ଧୂଆଁମୟ କରିଦଉଚି । ସବୁ ଯେମିତି କୁହୁଡ଼ି । ମହାକାଳ ଯେମିତି ତା ଉପରେ ସବାର ହୋଇ ତାକୁ ହସଉଚି । ରତନୀ ଦିଦି ଖଣ୍ଡ ରୁଟି ପ୍ରତି ପିଲାଙ୍କ ଆଡ଼କୁ ବଢ଼ାଇଲା । ବଡ଼ପୁଅ ରୁଟିଖଣ୍ଡେ ଛଡ଼ାଇଲା ବେଳକୁ ଦନେଇର ଆଖି କଅଁଳିଲା । ଚକ୍ ଚକ୍ ଢଳ ଢଳ । ନା' ବୋଲି ଜୋର୍‌ରେ କହି ଉଠୁ ଉଠୁ ମଝିରୁ ଦବକିଗଲା । ରତନୀ ପଚାରିଲା : କ'ଣ ହେଲା ? ନା, କିଛି ନାଇଁ କହି ଦନେଇ ଉଠିଗଲା ଦାଣ୍ଡ ଦୁଆରମୁହଁ ଆଡ଼କୁ । ଖାସ୍ ଏପାଖ ସେପାଖ ଚଲାବୁଲା କଲା । କ'ଣ ହେଲା ଦନେଇ, ଯେଉଁ ଅଟାରେ ବିଷ ମିଶାଇ ପିଲାଙ୍କୁ ଖାଇବାକୁ ଦବାପାଇଁ ଆଣିଥିଲ, ପିଲାମାନେ ସେ ରୁଟିକୁ ଖାଇଲାବେଳେ ତମେ ତାକୁ ଅନାଇ ପାରୁନାହଁ କାହିଁକି ? କାହିଁକି ସହ୍ୟ କରି ପାରୁନାହଁ ? ନିଜ ଚିନ୍ତନର ପରିଣତିକୁ ମଣିଷ କ'ଣ ଭୋଗ କରିପାରେ ନାହିଁ ?

ପୁଣି ଚୁଲି ପାଖକୁ ଫେରି ଆସିଲା ବେଳକୁ ଦନେଇ ଦେଖିଲା ତା ଚାରି ଚାରୋଟି ଛୁଆ ଗୋଟାକ ପରେ ଗୋଟାଏ ରୁଟି ଖାଇ ଚାଲିଛନ୍ତି । ରତନୀ ସେମାନଙ୍କୁ ଏକ ଗଂଭୀର ସନ୍ତୋଷରେ କହୁଚି : ପେଟେ ପେଟେ ଖାଇ ଦିଅ । ପାଣି ପିଇ ଶୋଇପଡ଼ । ପୁଣି କାଲିକି କିଛି ମିଳିବ ନ ମିଳିବ ! ଆମର ବରଂ ନହେଲା ନାହିଁ ।

ଆଉ କିଛି କରିବାର ନାହିଁ । ସବୁ ଶେଷ ହୋଇ ସାରିଛି । ଦନେଇକୁ ସାରା ଘର, ତା ସ୍ତ୍ରୀ, ତା ପିଲାମାନେ ସମସ୍ତେ ଗୋଟେ ଗୋଟେ ଅଂଧାରର ଛାଇଭଳି

ଦେଖାଗଲେ । ପୃଥିବୀ ସେମାନଙ୍କ ପାଇଁ ନିଃଶେଷ ହେଇ ସାରିଥିଲା । କାଂଥକୁ ଆଉଜି ବସି ପଡ଼ିଲା ସେ । ଏଥର ଭଗବାନ ନିଜକୁ ସମ୍ଭାଳ !

ଦନେଇ ପୁଣି ଚିହିଁକି ଉଠିଲା, ଯେତେବେଳେ ସେ ଦେଖିଲା ପିଲାମାନେ ଅର୍ଦ୍ଧାଧିକ ଅଟାର ରୁଟି ଖାଇସାରି ପୁଣି ମାଗୁଛନ୍ତି : ବୋଉ, ଆଉ ଦେ, ଆଉ ଦେ ! ପିଲାମାନେ ଯଦି ସବୁ ଖାଇଦିଅନ୍ତି, ତା'ହେଲେ ଆମେ ଦି'ଜଣ ବଞ୍ଚିଯିବୁ ଯେ ! ପୁଅ ଝିଅଙ୍କୁ ବିଷଦେଇ ବାପା ମା' ଦିହେଁ ସେମାନଙ୍କର ଶବକୁ ଧରି ବସିପାରିବୁ ? ରୁଦ୍ଧ କଣ୍ଠରେ ଦନେଇ ରତନୀକୁ କହିଲା : ପିଲାମାନେ ଯାହା ଖାଇଲେ ଖାଇଲେ, ଆଉ ଦିଅନି । ସେତକ ଥାଉ । ତମେ ଖାଇବ । ମୁଁ ଖାଇବି । ଦନେଇ କଂଠରେ ସୀମାହୀନ ବ୍ୟାକୁଳତା !

'ସେମାନେ ଖାଆନ୍ତୁ, ଯାହା ବଳିବ ଆମେ ଖାଇବା ।' ଯା' କହି ରତନୀ ପିଲାମାନଙ୍କୁ ଆଉ ଖଣ୍ଡେ ଖଣ୍ଡେ ରୁଟି ଦେଲା । ଓଃ, ଥରେ କହିଲି ପା, ଏବେ ରଖ, ଆଉ ଦିଅନା !'- ଦନେଇ ଚିଡ଼ିଗଲା ଏବଂ ବାକିଥିବା ରୁଟି ଡାଲାକୁ ଘୋଷାରି ଆଣିଲା । ଆଉମାତ୍ର ଚାରିପଟ ରୁଟି ବାକି ଅଛି, ଏତକ ଦେଖି ଦନେଇର ଆଖି ବିସ୍ଫାରିତ ହେଇଗଲା । ପିଲାମାନେ ରୁଟି ଖାଇ ପାଣି ପିଇ ଢୁଳେଇଲେଣି । ଦନେଇ ଆଖିରୁ ଲୁହ ଖସି ସାରିଲାଣି । ଏବେ କ'ଣ କରାଯିବ ? ଚାରିପଟ ରୁଟିକୁ ଆମେ ଦୁହେଁ ଦି ଦି'ପଟ ଖାଇଲେ ହୁଏତ ଦି ଜଣ ଯାକ ଖାଲି ବାନ୍ତି କରିବୁ ସିନା, କିନ୍ତୁ କାର୍ଯ୍ୟକ୍ରମର ଶେଷ ପୂର୍ଣ୍ଣଚ୍ଛେଦ ପଡ଼ିପାରିବ ନାହିଁ । ହାଏ, ମରିବାକୁ ଦେଲ ନାହିଁ ଭଗବାନ ! ମୁଁ ଯଦି ସବୁରୁଟି ଖାଇଦିଏ ତା'ହେଲେ ରତନୀ ବଞ୍ଚିବାକୁ ବାଧ୍ୟ ହେବ । ସେ ଶେଷରେ ଜେଲ ଭୋଗିବ, ବଦ୍‌ନାମ ହେବ ଯେ ତା ସ୍ୱାମୀ ଓ ପିଲାମାନଙ୍କୁ ବିଷଦେଇ ହତ୍ୟା କରିଛି ବୋଲି ! ତା ଜୀବନ ଦୁର୍ବିସହ ହୋଇ ପଡ଼ିବ । ନା, ରତନୀ ସବୁ ରୁଟି ଖାଉ । କାର୍ଯ୍ୟକ୍ରମର ଶେଷ ଅଂଶୀଦାର ବନୁ ! ପୁଣି ଚିନ୍ତାକଲା ଦନେଇ । ନା ମୁଁ ଖାଇଦେବି ସବୁ ରୁଟି । ମୋ ସାମ୍ନାରେ ମୋ ସ୍ତ୍ରୀ, ମୋ ପୁଅ, ମୋ ଝିଅଙ୍କର ଶବକୁ ଦେଖିପାରିବିନି । ସେ ଶବକୁ ନିଜ କାନ୍ଧରେ ବୋହି ପାରିବିନି । ସ୍ତ୍ରୀ, ପୁତ୍ର, କନ୍ୟାହନ୍ତାର ଦାଗୀ ହୋଇ ପାରିବିନି । ହାଏ, ଏ କ'ଣ କରୁଛ ପ୍ରଭୁ ! ମୃତ୍ୟୁକୁ ପାଖରୁ ଛଡ଼ାଇନେଉଛ, ଅଥଚ ଜୀବନ ଦେବାକୁ ବି କୁଣ୍ଠା ! ବଂଚିବା ପାଇଁ ରୁଟି ଦେଲନାହିଁ । ଆଜି ମରିବା ପାଇଁ ବି ରୁଟି ଦେଉନାହଁ !

ରତନୀ କହିଲା– ପିଲାମାନେ ତ ଖାଇ ସାରିଲେ, ଏବେ ତମେ ଖାଇଦିଅ । ମୁଁ ବିଛଣା ବିଛାଇ ପିଲାମାନଙ୍କୁ ଟେକି ନେଇ ଶୁଆଇ ଦିଏ । ଏଥର ଦନେଇ ନିଷ୍ପତ୍ତି ନେଲା : ନା, ଯେଉଁ କାର୍ଯ୍ୟକ୍ରମ ମୁଁ ହାତକୁ ନେଇଛି, ତାକୁ ଶେଷ କରିଦେବି । ସମସ୍ତ ନିଷ୍ଠାର ସହ ଶେଷ କରିବି । ମୁଁ ପ୍ରବଞ୍ଚକ, ସ୍ୱାର୍ଥପର ହୋଇ ପାରିବିନି । ସେ ସ୍ତ୍ରୀ ରତନୀକୁ କହିଲା : ତୁ ଜାଣିନୁ, ମୁଁ ପରା ମାଲିକ ଘରୁ ଖାଇ ଆସିଛି । ମୋର ଏବେ

ଦି ଦିନ ଚାଲିଯିବ । ମୋ କଥାକୁ ଅବିଶ୍ୱାସ କରୁଛୁ କି ? ମୋ ରାଣ, ସେତକ ରୁଟି ଖାଇଦେ ।

-ତମେ ବି ଖଣ୍ଡ ନିଅ ! ରତନୀ କହିଲା ।

: ନା, ତୁ ସବୁ ଖାଆ, ଦି ଦିନ ହେଲା କିଛି ଖାଇନୁ, ମୁଁ ତ ପେଟେ ଖାଇ ଆସିଛି ।

-ନିଅ ଖଣ୍ଡେ, ରତନୀ ବଳେଇଲା ।

- ନା, ମୁଁ ଖାଇଚି ପରା କହୁଚି । ତୋତେ କ'ଣ ମିଛ କହୁଚି ?

-ମୋ ମନ ମାନୁନି, ଖଣ୍ଡେ ନିଅ । ରତନୀ ଆକୁଳ ହେଲା ।

-ତୋର ଏଇ ଜିଦ୍ ମୋତେ ଭଲ ଲାଗେନା । ଦନେଇର ଆଖିରୁ ଲୁହ ଝରି ସାରିଥିଲା ସେତେବେଳକୁ ।

ରତନୀ ରୁଟିରୁ ଖଣ୍ଡେ ପାଟିରେ ପକାଇ କହିଲା : ଏ ଗୁଡ଼ାକ କି ଅଟା ଆଣିଛ ମ ? ପିତା ପିତା ଲାଗୁଚି । ପିଲା ଗୁଡ଼ାକ କେମିତି ଖାଇଲେ କେଜାଣି ? ବହୁ ଦିନରୁ ଗୁମା ଅଟା ବୋଧେ । ହଁ, ଭୋକ ସମୟରେ ଖାଇବା ଜିନିଷ କ'ଣ ବିଷ କଣ ସବୁ ପେଶ୍ ହେଇଯିବ ।

ଆଜିକାଲି ତ ସବୁ ଭେଜାଲ, କାହାକୁ କ'ଣ କହିବ ? ପଇସା ଖର୍ଚ୍ଚ କରି ବିଷ କିଣିବା କଥା ! ଘନ ଘନ ଦୀର୍ଘଶ୍ୱାସ ଭିତରେ ଦନେଇ ଏତକ କହିଲା । ଚାରିଖଣ୍ଡ ରୁଟି ଖାଇ ସାରିଲାବେଳକୁ ରତନୀର ମୁଣ୍ଡ ଝାଏଁ ଝାଏଁ କରି ଦେଲା । —ମୁଣ୍ଡ କ'ଣ ହେଇଯାଉଚି ମୋର ! ଏତକ କହି ରତନୀ ସେଇ ଚୁଲି ମୁଣ୍ଡ ପାଖରେ ଟିକେ ଗଡ଼ି ପଡ଼ିଲା ।

ବାସ୍, ଏବେ ସମସ୍ତେ ଶୋଇଛନ୍ତି । ରାତି ବହୁତ ବଳେଇଲାଣି । ବିଲୁଆଙ୍କର ପହରିକିଆ ଡାକ ଆଉ ଶୁଭୁନାହିଁ । ମୁଁ ଦନେଇ, ଖୁଁ ଖୁଁ କାଶରେ ନିଃଶେଷ ହବାକୁ ବସିଥିବା ମୋର ଜୀବନ କାହିଁକି ବିଷ ଖାଇବାକୁ ଚାହିଁଥିଲା, ମଲାଲୋକ ପୁଣି କାହିଁକି ମୃତ୍ୟୁକୁ ହାତ ପାଆନ୍ତାରେ ଧରୁଥିଲା, ତମେ ନିଶ୍ଚେ ଜାଣ ଭଗବାନ ! କୁହ, ମୁଁ ଏଥର କ'ଣ କରିବି ? ସମସ୍ତଙ୍କୁ ବିଷ ଦେଇ ମୁଁ ନିଜେ ବିଷ ଖାଇ ଆମେ ସମସ୍ତେ ମଲାକିଆ ଜୀବନରୁ ମୁକ୍ତି ପାଇଯିବୁ ବୋଲି ମୁଁ ଭାବିଥିଲି । କିନ୍ତୁ ଏପରି ହେଲା ଯେ ମୋ ପାଇଁ ବିଷ ଅକୁଳାଣ ହେଲା । ସାମ୍ନାରେ ମୋର ସ୍ତ୍ରୀ, ମୋର ଦୁଇପୁଅ, ଦୁଇ ଝିଅ ବିଷ ଖାଇ ଶୋଇଛନ୍ତି । ସମୟର ବୁଢ଼ୀଦାରୀ ରାତି ପାହିବା ଆଗରୁ ତାର ଶେଷ ଗରାଖକୁ ବିଦାୟ ଦେଇଦେଇଛି । ନିରୁତ୍ତାପ ଓ ନିସ୍ତେଜ ମୋର ଆକୁଳ ଆତ୍ମାମାନେ । ଏଣିକି ରୁଅ ଖଟ୍ ଖଟ୍ ହେବା ନ ହେବା, ପେଚା ରାବିବା ନ ରାବିବା, ଭୁଇଁଶଙ୍ଖ ବାଜିବା ନ ବାଜିବା, ସବୁ ସମାନ, ସବୁ ମୂଲ୍ୟହୀନ । ଏବଂ ଭଗବାନ ତମେ ଥିବା ନଥିବା ବି ସମାନ, ମୂଲ୍ୟହୀନ । ବଂଚିବାକୁ ଚାହିଁଲି, ତମେ ରୁଟି ଦେଲ ନାହିଁ ।

ଯେତେବେଳେ ଶେଷ ହେଇଯିବାକୁ ଚାହିଁଲି ସେତେବେଳେ ହାତ ପାଆନ୍ତାରୁ ରୁଟ ଛଡ଼ାଇନେଲ !

ଶେଷ ମୁହୂର୍ତ୍ତରେ ଦନେଇ ତା ସ୍ତ୍ରୀ' ତା ପିଲାମାନଙ୍କର ମୁହଁ ଟିକେ ଦେଖିବ ବୋଲି ବ୍ୟାକୁଳ ହୋଇ ଉଠିଲା । ସବୁଦିନ ଉପାସିଆ, ଭୋକିଲା, କରୁଣ ମୁହଁ ଦେଖି ଆସିଛି ! ଅଥଚ ଆଜିର ଏ ମଲାମୁହଁ କି ସୁନ୍ଦର ! ଆଜିର ମୁହଁଠାରୁ ପବିତ୍ର ମୁହଁ ଆଉ କାହିଁ ! ବର୍ଷ ବର୍ଷର ଶୁଖିଲା, ନିସ୍ତେଜ ମୁହଁରୁ ତମେ ସବୁ ଆଜି ମୁକ୍ତି ପାଇଯାଇଛ । କିନ୍ତୁ ମୁଁ ରହି ଯାଇଛି । ମୁଁ ଏବେ କ'ଣ କରିବି ? ଯାଠୁଁ ବଳି ଦୁଃଖ କାହିଁ ଯେ ନିଜ ମୃତ ସ୍ତ୍ରୀ, ପୁତ୍ର, କନ୍ୟାଙ୍କ ଗହଣରେ ଆତଯାତ ହେଉଛି ସାଙ୍ଗରେ ମରିବାକୁ ଚାହିଁ ମରିପାରି ନଥିବା ପିତା !

ଦନେଇ କୋହ ଉଠାଇ କାନ୍ଦିଲା ଏବଂ କାନ୍ଦୁ କାନ୍ଦୁ ଡିବିରିଟେ ନେଇ ତା'ର ସ୍ତ୍ରୀ, ତା'ର ଦୁଇ ପୁଅ, ଦୁଇ ଝିଅଙ୍କ ମୁହଁକୁ ଚାହିଁଲା । ସମସ୍ତଙ୍କ ପାଟିରୁ ଫେଣ ବାହାରି ପଡ଼ିଛି । ଘରର ଚାରିଆଡ଼କୁ ଶେଷ ଦୃଷ୍ଟି ନିକ୍ଷେପିଲା ସେ । ଚାହିଁଲା ଆକାଶକୁ । ଚାହିଁଲା ତାରାମାନଙ୍କୁ । ଚାହିଁଲା ମାଟିକୁ । ହେ ମୋର ବାନ୍ଧବ ପୃଥ୍ୱୀ ! ଆମେ ଏଠି ବଞ୍ଚିବାକୁ ଅଯୋଗ୍ୟ ହୋଇଗଲୁ ସିନା !

ଏଥର ଦେଖ ଈଶ୍ୱର, ତମ ଭୁଜଚକ୍ର, ଶଂଖ, ଗଦା, ଶିରସ୍ତ୍ରାଣ ଓ ମୁକୁଟ ଧୀରେ ଧୀରେ ଖସିପଡୁଚି କି ନା ? ତଥାପି ମୁଁ ଆଶୀର୍ବାଦ କରିଯାଉଚି ଈଶ୍ୱର, ତମେ ଭଗବାନ ହେଇ ରୁହ, କେବେ ଦନେଇ ହୁଅନା ! ସ୍ତ୍ରୀ, ପୁତ୍ର, କନ୍ୟାଙ୍କୁ ବିଷ ଦେଇ, ନିଜେ ସେଥିରୁ ବଂଚିତ ହେଇଯାଇଥିବା ଲୋକଟିର ଆକୁଳ ଦୁର୍ଦ୍ଦଶାକୁ ଯାବତ୍ ଚନ୍ଦ୍ରାର୍କେ ଅନୁଭବ କର !

ନିଶାର୍ଦ୍ଧପର ଖାଁ ଖାଁ ରାତିର ଘନ ଅଂଧାରକୁ ମାଡ଼ି ଚକଟି, ଘର ଡେଇଁ, ଦାଣ୍ଡ ଡେଇଁ, ଗାଁ ଡ଼େଇଁ, ଗୋହିରି ଡେଇଁ ନିଖୋଜ ହୋଇ ଯାଉଥିଲା ସେଇ ଖୁଁ ଖୁଁ କାଶୁଥିବା ଲୋକଟି !



(୧୯୮୫ ମସିହା ନିସ୍ୱନ (୧) ପତ୍ରିକାରେ 'ବଞ୍ଚିତ' ଶିରୋନାମାରେ ପ୍ରଥମେ ପ୍ରକାଶିତ)

# ଲଗ୍ନାଧିପତି

ସିନେମା ହଲ୍ ଛକରେ ଥିବା ନରୁ ପାନ ଦୋକାନ ସାମ୍ନାରେ ବସିଛି ପୁରଞ୍ଜନ । ମୁହଁରେ ମୁହେଁ ଦାଢ଼ି । ନିଶ ହଳକ ସାଇଜ୍‌ହୀନ, ଅଥଚ ବର୍ଦ୍ଧିତ । ଆଖି ଦି'ଟା ଢୁଲୁଢୁଲୁ ଓ ରଙ୍ଗ ରଙ୍ଗ । ଏଇ ପାଞ୍ଚମିନିଟ୍ ହେବ ସେ 'ଦେଶୀ' ଆଣ୍ଟି ଦେଇ ଆସିଛି । ମୁଣ୍ଡବାଳ ଫୁରୁ ଫୁରୁ । ଓଠ ଯୋଡ଼ିକ ଧୂଆଁସିଝା । ବର୍ତ୍ତମାନ ବି ବିଡ଼ିଟେ ଜଳୁଚି । ହାଡ଼ ଟଙ୍ଗ ଟଙ୍ଗ ଦେହକୁ ଘୋଡ଼େଇଥିବା ତା'ର ପ୍ୟାଣ୍ଟ ସାର୍ଟ ମାସେ ପାଖାପାଖି ହେବ ଅକଚା । ଏଣୁ ଝାଳ ବାହାରି ପେଣ୍ଟର ଆଣ୍ଠୁ ଅଂଶଦ୍ୱୟ ଧଳା ଦେଖାଯାଉଚି ତ ସାର୍ଟର ପିଠି ପଟଟି ପାଣି ଜକଜକ । କେବଳ ସେ କାହିଁକି, ତା' ସହ ଆଉ କେତେକ ଯୁବକଙ୍କ ପାଇଁ ନିତିପ୍ରତି ସକାଳ ସଞ୍ଜର, ପବିତ୍ର ମନ୍ଦିର ଏଇ ପାନ ଦୋକାନ ! ପାଠପଢ଼ା ସାରି ଚାକିରି ପାଇଁ ଇଣ୍ଟରଭିଉ ଦଉଥିବା ଏବଂ ଅସଫଳ ହେଉଥିବା ଯୁବକମାନଙ୍କର ଅଠେଇଶି ବର୍ଷ ପୂର୍ତ୍ତି ଯାଏଁ ନିଜ ନିଜ ସାହି ବା ବସ୍ତିର ପାନ ଦୋକାନ ସାମ୍ନା ବେଞ୍ଚ ହିଁ ସେମାନଙ୍କର ମନ୍ଦିର, ଆସେମ୍ବ୍ଲି- ସବୁକିଛି । ପାନଦୋକାନ ବ୍ୟତୀତ ଆଉ କେଉଁଠି ବା ଏମିତି ଆଡ୍‌ଡ଼ା କରିହବ ? ଆଉ କେଉଁଠି ଆଡ୍‌ଡ଼ା ଜମେଇବାକୁ ହେଲେ ପକେଟ ଉଚ୍ଚା ଥିବା ଦରକାର । କିନ୍ତୁ ପୁରଞ୍ଜନର ପରିସ୍ଥିତି ଏମିତି ଯେ ଗୋଟେ ବିଡ଼ିକୁ ବି ଅଧାଟାଣି ବାକି ଅଧକୁ ଲିଭାଇ, କିଏ କୁଆଡ଼େ ଦେଖିଦବକି ସତର୍କତା ଭିତରେ ପକେଟ୍‌ରେ ରଖିବାକୁ ହୁଏ, ପରେ ସଦ୍‌ବ୍ୟବହାର ପାଇଁ । ବେଳେବେଳେ ଏମିତି ବି ହୁଏ ଯେ ପାନଦୋକାନ ପାଖରେ ପଡ଼ିଥିବା ଅଧାଜଳା ସିଗ୍ରେଟ ଖଣ୍ଡଗୁଡ଼ିକୁ ଖୁବ୍ ସତର୍କତାର ସହ ଗୋଡ଼ ଆଙ୍ଗୁଠିରେ ଉଠାଇ ମୁହଁରେ ଧରାଇବାକୁ ପଡ଼େ । ସିଗ୍ରେଟ ବିଡ଼ି ପିଆଳି ଯଦି ସିଗ୍ରେଟ ଅଭାବରେ ରାସ୍ତାରୁ ଗୋଟାଇ ସିଗ୍ରେଟ୍ ନପିଇଲା, ତା'ହେଲେ ସେ ସିଗ୍ରେଟ୍ ପିଆଳି ନୁହେଁ, ନିଜକୁ ଦେଖେଇହେଉଥିବା ଗୋଟେ ଜୋକର ! ପୁରଞ୍ଜନ ନିଜ ବୟସକୁ ଗଣିଲା । ଏକ .... ଦୁଇ... ତିନ୍... ସତେଇଶି ବର୍ଷ ପାଞ୍ଚମାସ !

ମାନେ, ଆଉ ସାତମାସ ପରେ ତାକୁ ଚାକିରିର ମୋହ ଛାଡ଼ିବାକୁ ହେବ ଏବଂ ହୁଏତ ଏଇ ଅତି ପ୍ରିୟ ପାନ ଦୋକାନକୁ, ଏଇ ସିନେମାହଲ ଛକକୁ ! ଯେଉଁ ଛକଟି ତା'ର ଉଦାସ ଓ ଦୀର୍ଘଶ୍ୱାସ ଜୀବନକୁ ପ୍ରତିଦିନ ଅନ୍ତତଃ ଘଣ୍ଟାଏ ସ୍ୱପ୍ନବଳୟ ଭିତରେ କିଛି ଜିଆଁଇ ଦିଏ । ସୋ' ଭାଙ୍ଗିଲା ପରେ ସିନେମା ଦେଖି ଫେରୁଥିବା ସୁନ୍ଦରୀମାନଙ୍କ ନିଃଶ୍ୱାସରେ ସାରା ଛକ ଯେତେବେଳେ ମହମହ ହୋଇ ଉଠେ, ସେତେବେଳେ ପୁରଞ୍ଜନ ଡେଇଁଯାଏ ରଫୁମରା ସାର୍ଟକଥା, ପଇସା ଅଭାବରୁ ଇଣ୍ଟରଭିଉରେ ଯୋଗଦେଇ ନପାରିବାର ଦୁଃଖ, ଅଠେଇଶି ବର୍ଷ ହେଇଯାଉଥିବାର ଗ୍ଲାନି, ପାଖରେ ବିଡ଼ି ବା ସିଗ୍ରେଟ୍ ନଥିବାର ଅଭାବବୋଧ । ଏବଂ ସ୍ୱପ୍ନକ୍ଲାନ୍ତ ଏହି ଯୁବକଟି ହୋଇଉଠେ ସ୍ମୃତିପ୍ରବଣ । ଯାହାର ସ୍ୱପ୍ନ ବନ୍ଦ, ତା'ର ସ୍ମୃତି ଜହକିଆ ! ଯେଉଁ ସମୟ ଢେଉ ମାରି ମାରି ତାକୁ ଏକ ଅଲୋଡ଼ା ବାଲି ଭଳି ଉପକୂଳରେ ଫିଙ୍ଗି ଦେଇ ଆସିଛି, ସେଇ ସମୟକୁ ଡେଇଁ ଡେଇଁ ଚାଲେ ତା'ର ସ୍ମୃତି ଏବଂ ତା'ର ଦେଖା ହେଇଯାଏ ଅଜନ୍ତା ସହ । ବିଞ୍ଚି ହେଇ ପଡୁଥିବା ରୁଞ୍ଜା ଭଳି ସେ ଓ ଅଜନ୍ତା ସେତେବେଳେ ସ୍ୱପ୍ନରେ ବିଞ୍ଚିହେଇ ପଡୁଥିଲେ । ପ୍ରତି ଋତୁ ଥିଲା ବସନ୍ତ । ପ୍ରତିମାସ ଥିଲା ଫଗୁଣ । ସେତେବେଳେ ଶବ୍ଦଟେ ଫୁଟୁଥିଲେ ପଦ୍ମଟେ ଫୁଟୁଥିଲା । ସେ ସ୍ମୃତି ସମୁଦ୍ରରେ ବୁଡିଯାଇ କିଛି ସମୟ ବଞ୍ଚିଗଲା ପରେ ଉଠିପଡ଼ି ପୁରଞ୍ଜନ ଭୟଭୀତ ହୋଇପଡ଼େ । ଅଜନ୍ତା ବର୍ତ୍ତମାନ ତା' ପାଇଁ ନିଷ୍ଠିକଣା ଏବଂ ସେ ଅପନ୍ତରା । ଜୀବନ-ଯାକର ମୁହୂର୍ତ୍ତମୟ ଯଦି ସ୍ମୃତି ଭିତରେ କଟିଯାଇପାରନ୍ତା, ତା' ହେଲେ ଅତୀତର ସ୍ମୃତି ବର୍ତ୍ତମାନ ତାକୁ ଭୟଭୀତ କରନ୍ତା ନାହିଁ । ଆଃ, ଏଭଳି କେହି ଚରିତ୍ର ନାହିଁ, ଯିଏକି ସମଗ୍ର ଜୀବନଟାକୁ ସ୍ମୃତି ଭିତରେ ହିଁ କଟାଇପାରିଛି ? ଏବଂ ପୁରଞ୍ଜନ ତା'ର ଅତୀତ ଯାହା ଥିଲା ମଧୁର, ଯାହା ସମୟର ନିଗଡ଼ରେ ସ୍ମୃତି ପାଲଟି ଯାଇଛି, ତାହା ଏବେ ଭୟ ମନ୍ତ୍ରିତ ! ଆଃ, ତୋ ଜୀବନର ମଧୁ ସ୍ମୃତି ହିଁ ତୋ ଜୀବନକୁ ଭୟଭୀତ କରୁଛି ପୁରଞ୍ଜନ !

ନା, ସିନେମା ସୋ' ଆହୁରି ଭାଙ୍ଗିନାହିଁ । ଅଥଚ ସ୍ମୃତି ଆସି ଡ଼େଇଁ ସାରିଲାଣି ତାକୁ । ଲିଭିଯାଇଥିବା ବିଡ଼ିରେ ପୁଣି ନିଆଁ ଲଗାଇଲା ପୁରଞ୍ଜନ । "ଦାଦୁ ! ଚା" କହି ପାଖ ଗୁମୁଟି ଚା' ଦୋକାନୀର ଦଶବର୍ଷର ପିଲା ରାଉଳ ସାଦା ଚା'ଟେ ବଢ଼ାଇଲା ପୁରଞ୍ଜନ ଆଡ଼କୁ । ଅନେକ ଜଣାଶୁଣା ପିଲା, ତା' ସାହିର ଟୋକା ଓ ଦୋକାନୀ ପୁରଞ୍ଜନକୁ ଦାଦୁ ବୋଲି ଡାକନ୍ତି । ପୁରଞ୍ଜନ ଚା' ଗ୍ଲାସ୍‌ଟା ଧରି ଅଧାଲିଭା ବିଡ଼ିରେ ନିଆଁ ଧରାଇଲା । ଗୋଟେ ଢୋକ ଚା' ସହ ଗୋଟେ କଶ୍ ବିଡ଼ି ଧୂଆଁକୁ ମିଶାଇ ପେଟ ଭିତରକୁ ଛାଡ଼ିଲା । ସିନେମା ହଲ୍ ଆଡୁ ଜଣେ ଯୁବକ ଧାଇଁଆସି କହିଲା : ଦାଦୁ, ଟିକେ ୟାଡ଼କୁ ଆସ । ପୁରଞ୍ଜନ ପିଲା ଆଡ଼କୁ ଆସିଲା । ଯୁବକ ଜଣକ କହିଲା : ଦାଦୁ, ହଳଦିଆ ସାହିର ଯେଉଁ ପିଲା ଆମ ଖୋକା ଭାଇଙ୍କୁ ବାଡ଼େଇଥିଲା, ସେ

ଏବେ ସିନେମା ହଲ୍ ପାଖରେ, ତମେ କହିବ ଯଦି ଆରମ୍ଭ କରିଦେବା । ପୁରଞ୍ଜନର ଆଖି ଦୃଢ଼ ହୋଇ ଆସିଲା । ଓଠ ଟାଣ ହେଇଆସିଲା । ବିଡ଼ିଟି ଚାପି ହେଇଗଲା । ପୁଣି କ'ଣ ହେଲା କେଜାଣି ଓଠ ହୁଗୁଳା ହୋଇଗଲା । ଟାଣ ଆଖିରେ ବାଲାନ୍ସ ସିଟ୍ ତିଆରି ହେବାକୁ ଲାଗିଲା । ପୁରଞ୍ଜନ ପ୍ରଶ୍ନକଲା : ସେ ସିନେମା ଯାଉଛି କି ?

: ହଁ । ଯୁବକଟି ଉତ୍ତର କଲା ।

: ଟିକେଟ୍ କିଣି ସାରିଛି ? ପୁରଞ୍ଜନ ପ୍ରଶ୍ନ କଲା ।

: ହଁ । ପୁରଞ୍ଜନ ଏ ପ୍ରଶ୍ନ କାହିଁକି କଲା ଢଙ୍ଗର ମୁହଁରେ ଯୁବକଟି ଉତ୍ତର ଦେଲା ।

: ତା ହେଲେ... ନା, ଥାଉ ! କିଛି କୁହନି ତାକୁ । ଆଉଦିନେ... ପୁରଞ୍ଜନ ନିଜର ଫଇସଲା ଶୁଣାଇ ଦେଲା । ଯୁବକର ଆଖି ଦି'ଟା ବିସ୍ମୟରେ ସଜେଇ ଆସିଲା ବେଳକୁ ପୁରଞ୍ଜନ କହିଲା : ଜୀବନର କିଛି ମୁହୂର୍ତ୍ତକୁ ମାତ୍ର ସେ ଉପଭୋଗ କରିବାକୁ ମାନସିକ ପ୍ରସ୍ତୁତି ନେଇ ଆସିଛି । ଦୁଇ ତିନି ଘଣ୍ଟା ଆତ୍ମ ବିସ୍ମୃତ ହେବାକୁ ଆସିଛି । ସେ ଆକାଂକ୍ଷା, ସେ ସୁଯୋଗରୁ ତାକୁ ଆଜି ବଞ୍ଚିତ କର ନାହିଁ !

ଯୁବକ ଜଣକ କ୍ଷଣକ ପାଇଁ ଏକଦମ୍ ଚୁପ୍ ହୋଇଗଲା । କ'ଣ ଚିନ୍ତା କରିବ, କ'ଣ କହିବ, ସେ କୂଳ କିନାରା ପାଇଲାନି । ଗୋଟେ ଗୁଣ୍ଡା, ଗୋଟେ ମଦ୍ୟପ, ଗୋଟେ ଗଞ୍ଜୋଡ଼ ଭାବରେ ପରିଚିତ ଏଇ 'ଦାଦୁ' ଭିତରେ ଏତେ ବଡ଼ ମଣିଷ ଠୁଳ ହେଇ ରହିଚି, ହଠାତ୍ ଯା'ର ଆବିଷ୍କାର ତାକୁ ଆତ୍‌କା ମାତ୍‌କା କରିଦେଲା । ସେ ମୁଣ୍ଡ ତଳକୁ ପୋତି ଧୀରେ ଧୀରେ ଚାଲିଗଲା ଏକ ମହାନ୍ ମଣିଷର ଉପଲବ୍ଧିରେ । ଦାଦୁର ପରିଚୟ ତା'ଠାରେ ଭିନ୍ନ ହୋଇ ପଡ଼ିଲା । ପୁରଞ୍ଜନ ପୁଣି ଫେରି ଆସିଲା ପାନ ଦୋକାନର ବେଞ୍ଚ ଉପରକୁ ଏବଂ ମନେ ମନେ ଭାବିଲା : ହଳଦିଆ ସାହିର ଗୋଟେ ଟୋକା ଆମ ସହଦେବ ମାର୍ଗର ଖୋକାକୁ ସିନେମା ଛକରେ ବାଡ଼େଇଲା, ଏଣୁ ହଳଦିଆ ସାହିର ସେ ଟୋକାକୁ ସହଦେବ ମାର୍ଗର ଟୋକାଏ ବାଡ଼େଇବା ଦର୍କାର; ନହେଲେ ଆମ ସାହିର ଇଜ୍ଜତ ତଳେ ପଡ଼ିଯାଉଛି, ଏଭଳି ଯୁକ୍ତି, ଏଭଳି ଚିନ୍ତାର କିଛି ମାନେ ଅଛି ! ଆମ ସାହିବାଲାଏ,ଜାଣିଲା ଶୁଣିଲା ଲୋକେ କହି ବୁଲୁଛନ୍ତି : କିହୋ ଦାଦୁ, ତମ ସାହିପିଲା ମାଡ଼ ଖାଇଗଲେ, ତମେ କିଛି କରିପାରିଲନି ! ତମର ସମ୍ମାନ ରହିଲା କେଉଁଠି ? କିନ୍ତୁ ସିନେମା ହଲ ଭିତରେ ଖୋକା ସାମ୍ନାସିଟ୍‌ରେ ବସିଥିବା ହଳଦିଆ ସାହିର ଗୋଟେ ଝିଅର ବେଣୀ ଝିଙ୍କିବା, ପଛପଟେ ଗୋଡ଼ ମାରିବାରୁ ଝିଅଟାର ଭାଇ ଯେତେବେଳେ ଖୋକାକୁ ପଚାରିଲା, ସେତେବେଳେ ଖୋକା ତେଡ଼ି ମେଡ଼ି କାଢ଼ିବାରୁ ଝିଅର ଭାଇ ଖୋକା ଗାଲରେ ଶକ୍ତ ଦୁଇ ଚାପୋଡ଼ା କଷିଥିଲା । ଅସଲରେ ଏ ପ୍ରସଙ୍ଗ ଗୁରୁତ୍ୱ ହରାଇ ଖୋକା ମାଡ଼ ଖାଇଯିବାଟା ଗୁରୁତ୍ୱପୂର୍ଣ୍ଣ ହୋଇଉଠିଲା । କି

ବିଚିତ୍ର ଏ ବିବେକର ଗତି ! ଗୋଟେ ଝିଅ ପ୍ରତି ଅଶୋଭନୀୟ ବ୍ୟବହାର କରିବା ଅପେକ୍ଷା, ଜଣେ ମାଡ଼ ଖାଇଯିବାର ସମ୍ମାନ ଦାୟର ପ୍ରସଙ୍ଗ ଆହୁରି ଗୁରୁତ୍ୱପୂର୍ଣ୍ଣ ହୋଇଉଠିଛି । ଖୋକା ଅଶୋଭନୀୟ ବ୍ୟବହାର କରିବାରେ ସହଦେବ ମାର୍ଗର ସମ୍ମାନ ହ୍ରାସ ହେବାଠୁଁ ଖୋକା ମାଡ଼ ଖାଇଯିବା ଦ୍ୱାରା ସମ୍ମାନ ବେଶୀ ହ୍ରାସ ହୋଇଛି, ସମସ୍ତଙ୍କ ଆଖିରେ ! ହାଏ, ଆଜିର ଗୋଷ୍ଠୀତନ୍ତ୍ର ହୃଦୟର ଅନୁରୋଧକୁ ସଂପୂର୍ଣ୍ଣ ଏଡ଼ାଇ ଦେଇଛି । କେବଳ ଜାତି ଜାତି ନୁହେଁ, ଦେଶ ଦେଶ ମଧ୍ୟରେ ଗୋଷ୍ଠୀତନ୍ତ୍ରର ଏହି ଅଭିଶପ୍ତ ସାମୂହିକ ପ୍ରତିହିଂସାବୋଧ ଜଳୁଛି, ପରିଣତିରେ ପ୍ରତିଟି ମଣିଷ ହେଇଉଠୁଛି ବିକଳାଙ୍ଗ ଏବଂ ପ୍ରତିଟି ମଣିଷ ଭିତରେ ଆଜି ଚରୁଛି ହିଟ୍‌ଲର୍‌ର କ୍ଷୁଦ୍ର ସଂସ୍କରଣ !

ପୁରଞ୍ଜନ ହଠାତ୍ ପ୍ରକୃତିସ୍ଥ ହେଲା । ନା, ହୃଦୟର ଆବେଗକୁ ଆଉ ଆଗକୁ ବଢ଼ିବାକୁ ନଦେବା ଭଲ । ସେଥିପାଇଁ ତା'ର ଭୟ ଅଛି । ହୃଦୟର ଆବେଗ ହସ୍‌ପିଟାଲର କୌଣସି ରୋଗୀ ପାଇଁ ନିଜର ରକ୍ତ ଦେଇ ପାରିବାକୁ ସକ୍ଷମ, କିନ୍ତୁ ଗୋଟାଏ ସିଗ୍ରେଟ୍ ଆଣିଦେବାକୁ ଅସମର୍ଥ । ହୃଦୟବାନ୍ ହେବା ଭୟରେ କେତେଥର ସେ ନକାନ୍ଦିଛି ! ଏହି ହସ୍‌ପିଟାଲରେ ରକ୍ତ ପାଇଁ ଆକୁଳ ଜୀବନମାନଙ୍କୁ ସେ ଏଡ଼ିଦେଇ ଯାଇପାରି ନାହିଁ । ଜରୁରୀବେଳେ ନିଜ ସାଙ୍ଗସାଥୀମାନଙ୍କୁ ଡାକିଆଣି ସେମାନଙ୍କ ରକ୍ତରେ କେତେ ଜୀବନଙ୍କୁ ଭୂଇଁ ଉପରେ ଛିଡ଼ା କରାଇଛି ସେ । କିନ୍ତୁ ତା' ନିଜ ଜୀବନର ରକ୍ତ ଯେ ଶୁଖି ଚାଲିଛି ! ଏ ଜୀବନଟା ବଞ୍ଚି ରହିବା ଯେ ଜରୁରୀ, ଏଭଳି ଆବଶ୍ୟକତା କେହି ଅନୁଭବ କରି ନ ପାରନ୍ତି ଯେତେବେଳେ, ସେତେବେଳେ ନିଜ ଉପରେ ମଣିଷ ଅତ୍ୟାଚାର କରିଚାଲେ । ନିଜ ଜୀବନର ଏହି ନିର୍ଲିପ୍ତ ବିଶ୍ଳେଷଣ ଦୀର୍ଘଶ୍ୱାସଟିଏ ଟାଣିଆଣିଲା ପୁରଞ୍ଜନ ଛାତିରେ । ସଞ୍ଜ ପଶୁଛି ତୀବ୍ର ଅନ୍ଧାର, ତୀବ୍ର ଆଲୁଅର ଦୁର୍ଘଟଣାକୁ ବୋହିଧରି ହସ୍‌ପିଟାଲ ଭିତରକୁ । ଗୋଟେ ସଭ୍ୟତାର ଚଳନ୍ତି ପ୍ରତୀକ ହେଉଛି ତା'ର ହସ୍‌ପିଟାଲ । ପୁରଞ୍ଜନର ଚିନ୍ତା ହସ୍‌ପିଟାଲ ଆଡ଼କୁ ମୁହାଁଇଛି । ହସ୍‌ପିଟାଲରେ ଡାଇରିଆ, ଡିସେଣ୍ଟ୍ରି ସଂଖ୍ୟା ଯଦି ଅଧିକ, ତା'ହେଲେ ସେ ଅଞ୍ଚଳରେ ଖାଦ୍ୟାଭାବ, ଜଳାଭାବ ଉତ୍କଟ ଓ ଅପମିଶ୍ରିତ ! ଗନୋରିଆ, ସିଫିଲସ୍, ଭି.ଡ଼ି. ରୋଗୀ ସଂଖ୍ୟା ଯଦି ଅଧିକ, ତା'ହେଲେ ସେ ଅଞ୍ଚଳର ଲୋକମାନଙ୍କର ଯୌନ ବ୍ୟବହାର ବିକୃତ, ଅନୈତିକ ! ଇନ୍‌ସୋମିନିଆ, ନିରୋଟିକ ରୋଗୀ ସଂଖ୍ୟା ଯଦି ଅଧିକ ତା'ହେଲେ ହତାଶ ବୋଧ ଓ ବିବ୍ରତବୋଧର ତୀବ୍ରତାରେ ପୀଡ଼ିତ ମଣିଷର ସାମାଜିକ ଗତି ହୋଇପଡ଼ିଛି ସ୍ଥାଣୁ, ପଙ୍ଗୁ !

ହଠାତ୍ ତା'ର ଏ ବିଶ୍ଳେଷଣକୁ ଧକ୍କା ଦେଇ ଶୁଭିଲା : ଉଇଲସ କିଂ ଗୋଟେ ପ୍ୟାକେଟ୍ ! ସିଗ୍ରେଟ୍ ମଗାଳିକୁ ପୁରଞ୍ଜନ ଅନାଇଲା । ଚମକିଯିବା ସଙ୍ଗେ ସଙ୍ଗେ ତା' ମୁହଁସାରା ଏକ ଆନନ୍ଦଝର ବୋହି ଆସିଲା : ଏ'ଯେ ଅନୁପମ ! କଲେଜ ସମୟର

ସବୁଠୁଁ ଘନିଷ୍ଠ ବନ୍ଧୁ ! ପରକ୍ଷଣରେ ପୁରଞ୍ଜନର ଆଖି ସଚେତନ ହୋଇପଡ଼ିଲା । ତା'ର ଶୋଚନୀୟ ଅବସ୍ଥା ତାକୁ ନ୍ୟୂନ କରିଦେଲା ଏବଂ ଅନୁପମ ତାକୁ ଚିହ୍ନିବା ପୂର୍ବରୁ କୌଣସି ଉପାୟରେ ଖସିଯିବାକୁ ତରତର ହେବା ଆରମ୍ଭ କଲା । ପରମୁହୂର୍ତ୍ତରେ ସେ ନିଜ ନ୍ୟୂନବୋଧର ଊର୍ଦ୍ଧ୍ୱକୁ ଉଠିବା ଆରମ୍ଭ କଲା ଏବଂ ଆସ୍ତେ ଡାକିଲା : ଅନୁପମ !

ଅନୁପମ ଚମକି ଉଠିଲା ଏବଂ ଅଳ୍ପ ସମୟ ପାଇଁ ତା'ର ଚକ୍ଷୁ ସନ୍ଦେହ ଓ ଆଶଙ୍କାରେ ଜଡ଼ିଗଲା । ତୁ ପୁରଞ୍ଜନ ! ଆବେ, ଏମିତି ହେଇଯାଇଛୁ ନା, ଚିହ୍ନି ହେଉନି ! ୟା' କହି ଅନୁପମ ପୁରଞ୍ଜନର ହାତମୁଠାକୁ ଜାବୋଡ଼ି ପକାଇଲା । ଆଖି ଓ ମୁହଁକୁ ଘୂରି ଘୂରି ଚାହିଁ ପ୍ରଶ୍ନ କଲା : ରଙ୍ଗ ରଙ୍ଗ ଆଖି, ମୁହଁର ବାସ୍ନା କହି ଦଉଚି ତୁ ଦେଶୀ ମାଲ୍, ଗଞ୍ଜେଇରେ ଅଭ୍ୟସ୍ତ ହେଇଗଲୁଣି ? ଏକ ଉଦାସ ହସ ବିଛାଡ଼ି ପୁରଞ୍ଜନ କହିଲା : ମୋ ସମ୍ପର୍କରେ କାହାକୁ କିଛି ଜଣାଇଲା ଭଳି ଖବର ମୋର କିଛି ନାହିଁ । ତୋ କଥା କହ । ଦୀର୍ଘ ଛଅ ବର୍ଷ ପରେ ପୁଣି ଭେଟ, ଉଇଲ୍‌ସ ଫ୍ଲାକ୍ ସିଗ୍ରେଟ, ତୋର ଚାହାଣୀ, ତୋର ଢଙ୍ଗ ସୂଚେଇ ଦଉଚି ତୋ ସମ୍ପର୍କରେ ମୁଁ ଜାଣିବାକୁ ବହୁତ ଅଛି । ଅବଶ୍ୟ ଏଟା ଜାଣିଛି ଯେ ଅନୁପମ ଚୌଧୁରୀଙ୍କର ବର୍ତ୍ତମାନ ତିନୋଟି କବିତା ସଂକଳନ ପ୍ରକାଶିତ । ଅନୁପମ କିଛି ଉଲ୍ଲସିତ ହୋଇ ପଡ଼ିଲା ଏବଂ କହିଲା : ମୋ କଥା ତ ନିଶ୍ଚୟ ଶୁଣିବୁ, କଲେଜ କ୍ୟାରିଅରରେ ସାଙ୍ଗ ହେଇ ଲେଖୁଥିଲେ, ତୁ କାହିଁକି କବିତା ଲେଖା ବନ୍ଦ କଲୁ କହିଲୁ ? ସେତେବେଳେ ତ କବିତା ଲେଖାରେ ତୁ ଥିଲୁ ଆଗ ଧାଡ଼ିରେ, ମୁଁ ଥିଲି ପଛ ଧାଡ଼ିରେ ! ପୁରଞ୍ଜନ ଅନୁଭବ କଲା, ଅନୁପମ ଯେମିତି କହିବାକୁ ଚାହୁଁଛି, ଦେଖ୍, ତୋର ହାତ ବନ୍ଦ, ମୁଁ ବର୍ତ୍ତମାନ ଜଣେ ସ୍ୱୀକୃତ କବି !

: ଆଉ ତୋ ଖବର କହ । କେଉଁଠି ଅଛୁ, କ'ଣ କରୁଛୁ, ବାହା ହେଲୁଣି ନା ନାହିଁ, ପିଲାପିଲି ?

: ଭାଇ ବ୍ୟାଙ୍କରେ ଚାକିରି ପାଇଛି । ମାସେ ହେଲା ଏଠିକୁ ଟ୍ରାନ୍ସଫର ହୋଇ ଆସିଛି । ରାସ୍ତାରେ ରିକ୍ସାରେ ଯିଏ ବସିଛି, ସିଏ ଅଜନ୍ତା, ମୋର ସ୍ତ୍ରୀ । ବର୍ଷେ ହେଲା ବାହାଘର ! ଫାଷ୍ଟ ପ୍ରେଗ୍ନେନ୍‌ସି ! ଡେଟ୍ ଗଡ଼ିଗଲାଣି ! ଡାକ୍ତର କହିଲେ, ପିଲା ଠିକ୍ ପୋଜିସନ୍‌ରେ ନାହିଁ । ଏଣୁ ଅପରେସନ୍ ହେବାର ସମ୍ଭାବନା !

ଅଜନ୍ତା ନାଆଁଟା ଶୁଣିଲା ମାତ୍ରେ ପୁରଞ୍ଜନର ସାରା ଶରୀରରେ ରଜନୀଗନ୍ଧା ଫୁଟିପଡ଼ିଲା । କିଏ ସେ ଅଜନ୍ତା, ତାକୁ ଆବିଷ୍କାର କରିବା ପାଇଁ ସେ ବ୍ୟାକୁଳ ହେଇଉଠିଲା । ଏତେ ବ୍ୟାକୁଳତା ଠିକ୍ ନୁହେଁ ପୁରଞ୍ଜନ, ସେ ଯେଉଁ ଅଜନ୍ତା ହେଉନା କାହିଁକି, ସେ ତୋର ବନ୍ଧୁ ପତ୍ନୀ ! ଏଭଳି ତାଗିଦ୍ ତା' ମନରେ ଉଠୁ ଉଠୁ ସେ ତାକୁ ଦବାଇଦେଲା : ନା, ଅଜନ୍ତା କେମତି ଅଛି, କେମିତି ହୋଇଛି, ତାକୁ ଦେଖିବାଠୁ ବଳି ପବିତ୍ର କାର୍ଯ୍ୟ ତା'ର ଆଉ ନାହିଁ ବୋଲି ପୁରଞ୍ଜନର ଆବେଗ ଜାଗି ଉଠିଲା । ତା'

ମାମୁଘର ଗାଁରେ ଅଜନ୍ତା ସହ ପ୍ରଣୟର ରଙ୍ଗ ଢୋଲ ବାଜି ଉଠିଥିଲା ଏବଂ ଅଜନ୍ତା ଯେତେବେଳେ ଜାଣିବାକୁ ପାଇଲା ଯେ ପୁରଞ୍ଜନ କବିତା ଲେଖେ ବୋଲି ସେତେବେଳେ ଅଜନ୍ତା ଜିଗର ବାଡ଼ିଥିଲା : ଗୋଟେ କବିତା !

ଅଜନ୍ତାର କବିତା ମାଗିବା ମାଧ୍ୟମରେ ଅଜନ୍ତାର ପ୍ରେମ ଓ ପଣୟକୁ ଅନୁଭବ କରିବାର ଇଚ୍ଛାକୁ ମାପି ନେଇଥିଲା ପୁରଞ୍ଜନ ଏବଂ କବିତାଟେ ଲେଖିଥିଲା :

ସ୍ୱପ୍ନରେ ଆସିଲୁ ବାମା
ସ୍ମୃତିରେ ଆସିଲୁ
ଏରୁଣ୍ଡି ବନ୍ଧକୁ ମୋର
କେବେ ନ ଛୁଇଁଲୁ !

ପ୍ରତ୍ୟୁତ୍ତରରେ ଅଜନ୍ତା କହିଥିଲା : ମୁଁ ଖାଲି ଏରୁଣ୍ଡି ବନ୍ଧକୁ ଛୁଇଁବିନି ପୁରଞ୍ଜନ, ତାକୁ ଡେଇଁଯିବି ! ହୁଏତ ଇଏ ସେଇ ଅଜନ୍ତା, ଯିଏ ଜଣେ କବିକୁ ହିଁ ପରିଶେଷରେ ବାହା ହେଇଚି !

ଅନୁପମ ପୁରଞ୍ଜନର ହାତ ମୁଠାକୁ ଧରି ପକାଇଲାରୁ ପୁରଞ୍ଜନ ଅନ୍ୟ ଏକ ବାସ୍ତବତାର ଡେଁକାରେ ଫେରିଆସିଲା । ସେ ସ୍ୱପ୍ନ ଓ ଯାତନାର ବଳୟରୁ ମୁକ୍ତ ହେଇଗଲା । ଅନୁପମ କହିଲା : ପୁରଞ୍ଜନ, ତୋ ଭଳି ଗୋଟେ ପ୍ରତିଭା ନଷ୍ଟ ହେଇଯାଉଛି, ଭାବିଲେ ଭାରି ଦୁଃଖ ଲାଗେ । ଯେଉଁ ଅବସ୍ଥା, ଯେଉଁ ମନୋବୃତ୍ତି ଭିତରେ ତୁ ସଢୁଛୁ, ସେଥିରୁ ତୁ ଉର୍ଦ୍ଧ୍ୱକୁ ଉଠିଆ !

ନିର୍ମମ ଓ ସତର୍କ ହୃଦୟ ବ୍ୟବସ୍ଥାଠାରୁ ସେ ଉର୍ଦ୍ଧ୍ୱକୁ ଉଠିଯାଉଛି ବୋଲି ତ ତା'ର ଏ ଅବସ୍ଥା । ହୃଦୟର ଆବେଗକୁ ସେ ମସ୍ତିଷ୍କର କ୍ରୁର ଆଘାତରେ ଭାଙ୍ଗି ପାରୁନାହିଁ ବୋଲି ତ ତା'ର ଏ ଯାତନା ! ହାୟ, ଅନୁପମ ତାକୁ, ତା'ର ବେଶପୋଷାକ, ତା'ର ଷ୍ଟାଟସ୍ ଦୃଷ୍ଟିକୋଣରୁ ମାପିଛି ସିନା ! ଅନୁପମର ବୈଷୟିକ ବ୍ୟବସ୍ଥା ହିଁ ତାକୁ ପୁରଞ୍ଜନ ପ୍ରତି ଉପଦେଶ କ୍ଷେପଣରେ ସାହାଯ୍ୟ କରୁଛି ସିନା ! ଓଠ ଦୁଇଟି ମେଲେଇ ପୁରଞ୍ଜନ କହିଲା : ବହୁ ସମୟ ରିକ୍ସା ଛିଡ଼ା କଲଣି ଯେ, ପରେ ଏ ସମ୍ପର୍କରେ କଥାବାର୍ତ୍ତା କରିବା !

: ଆ, ହସ୍‌ପିଟାଲ ଆଡ଼େ ଯିବା ଆ । କହି ଅନୁପମ ପୁରଞ୍ଜନକୁ ଟାଣିଲା । ପୁରଞ୍ଜନ ଏକ ଆବେଗ, ଏକ ଶଙ୍କା, ଏକ ଦ୍ୱନ୍ଦ୍ୱର ପଦପାତରେ ରିକ୍ସା ଆଡ଼କୁ ଅଗ୍ରସର ହେଲା ଅନୁପମ ସହ ।

: ଇଏ ମୋର କ୍ଲାସ୍‌ମେଟ୍ ପୁରଞ୍ଜନ । ପରିଚୟ କରାଇ ଦେଲା ଅନୁପମ । ଷ୍ଟ୍ରିଟ ଆଲୁଅର ରଜ ରଜ କୁହେଳି ଭିତରୁ ଆବିଷ୍କାର କରିନେଲା ପୁରଞ୍ଜନ... ଏ ଯେ ସେହି, ସେହି ଅଜନ୍ତା, ଯାହା ସହ ସମ୍ପର୍କର ବିମୁଗ୍ଧ ଓ ପବିତ୍ର ସ୍ୱପ୍ନରେ ଆଜିଯାଏ

ବିହ୍ୱଳିତ ହେଇ ଭିଡ଼ିଉଁ ଚାଲିଛି ପୁରଞ୍ଜନ, ଏକ ସ୍ୱପ୍ନ-ସମ୍ରାଟ ଭଳି । ଅଜନ୍ତା ଚମକି ଉଠିଲା ବୋଧେ ! ଯା' ଭିତରେ ଅଜନ୍ତା ବୟସ୍କ ଭଳି ଦେଖାଯାଉଛି । ଦେହ ଆହୁରି ହୃଷ୍ଟପୁଷ୍ଟ ହେଇଯାଇଛି ସତ, କିନ୍ତୁ ଶିଥିଳତାର ବୌଦ୍ଧିକ ସ୍ପର୍ଶରେ ତାହା ଜଣାପଡୁଛି ଯେମିତି ଏକ ପରିମିତ ଜଡ଼ !

ଯେଉଁ ଓଠର ସ୍ପନ୍ଦନକୁ, ଯେଉଁ ବାହୁର ବନ୍ଧନକୁ ପୁରଞ୍ଜନ ପବିତ୍ର ଅନୁଭବର ଗଣ୍ଠିଲି କରି ଏବେ ବି ନିଜକୁ ଭାଗ୍ୟବାନ ମନେ କରିଛି, ସେ ଓଠରେ ଲିପ୍‌ଷ୍ଟିକ୍‌ର ବହଳ ଧାର ସତ, ସେ ବାହୁରେ ମାଂସର ସତେଜତା ରହିଛି ସତ, କିନ୍ତୁ ତାହା ଛଳ ଛଳ ସ୍ପନ୍ଦନ ରହିତ । ସେ ଆଖିରେ ହରିଣୀ ଖେଳୁଛି ସତ, କିନ୍ତୁ ତାହା ନିରୀହ କୋମଳ ତରଙ୍ଗର ନୁହେଁ, ତ୍ରସ୍ତ ଶଂକାକୁଳ ଅସ୍ଥିରତାର !

କୌଣସି ବାକ୍ୟ ନ ଥାଇ ପୁରଞ୍ଜନ ଉଦ୍ଦେଶ୍ୟରେ ଅଜନ୍ତାର ଦୁଇହାତ ଯେତେବେଳେ ଯୋଡ଼ି ହେଇଗଲା, ସେତେବେଳେ ପୁରଞ୍ଜନ ଅନୁଭବ କଲା ଅଜନ୍ତା ଯେମିତି ଯୋଡ଼ହସ୍ତ ମାଧ୍ୟମରେ କହିବାକୁ ଚାହୁଁଚି, ତମକୁ ବିନୟ ହେଉଚି ପୁରଞ୍ଜନ, ଆମର ପୂର୍ବ ସମ୍ପର୍କ ଅନୁଦ୍‌ଘାଟିତ ରହୁ, ନୀରବ ରହୁ !. ମୁଁ ତୁମର ବନ୍ଧୁଙ୍କର ପତ୍ନୀ ! ମୁଁ ଗୋଟେ ନାରୀ, ଯିଏ ତା'ର ଅତୀତର ପ୍ରେମ-ପ୍ରଣୟକୁ ଆବେଗ ଓ ଆନ୍ତରିକତାର କାନିରେ ବାନ୍ଧି ସାଇତି ଥାଏ ସତ, କିନ୍ତୁ ସେହି ଅତୀତକୁ ସବୁବେଳେ ଭୟ କରୁଥାଏ, କାଳେ କାନିର ଗଣ୍ଠି ଫିଟିଯିବ ! ଏବଂ ମୁଁ ଏବେ ମାଆ ! ମୋର ସ୍ଥିତି; ମୋର ଅସହାୟତାକୁ ବିଚାରିନିଅ !

ନମସ୍କାର ଭାଉଜ ! ହାତ ଯୋଡ଼ିଲା ପୁରଞ୍ଜନ । ଏତିକି କହିବା ମାଧ୍ୟମରେ ସେ ଯେମିତି କହିଦେଲା : ଏହି ସମ୍ବୋଧନ ମାଧ୍ୟମରେ ମୁଁ ସମସ୍ତ ଅତୀତ ପର୍ବକୁ ଘୋଡ଼ାଇ ଦେଇ ତୁମକୁ ଅଭୟ ଦେଲି ଅଜନ୍ତା !

ଅଜନ୍ତା ମୁହଁରେ ଧୀରେ ହସ ଚରିବୁଲିଲା ଏବଂ ପୁରଞ୍ଜନ ଦୀର୍ଘଶ୍ୱାସର ଲହଡ଼ିରେ ପୋତି ପଡ଼ିଲା । ନିଜର ପବିତ୍ର ସ୍ମୃତିର ଗଣ୍ଠିଧନ ଉଦ୍ଦେଶ୍ୟରେ ପୁରଞ୍ଜନ ଯେମିତି ସ୍ୱଗତୋକ୍ତି କଲା : ହେ ମୋର ଭାଗ୍ୟଶାଳୀ ସ୍ମୃତିରେଣୁ, ତମେ ବର୍ତ୍ତମାନ ଅଜାତଶତ୍ରୁ ! ତୁମକୁ ଭାଙ୍ଗିବାକୁ, ନଷ୍ଟ କରିବାକୁ ଆଉ କେହି ନାହିଁ ! ତୁମର ସ୍ୱତଃସ୍ଫୂର୍ତ୍ତ ପ୍ରାଣବନ୍ତ ଉଚ୍ଛ୍ୱାସକୁ କେହି ଗୋଳିଆ କରିପାରିବ ନାହିଁ । କାରଣ ଆମେ ଦୁହେଁ ଛଳନା କରିସାରିଲୁଣି । ତୁମ ଏରୁଣ୍ଡିବନ୍ଧକୁ ଛୁଇଁବାର ଶକ୍ତି ଛଳନାର ନାହିଁ । ପରନ୍ତୁ, ଏ ଛଳନା ହେବ ଯେତେ ଉତ୍କଟ, ଯେତେ ତୀବ୍ର, ତୁମେ ହେବ ସେତେ କାନ୍ତିମୟ, ବାଙ୍ମୟ !

ଅଜନ୍ତାକୁ ହସ୍‌ପିଟାଲରେ ଆଡ୍‌ମିସନ୍ କରିସାରି ଦୁଇବନ୍ଧୁ ପ୍ରସୂତି ୱାର୍ଡ଼କୁ ଗଲେ । ନର୍ସ ବେଡ୍ ନାହିଁ, ତଳେ ଆଡ୍‌ଜଷ୍ଟ କରୁଛି, ଆସନ୍ତାକାଲି ବେଡ୍ ଖାଲି ହେଲେ ଦେବି, ବୋଲି ଯେତେବେଳେ କହିଲା, ସାମ୍ନାରେ ଗୋଟେ ଖାଲି ବେଡ୍‌କୁ ଲକ୍ଷ କରି ପୁରଞ୍ଜନ

ଅପେକ୍ଷାକୃତ ଦମ୍ଭରେ କହିଲା : ସେ ବେଡ୍‌ଟା ଖାଲିଅଛି । ସେଇଟା ଆମକୁ ଆଲଟ୍ କରିବାକୁ ହେବ ! ନର୍ସ ଜଣକ ଆପାତ କୁଣ୍ଠିତ ଭାଷାରେ ନରମିଯାଇ 'ଆପଣମାନେ ତ ଏମିତି ହଇରାଣ କରିବେ, ହଉ, ଚେଷ୍ଟା କରୁଛି' କହି ଡ୍ୟୁଟି ରୁମ୍‌କୁ ଚାଲିଗଲା । ଅନୁପମ ବୁଝାଇଲା ଢଙ୍ଗରେ ପୁରଞ୍ଜନକୁ କହିଲା : ଏଭଳି ଭାବରେ କହିବା ଠିକ୍ ହେଲାନି ପୁରଞ୍ଜନ, ଯେତେହେଲେ ପେସେଣ୍ଟ ଆମର !

ହସ୍ ଆଉ ଶିଷ୍ଟଭାଷାର ଜାଲ ବିଛି ସ୍ୱାର୍ଥ ଓ ଶୋଷଣର ଅର୍ଗଳୀକୁ ପରିଷ୍କାର ରଖିବାଟା ଭଦ୍ରାମୀ; ସତ୍ୟ ଓ ବାସ୍ତବତାର ସ୍ତମ୍ଭକୁ ଜାହିର କରିବାଟାକୁ ଆମେ ଦୁର୍ବ୍ୟବହାର,ଗୁଣ୍ଡାମୀ ବୋଲି କହୁ, ସେଇଟା ଆମର ଦୁର୍ଭାଗ୍ୟ । ବେଡ୍ ଆଲଟ କରିବା ଭିତରେ ନର୍ସର କିଛି ରୋଜଗାର କରିବାର ଫନ୍ଦି ବି ଅଛି, ବୁଝିଲୁ ?

ତା'ହେଲେ ଆମେ କିଛି ପଇସା ଦେଇ ଦେଇଥାନ୍ତେ, କିନ୍ତୁ ହସପିଟାଲରେ ପେସେଣ୍ଟ ରଖି ନର୍ସ, ଡାକ୍ତରଙ୍କ ସହ ଅପ୍ରିୟ ହେବା କ'ଣ ଠିକ୍ ? ଅନୁପମ ଯୁକ୍ତି ବାଢ଼ିଲା ।

ତୁ ପଇସା ଦେଇପାରିବୁ ଅନୁପମ, କିନ୍ତୁ ନର୍ସର ଏଇ ପଇସା ଲାଳସା ହିଁ ଗରିବ ରୋଗୀମାନଙ୍କୁ ପ୍ରକୃତ ଚିକିତ୍ସା ଓ ସେବାରୁ ବଞ୍ଚିତ କରେ ! ପୁରଞ୍ଜନ ଉତ୍ତର କଲା !

ଯେଉଁମାନଙ୍କର ପଇସା ଦେଇପାରିବାର କ୍ଷମତା ନାହିଁ, ସେମାନଙ୍କଠୁଁ ଏମାନେ ଆଶା କରନ୍ତି ନାହିଁ ଏବଂ ଯେଉଁମାନେ ଦେଇପାରିବେ, ସେମାନଙ୍କଠାରୁ କିଛି ପାଇଯିବାର ଲୋଭ ସମ୍ବରଣ କରିପାରନ୍ତି ନାହିଁ । ତେଣୁ ଚିକିତ୍ସା ଓ ସେବାରେ ସେମାନେ ଅବହେଳିତ ହେବେ କାହିଁକି ? ଅନୁପମ ଯୁକ୍ତିକୁ ଅଗ୍ରସର କରାଇନେଲା ।

ଅନୁପମ, ଯେଉଁମାନଙ୍କଠାରୁ ସେମାନେ କିଛି ପାଉଣା ପାଇବେ, ସେମାନଙ୍କୁ ଏମାନେ ସ୍ୱତନ୍ତ୍ର ସୁବିଧା ଦେବାକୁ ବାଧ୍ୟ, ପରିଣତିରେ ଅନ୍ୟମାନେ ଅବହେଳିତ ହିଁ ହେବେ । ତା'ଛଡ଼ା, ଯେଉଁମାନେ ପାଉଣା ଦେଇଥିବେ, ସେମାନେ ନିଶ୍ଚୟ ଅଧିକ ସୁବିଧା ଓ ସୁଯୋଗ ଦାବି କରିବେ !

ଏତିକିରେ ଅନୁପମ ନୀରବ ହେଇଗଲା । ବେଡ୍ ଆଲଟ ହେଇଗଲା ପରେ ପୁରଞ୍ଜନ ବିଦାୟ ନେଇଆସିଲା । ସେତେବେଳକୁ ରାତ୍ରି ଆଂଗୁସାର । ପକେଟ୍‌ରେ ଗୋଟେ ହେଲେ ପଇସା ନାହିଁ । କ୍ଳାନ୍ତ ପାଦରେ ଗୋଟେ ଗୋଟେ ଆସି ହସପିଟାଲ ପାଚେରି ଉପରେ ବସିଲା ପୁରଞ୍ଜନ । ନଗ୍ର ଧୀରେ ଧୀରେ ସୁପ୍ତ ହେଇଆସୁଛି । ଚରାବୁଲା ମଣିଷମାନଙ୍କର ପଦ ଗୃହମୁଖୀ । ଆଉ କିଛି ସମୟ ପରେ ସାରା ସହରର ସ୍ନାୟୁ ଶିଥିଳ ହୋଇଆସିବ । ପୁରଞ୍ଜନକୁ କିନ୍ତୁ କ୍ରମଶଃ ନିର୍ଜନ ହେଇ ଆସୁଥିବା ସହରର ଛକ, ରାସ୍ତା ସବୁ ଭଲଲାଗେ । ସେ ଅନୁଭବ କରେ ମଣିଷ ନିଜ ପାଖରେ ନିଜକୁ

ଅଢାଡ଼ି ଦେବାକୁ ହେଲେ ଜରୁରୀ କୋଳାହଳ ଏବଂ କ୍ରମଶଃ ସେଥିରୁ ବିମୁକ୍ତ ଏକାକୀତ୍ୱ । ଦେଶୀମାଲ୍, ଗଞ୍ଜେଇ, ବିଡ଼ି ଓ ଛୁରାର ପାସପୋର୍ଟରେ ଗୋଟେ ଜୀବନ ତା'ର ଷାଠିଏ ସତୁରୀ ବର୍ଷର ଆବୁଡ଼ା ଆବୁଡ଼ା ଗଳି ପାରିହେବା କ'ଣ ଏତେ ସହଜ ! ଶତ ପୌରୁଷ ତା'ର, କେବେହେଲେ ଛୁରିର ଅମର୍ଯ୍ୟାଦା କରିନାହିଁ । ମାଆ ଏବେ ଦୁଇଖଣ୍ଡ ରୁଟି, ଟିକେ ଚିନି, ନୋଟେ ପାଣି ତା ଶୋଇବା ଘରେ ଥୋଇଦେଇ ଆଶଙ୍କା ଓ ଆନ୍ଦୋଳନର ଝୁଲାରେ ଝୁଲି ଝୁଲି ନିଦ୍ରା ଯାଉଥିବ । ପୁଅକୁ ଛୁରିମିଡ଼ ହେଲାକି, ପୋଲିସ୍ ବାନ୍ଧିନେଲା କି, ସ୍ୱପ୍ନରେ ଚମକୁଥିବ । ଏଣେ ହସ୍‌ପିଟାଲ୍ ବେଡ଼ ଉପରେ ପ୍ରସୂତିର ବେଦନା ଓ ଆଶଙ୍କାରେ ଜଡ଼ସଡ଼ ଅଜନ୍ତା ହୁଏତ ଅତୀତର ସ୍ୱପ୍ନସଜା କୋଳକୁ ଫେରିଯାଉଥିବ ଏବଂ ଅନୁପମ ନର୍ସ ପାଖରୁ ଶୁଣୁଥିବ : ପୁରଞ୍ଜନ ଭଳି ଗୁଣ୍ଡା ଲଫଙ୍ଗାଙ୍କୁ ସଙ୍ଗରେ ଧରି ଆସିଲେ ଆପଣ କ'ଣ ଭଲ ଚିକିତ୍ସା ପାଇବେ ? ବେଡ୍ ପାଇବେ ? ଏବଂ ଅନୁପମ ଭାବୁଥବ : ପୁରଞ୍ଜନକୁ ସାଙ୍ଗରେ ଆଣି ସେ ଭୁଲ୍ କରିଛି, କେମିତି ହେଲେ ତା'ଠୁଁ ମୁକୁଳିବା ଭଲ ।

ପୁରଞ୍ଜନ ଅନୁଭବ କଲା, ତାକୁ ନେଇ ତା' ଚାରିପାଖରେ ଚରିତ୍ରମାନେ ଶଙ୍କିତ, କାରଣ ସେ ତଥାକଥିତ ସୁଧାର, ଧୀରସ୍ଥିର, ମାଛିକୁ ମ' ବୋଲି କହୁ ନଥିବା ମଣିଷଟେ ହେଇପାରି ନାହିଁ । ଦୀର୍ଘଶ୍ୱାସଟେ ଉଇଁ ଆସିଲା ପୁରଞ୍ଜନ ଛାତିରୁ । ବିଂଶ ଶତାବ୍ଦୀର ଶେଷ ପାଦରେ ଦୀର୍ଘଶ୍ୱାସଠୁଁ ଅତି ଆପଣାର ବସ୍ତୁ ମଣିଷର ଆଉ କ'ଣ ଅଛି ? ପାଚେରିରୁ ଓହ୍ଲାଇ ଥକା ଥକା ପାଦରେ ଘର ଅଭିମୁଖେ ଚାଲିଲା ପୁରଞ୍ଜନ । ଅନ୍ଧାରସିଞ୍ଚା ପୃଥ୍ୱୀ ଅନୁଭବ କରୁଥିଲା ତା' ଛାତି ଉପରେ ଗୋଟେ ହୃଦୟ ଚାଲିଚି !

ତା'ପରଦିନ ସକାଳୁ ପୁରଞ୍ଜନ ରେଡ଼ିଓଗ୍ରାଫର ସହ ଝଗଡ଼ା କଲା, ଯେତେବେଳେ ରେଡ଼ିଓଗ୍ରାଫର କହିଲା, ପ୍ଲେଟ୍ ସରିଯାଇଛି, ବାହାରୁ ଏକ୍‌ସରେ କରାଇ ଆଣନ୍ତୁ, ସବୁଠୁଁ ଭଲହେବ ଅମର ବାବୁଙ୍କ ମେସିନ୍‌ରେ, ମୁଁ ଯାହା ଜାଣେ.....

ପୁରଞ୍ଜନ ରାଗରେ ନିଆଁ ହେଇ କହିଲା : ପ୍ରତ୍ୟେକ ରୋଗୀକୁ ଆପଣ ସେୟା ହିଁ କହିଥା'ନ୍ତି, ମୁଁ ଜାଣେ । କାରଣ ଏଠି ଡ୍ୟୁଟିରେ ହାଜିରା ଦେଇ ଆପଣ ପ୍ରକୃତରେ କାମ କରନ୍ତି ଅମରବାବୁଙ୍କ ପ୍ରାଇଭେଟ୍ ଏକ୍‌ସରେ ମେସିନ୍‌ରେ ଏବଂ ସେ ବାବଦକୁ ଅନ୍ୟୂନ ଦୈନିକ ଶହେ ଟଙ୍କା ରୋଜଗାର କରନ୍ତି । ଏଣୁ ଆପଣଙ୍କ ହସ୍‌ପିଟାଲ୍‌ର ଏକ୍‌ସରେ ମେସିନ୍ ହୁଏତ ଖରାପ ହେବାକୁ ବାଧ୍ୟ, ନହେଲେ ପ୍ଲେଟ୍ ସରିଯିବାକୁ ବାଧ । ଆହୁରି ଉତ୍ତ୍ୟକ୍ତ ହୋଇ ପୁରଞ୍ଜନ ଅଗ୍ରସର ହେଲା : ତିନିଘଣ୍ଟା ଭିତରେ ଆପଣ ଏକ୍‌ସରେ କରି ଯଦି ଆମକୁ ଠିକ୍ ପୋଜିସନ୍‌ର ଫଟୋ ନଦିଅନ୍ତି, ତା'ହେଲେ ପରିସ୍ଥିତି ଗୁରୁତର ହେବ ।

ଅଗତ୍ୟା ରେଡ଼ିଓଗ୍ରାଫର ଜଣକର ମୁହଁ କଳା ପଡ଼ିଗଲା । ଛେପ ଢୋକି କହିଲା, ଆପଣମାନେ ତ ଅଯଥା ଉତ୍ତ୍ୟକ୍ତ ହେଇ ଆଗପଛ ନବୁଝି ଯାଚ୍ଛାତା ବ୍ୟବହାର କରିବେ ।

ଚେଷ୍ଟା କରୁଛି ଯଦି ଷ୍ଟୋରରୁ ଗୋଟେ ଅଧେ ପ୍ଲେଟ ପାଇଯାଏ । ଏତକ କହି ମିଛିମିଛିକା ଖେଳ ଖେଳିବାକୁ ଷ୍ଟୋର ଆଡ଼କୁ ଅଗ୍ରସର ହେଲେ ରେଡ଼ିଓଗ୍ରାଫର । ପୁରଞ୍ଜନ କହିଲା : ବୁଝିଲୁ ଅନୁପମ, ଏକ୍‌ସରେ ପାଇଁ ଆଉ କୌଣସି ଚିନ୍ତା ନାହିଁ । ଅର୍ଥ ଉପାର୍ଜନ କରିବା ପାଇଁ ଏ ବାବୁ ଅତ୍ୟନ୍ତ ଲଜ୍ଜାକର, ଅସମ୍ମାନଜନକ ଗାଳିଗୁଲଜକୁ ନିମନ୍ତ୍ରଣ କରନ୍ତି, ହଜମ କରନ୍ତି । ମାଡ଼ ଖାଆନ୍ତି ସମୟ ସମୟରେ । ବେଳେବେଳେ ହାତଧରି ପକାଇ କ୍ଷମା ବି ମାଗି ନିଅନ୍ତି । କହନ୍ତି : ଛୁଆପିଲାର ଘର, ଅଣ୍ଟୁନାହିଁ । କିନ୍ତୁ ଏ ରେଡ଼ିଓଗ୍ରାଫର୍ ଏବେ ଏ ସହରରେ ଦି'ଟା କୋଠା କରି ଭଡ଼ା ଲଗାଇଛି !

ଅନୁପମ କିନ୍ତୁ ସେତେବେଳକୁ ପୁରଞ୍ଜନ ଉପରେ ବିରକ୍ତ ହେଇ ସାରିଥାଏ । ସେ ଟିକେ ଦ୍ରୁତ ସ୍ୱରରେ କହିଲା, ଆମେ ଏଠି ରୋଗୀ ନେଇ ଆସିଛେ ଟ୍ରିଟମେଂଟ୍ ପାଇଁ ନା ହସ୍‌ପିଟାଲର ସଂସ୍କାର, ସମାଜର ସଂସ୍କାର ପାଇଁ ?

: ଦେହର ଟ୍ରିଟମେଣ୍ଟ ହେଉଛି ଶାରୀରିକ ସଂସ୍କାର ଅନୁପମ ! ସେ ସଂସ୍କାର ପାଇଁ ବେଳେବେଳେ ହସ୍‌ପିଟାଲର ସଂସ୍କାର ଜରୁରୀ ! ପୁରଞ୍ଜନ ପ୍ରତ୍ୟୁତ୍ତର କଲା ।

: ତୁ ତା'ହେଲେ ମଦ ଗଞ୍ଜେଇ କବଳରୁ ନିଜକୁ ରକ୍ଷା କରି ପାରୁନାହୁଁ କାହିଁକି ? ଅନୁପମ ଏକ ପ୍ରକାର ଚିଡ଼େଇଲା ଭଳି କହିଲା ।

ଛୋଟିଆ ହସଟାଏ ଉବୁକାଇ ପୁରଞ୍ଜନ ନୀରବ ରହିଲା । ସେ କହିବାକୁ ଚାହୁଁଥିଲା, ଯେଉଁ ଅଭ୍ୟାସ ତୁମମାନଙ୍କର ଅଛି, ତାହା ମୋର ମଦ ଗଞ୍ଜେଇ ଅଭ୍ୟାସଠାରୁ ଆହୁରି ମାରାତ୍ମକ ! ଆହୁରି ଭୟଙ୍କର ! ତାହା ତମେ ନିଜେ ଅନୁଭବ କରିପାରୁନ !

ଅନୁପମ ମନେ ମନେ ସ୍ଥିର କରିନେଲା ଯେ, କୌଣସି ଉପାୟରେ ସେ ପୁରଞ୍ଜନର ସହଯୋଗରୁ ନିଷ୍କୃତି ନେବ, ନ ହେଲେ ପରିସ୍ଥିତି ଜଟିଳ ହେବା ଅସମ୍ଭବ ନୁହେଁ । ଏଣୁ ସେ ପୁରଞ୍ଜନକୁ ସଙ୍ଗରେ ନେଇ କ୍ୟାଣ୍ଟିନକୁ ଗଲା । ଚା' ଜଳଖିଆ ଖୁଆଇଲା । ନିଜେ ଖାଇଲା । ସିଗ୍ରେଟ୍ ଗୋଟେ ଧରାଇ ଦେଇ କହିଲା; ଭାଇ, ତୋ'ର ସାହାଯ୍ୟ ପାଇ ନଥିଲେ ମୁଁ ଭାରି ହଇରାଣ ହେଇଥାନ୍ତି । ଆଚ୍ଛା,ମୁଁ ଆସୁଛି, ପରେ ଦେଖା ହେବ । ଏତକ କହି ଅନୁପମ ସିଧା ଚାଲିଲା ୱାର୍ଡ଼କୁ, ପୁରଞ୍ଜନକୁ ଆଦୌ ଅପେକ୍ଷା ନକରି ଏକ ଆଶ୍ୱସ୍ତିର ପାହୁଣ୍ଡ ପକାଇ । ଅନୁପମର ହଠାତ୍ ଏ ବ୍ୟବହାରରେ ତଟସ୍ଥ ହେଇ ପଡ଼ିଲା ପୁରଞ୍ଜନ ଏବଂ ଅନୁପମର ଏ ବ୍ୟବହାରକୁ ଏକ ଉପେକ୍ଷାର ହସରେ ସହ୍ୟ କରିନେଇ ତା'ର ପରିଚିତ ପାନ ଦୋକାନ ବେଞ୍ଚରେ ବସିଲା ଏବଂ ତ୍ରସ୍ତସ୍ନାତ ଛାତିରେ ଭାବିଲା, ତା'ର ଓ ଅଜନ୍ତାର ସମ୍ପର୍କର କିଛି ସୁରାକ୍ ଆଉ ଅନୁପମ ପାଇଯାଇଛି କି ? ନା, ଅଜନ୍ତାର ବେଡ଼ ପାଖକୁ ଯିବା ଆଉ ଠିକ୍ ହେବନି । କାରଣ ମୁହାଁମୁହିଁ ହେଲେ ଛଳନାର ମୁଖା ଡେଇଁ ସତ୍ୟର ଆବେଗ ଆପେ ଆପେ ତା'ର ଚେହେରା ପ୍ରଦର୍ଶନ କରିପାରେ ମୁହଁରେ, ଆଖିରେ,ଛାତିରେ, ଆତ୍ମାରେ !

ଅନୁପମ ୱାର୍ଡ଼ରେ ଥିବା ଆଡ଼ମିସନ୍ ସମୟର ନର୍ସକୁ ପକେଟରୁ କୋଡ଼ିଏ ଟଙ୍କା ଦେଇ କହିଲା : ଦେଖନ୍ତୁ, କିଛି ଖରାପ ଭାବିବେ ନାହିଁ। ସେ ସାଙ୍ଗର ସ୍କୁ ଟିକେ ଢିଲା। ତା' କଥା ଧରିବେ ନାଇଁ। ପେସେଣ୍ଟ ମୋର ସ୍ତ୍ରୀ ! ବେଡ଼୍‌ଟା ସଙ୍ଗେ ସଙ୍ଗେ ଆପଣ ଆଲଟ୍ କରିଛନ୍ତି। ତେଣୁ ଧନ୍ୟବାଦ। ନର୍ସ ଜଣକ ଆଚମ୍ବିତ ହେଲା ଏବଂ ପରେ ପରେ ଆନନ୍ଦରେ ଟଙ୍କା ରଖି ଅଜନ୍ତା ପାଖକୁ ଗଲା। କହିଲା, ଯାହା କିଛି ସୁବିଧା ଅସୁବିଧା ମୋତେ କହିବେ, ମୁଁ ବନ୍ଦୋବସ୍ତ କରିଦେବି।

ଅନୁପମ ରେଡ଼ିଓଗ୍ରାଫର୍ ନିକଟକୁ ଗଲା ଏବଂ ତାକୁ ତିରିଶ ଟଙ୍କା ଦେଇ କହିଲା, ଦେଖନ୍ତୁ, ମୋ' ସାଙ୍ଗର ବ୍ୟବହାର ପାଇଁ ମୁଁ ଦୁଃଖିତ, କିଛି ଖରାପ ଭାବିବେନି। ଏକ୍‌ସରେଟି ଯେମିତି ପର୍‌ଫେକ୍‌ଟ ହୁଏ। ରେଡ଼ିଓଗ୍ରାଫର୍ ପକେଟରେ ଟଙ୍କା ରଖିଲା ଏବଂ ଏଭଳି ଏକ ଅପୂର୍ବ ସୁଯୋଗକୁ କରଛଡ଼ା ନକରି କହିଲା : ଆପଣ ଜାଣନ୍ତିନି, ଆପଣଙ୍କ ସାଙ୍ଗ ଏକାଧାରରେ ଗୁଣ୍ଡା, ଜୁଆଡ଼ି ଆଉ ମଦ୍ୟପ ! ମୁଁ ତାକୁ ଚିହ୍ନେ, ତାଙ୍କ ନାଆଁ ପୁରଞ୍ଜନ। ସିନେମାହଲ୍ ଛକରେ ତା'ର ଆଡ୍‌ଡ଼ା। ଆମକୁ ଗାଳି କରିବ। ଏଣେ ଆମ ପାଖରୁ ପଇସା ମାଗି ମଦ ପିଇବ ! ଛାଡ଼ନ୍ତୁ ସେ କଥା। ରୋଗୀ ନେଇ ଆସନ୍ତୁ, ମୁଁ ଏକ୍‌ସରେ ନେଇନେବି।

କୃତଜ୍ଞ ହେବା ଢଙ୍ଗରେ ଅନୁପମ ଫେରିଲା। କି ବିଚିତ୍ର ଏ ମଣିଷର ପ୍ରକୃତି ଯେ, ଲାଞ୍ଚ ନେଇସାରିଲା ପରେ ବି ନିଜର କର୍ତ୍ତୃତ୍ୱ ଜାହିର ନ କରି ସେ ବିନୀତ ରହୁଛି !

ଏକ୍‌ସରେ ଫଟୋଟି ଧରି ଅନୁପମ ଡାକ୍ତରଙ୍କ ପାଖକୁ ଗଲା ଏବଂ ଡାକ୍ତର ଫଟୋଟି ଦେଖିସାରି ଆସନ୍ତାକାଲି ଦିନ ନ'ଟା ବେଳେ ଅପରେସନ୍ କରିବାକୁ ଯେତେବେଳେ ମତ ଦେଲେ, ଅନୁପମ ଟିକେ ହଡ଼ବଡ଼ ହେଇଗଲା ଏବଂ ପକେଟରୁ ଶହେଟଙ୍କାର ନୋଟ୍‌ଟିଏ କାଢ଼ି ଡାକ୍ତରଙ୍କୁ ବଢ଼ାଇ ଦେଇ କହିଲା, ସାର୍, ଆପଣ ହିଁ ଅପରେସନ୍ କରିବେ !

: ଦୁଇ ବୋତଲ ରକ୍ତ ଆବଶ୍ୟକ ହେବ। ସେଇଟା ଆପଣ ଯୋଗାଡ଼ କରିବେ। କାରଣ ରକ୍ତ କିଣିବାକୁ ମିଳିବନି। ରୋଗୀର ରକ୍ତ ଗ୍ରୁପ୍‌ର ରକ୍ତ ମିଳିଲେ ଭଲ, ନହେଲେ ଅନ୍ୟ ଗ୍ରୁପ୍‌ର ମିଳିଲେ ବ୍ଲଡ୍ ବ୍ୟାଙ୍କରୁ ବଦଳ କରିବେ, ବୁଝିଲେ ! ଡାକ୍ତର କହିଲେ। ଅନୁପମର ଦେହ,ଛାତି କର୍ମମୁଖର ହେଇ ଉଠିଲା। ରକ୍ତ କିଏ ଦବ, କେଉଁଠୁ ଆସିବ ? ଅନୁପମ ତା'ର ସାଙ୍ଗସାଥୀ, ଶାଶୁ ଶ୍ୱଶୁର, ବାପ ମା', ବନ୍ଧୁବାନ୍ଧବ ସମସ୍ତଙ୍କୁ ଅପରେସନ୍ କଥା ଜଣାଇଦେଲା। ଅପରେସନ ଓ ରକ୍ତ କଥା ଅନୁପମ ଯେତେବେଳେ ଅଜନ୍ତାକୁ କହିଲା, ଅଜନ୍ତାର ମୁହଁଟି ଶୁଖିଗଲା। ସେ ଅନୁପମକୁ କହିଲା, ଦେଖ, ରକ୍ତ କେଉଁଠୁ ହେଲେ ଯୋଗାଡ଼ କର, ତମେ ନିଜେ ଦବନି। କାରଣ ତା'ର ନିରାପତ୍ତା

ଅନୁପମ ଉପରେ ହିଁ ନିର୍ଭର କରେ । ଯଦିଓ ରକ୍ତ ଦେବା ଦ୍ୱାରା ଲୋକର ବିଶେଷ କିଛି କ୍ଷତି ହୁଏ ନାହିଁ, ତଥାପି ଏକ ପ୍ରକାର ଭୟ ତାକୁ କାବୁ କରି ଦେଉଥିଲା । ଅନୁପମ ନିଜେ ବି ଆସ୍ୱସ୍ତ ହେଲା । ଯା' ହଉ; ଅଜନ୍ତା ପ୍ରଥମରୁ ହିଁ ତାକୁ ରକ୍ତ ଦେବାକୁ ମନାକରି ରକ୍ଷା କରିଦେଇଛି । ନ ହେଲେ କର୍ତ୍ତବ୍ୟର ଆହ୍ୱାନ ଓ ନୈତିକ ଉପ୍ରୋଧରୁ ତାକୁ ହିଁ ରକ୍ତ ଦେବାକୁ ପଡ଼ିଥାନ୍ତା । କିନ୍ତୁ ରକ୍ତ ଦବ କିଏ ? ଅନୁପମ ତା'ର ପ୍ରତିଟି ବନ୍ଧୁ, ଅଫିସ ସାଙ୍ଗଙ୍କୁ ପଚାରିଲା—ଭାଇ, ରକ୍ତ କଥା କ'ଣ କରିବା ? ପ୍ରତ୍ୟେକ ବନ୍ଧୁ ତା'ର ପ୍ରଶ୍ନ ସହ ସ୍ୱର ମିଳାଇ ବି ପ୍ରଶ୍ନ କଲେ, ହଁ, ରକ୍ତ କଥା କ'ଣ କରିବା ? କିନ୍ତୁ କେହି କହିଲେନି, ମୁଁ ଦେବି ବୋଲି । ତେବେ ଜଣେ ବନ୍ଧୁ ଆଶ୍ୱାସନା ଦେଲେ, ବ୍ୟସ୍ତ ହୁଅନ୍ତୁନି, ବହୁ ଲୋକ ମିଳିବେ, ଯେଉଁମାନେ ଟଙ୍କା ନେଇ ରକ୍ତ ଦିଅନ୍ତି ! କାଲିକି ଦେଖିବା । ମୋ' ମା'ଙ୍କ ଅପରେସନ୍ ବେଳକୁ ମୁଁ କିଣିଥିଲି ।

ଅନୁପମ ଆସ୍ୱସ୍ତ ହେଲା । ଯା' ହେଉ, ରକ୍ତ ପାଇଁ କିଛି କିନାରା ମିଳିଗଲା । କିନ୍ତୁ ଅପରେସନ୍‌ଟି ଯେଭଳି ଠିକ୍ ଭାବରେ ହୁଏ, ସେଥିପାଇଁ ସେ ଚିନ୍ତିତ ହୋଇପଡ଼ିଲା । ଡାକ୍ତର ଟଙ୍କା ନେଲେ ବି ସେ ସମ୍ପୂର୍ଣ୍ଣ ଦାୟିତ୍ୱବାନ ହେବେ ଏଭଳି ଧାରଣା ତା'ର ଦୃଢ଼ ହେଲାନି । ଭାଗ୍ୟ ଭଲ, ତାକୁ ହଇରାଣ କରିବାକୁ ପୁରଞ୍ଜନ ଆଉ ଆସି ନାହିଁ । ହଠାତ୍ ତା'ର ମନେ ପଡ଼ିଲା ଯେ, ତା' ମଉସାଙ୍କର ସ୍ଥାନୀୟ ଏମ୍.ଏଲ୍.ଏ. ଙ୍କ ସହ ଘନିଷ୍ଠ ସମ୍ପର୍କ । ସେ କିଛିଟା ସ୍ୱସ୍ଥଶ୍ୱାସ ନେଲା ଏବଂ ସିଧା ମଉସାଙ୍କ ପାଖରେ ପହଞ୍ଚି ଏମ୍.ଏଲ୍.ଏ ହସପିଟାଲ ସୁପରିଣ୍ଟେଣ୍ଡେଣ୍ଟଙ୍କୁ ଫୋନରେ କହିବା ପାଇଁ କହିଲା । ମଉସା ଅଭୟ ପ୍ରଦାନ କଲେ ଏବଂ କହିଲେ, ମୁଁ କାଲି ସକାଳୁ ଅପରେସନ୍ ବେଳକୁ ପହଞ୍ଚିବି । ତା' ପୂର୍ବରୁ ଫୋନ୍ ହେଇଥିବ । ସେ ବ୍ୟବସ୍ଥା ମୁଁ କରିବି !

ସକାଳ ହଉ ହଉ ଅଜନ୍ତାର ବେଡ୍ ପାଖରେ ଅଜନ୍ତାର ମା, ବାପା, ଭାଇ, ଅଜନ୍ତାର ସାଙ୍ଗ, ସାଥୀ, ଅନୁପମର ମା, ବାପା, ତା'ର ସାଙ୍ଗସାଥୀ ହାଉଯାଉ । ସମସ୍ତଙ୍କ ଆଖି ମୁହଁ ବିଷଣ୍ଣ ! କିଛି ସମୟ ପରେ ସୁପରିଣ୍ଟେଣ୍ଡେଣ୍ଟ ନିଜେ ଆସି ପହଞ୍ଚିଲେ ଏବଂ ଅନୁପମକୁ କହିଲେ : ଆପଣ ଏମ୍,ଏଲ.ଏ.ଙ୍କ ସମ୍ପର୍କୀୟ ? ଅନୁପମ ହଁ ଭରିଲା । ସୁପରିଣ୍ଟେଣ୍ଡେଣ୍ଟ ତତ୍‌କ୍ଷଣାତ୍ କହିଲେ : ଏବେ ତାଙ୍କ ପାଖରୁ ଫୋନ୍ ଆସିଲା । ମୁଁ ନିଜେ ଅପରେସନ୍ ପାଖରେ ରହିବି । ଆପଣ ବ୍ଲଡ଼୍ ଇତ୍ୟାଦିର ବନ୍ଦୋବସ୍ତ କରନ୍ତୁ । ଏତିକ କହି ସୁପରିଣ୍ଟେଣ୍ଡେଣ୍ଟ ଚାଲିଗଲେ । ଅନୁପମ ସମେତ ସମସ୍ତେ ଆସ୍ୱସ୍ତ ହେଲେ । ଏମ୍.ଏଲ.ଏ. ଫୋନ୍ କରିଛନ୍ତି ଯେତେବେଳେ, ଅପରେସନ୍ ସମୟରେ ଡାକ୍ତର ନିଶ୍ଚୟ ସାବଧାନତା ସହକାରେ ଦାୟିତ୍ୱ ନେବେ । କିନ୍ତୁ ରକ୍ତ ପାଇଁ ଚେତା ପଶିଲା ବେଳକୁ ଅନୁପମର ଛାତି ଦୁକୁଦୁକୁ ହେଲା । ଯେଉଁ ସାଙ୍ଗଟି ଅର୍ଥ ଦେଇ ଅନ୍ୟ କାହାଠାରୁ ରକ୍ତ ମିଳିବ ବୋଲି ଆଶ୍ୱାସନା ଦେଇଥିଲା, ସେ ଏଯାଏ ଆସି ନାହିଁ ଏବଂ କେତେକ ସାଙ୍ଗ ହୁଏତ ରକ୍ତ ଦେବାକୁ ପଡ଼ିପାରେ ବୋଲି ଭୟରେ ଆସିନାହାନ୍ତି ।

ଅନୁପମ ଇତସ୍ତତ ହେଲା : ରକ୍ତ, ରକ୍ତ, ରକ୍ତ !

ତା'ର ସାଙ୍ଗମାନେ ବିବ୍ରତ ହେଲେ : ରକ୍ତ, ରକ୍ତ, ରକ୍ତ !

ତା'ର ବନ୍ଧୁବାନ୍ଧବ, ବାପା ମା, ଶାଶୂ ଶଶୁର ଛାନିଆ ହେଲେ :

ରକ୍ତ, ରକ୍ତ, ରକ୍ତ ! ରକ୍ତ ପାଇଁ କି ବନ୍ଦୋବସ୍ତ କରିଛ ଅନୁପମ !

ଅନୁପମ ଏସବୁ ପ୍ରଶ୍ନବାଣରେ ସିଝିଗଲା ସିନା, କାହାରି ମୁହଁରୁ ଶୁଣିଲାନି : ମୁଁ ରକ୍ତ ଦେବି, ମୁଁ ରକ୍ତ ଦେବି !

ଗୋଟେ ଜନ୍ମ-ବ୍ୟାକୁଳ ଅନାଗତ ଶିଶୁକୁ ମାଟି ଉପରକୁ ଆଣିବା ପାଇଁ କେହି ରକ୍ତଦାନ କରିବାକୁ ଆଗେଇ ଆସୁନାହାନ୍ତି, ଏପରିକି ସେ ନିଜେ ବି ଭୟ କରୁଛି ! କେତେ ପ୍ରତ୍ୟୟହୀନ ପାଲଟିଛି ଏ ମଣିଷ ସତେ !

ଏଣେ ଡାକ୍ତର ଆସି ପଚାରିଲେଣି : କାହାନ୍ତି, ରକ୍ତ କିଏ ଦେବେ ଡାକନ୍ତୁ, ଶୀଘ୍ର ! ନର୍ସ ଦୁଇଥର ପଚାରିଗଲାଣି, ଶୀଘ୍ର ପଠାନ୍ତୁ ରକ୍ତ ପାଇଁ, ଗ୍ରୁପଟେଷ୍ଟ ପାଇଁ ! ସୁପରିଣ୍ଟେଣ୍ଡେଣ୍ଟ କେବଳ ଆପଣଙ୍କ କେଶ୍‌ର ଅପରେସନ୍ ପାଇଁ ଅପେକ୍ଷା କରି ଅଛନ୍ତି ! ୱାର୍ଡ଼ବୟ ବି ଦୁଇ ତିନିଥର ଖବର ଦେଇଗଲାଣି । ଅଗତ୍ୟା ଅନୁପମର ଚିନ୍ତା ଭିତରକୁ ପୁରଞ୍ଜନର ପ୍ରସଙ୍ଗ ଢୁକିଲା । ହୁଏତ ପୁରଞ୍ଜନ ଯୋଗାଡ଼ କରି ଦେଇପାରନ୍ତା । କିନ୍ତୁ ତା'ର ସହଯୋଗ ଲୋଡ଼ିଲେ ହୁଏତ ସେ ଡାକ୍ତରଙ୍କ ସହ କୌଣସି କାରଣରୁ ଅପ୍ରୀତିକର ପରିସ୍ଥିତି ସୃଷ୍ଟି କରିଦେଇପାରେ । କିନ୍ତୁ ଉପାୟ ? ନା, ଯାହା ହେଉ ବରଂ, ସେ ଏ ପରିସ୍ଥିତିରେ ପୁରଞ୍ଜନକୁ ପାଆଁଶ ଟଙ୍କା ଯାଏ ଦେବ ଏବଂ କହିବ ରକ୍ତ ଦେବା ଲାଗି ଜଣେ ଲୋକ ମୋତେ ଠିକ୍ କରିଦେ ! ଯା' ଭାବି ଅନୁପମ ପୁରଞ୍ଜନର ଆଡ୍‌ଡ଼ା ପାନ ଦୋକାନ ଆଡ଼କୁ ଆଗେଇଲା । ସେଠି ପୁରଞ୍ଜନକୁ ଖୋଜିଲା । ପାଇଲାନି । ଯାଡ଼େ ସ୍ୟାଡ଼େ ଅନିଷା କଲା । ଏଣୁ ଧାଇଁ ଧାଇଁ ତା'ର ଶଳା ଯାଇ କହିଲା : ଭାଇ, ଆସନ୍ତୁ । ଅପା ଅପରେସନ୍ ରୁମକୁ ବାହାରିଲାଣି । ରକ୍ତ ଆସିଗଲାଣି । ଅନୁପମ ଚମକି ପଡ଼ି ଆନନ୍ଦ ମହକରେ ବାସିଉଠିଲା । ବନ୍ଧୁ ବାନ୍ଧବଙ୍କ ଭିତରୁ କେହି ଜଣେ ରକ୍ତ ଦେଇଛନ୍ତି ଭାବି ଅନୁପମ ସିଧା ଅପରେସନ୍ ଥିଏଟର ଆଡ଼କୁ ମୁହାଁଇଲା । ଅପରେସନ୍ ଟେବୁଲ ଉପରେ ଶୋଇଛି ଅଜନ୍ତା । ପାଖରେ ଦୁଇଟି ରକ୍ତ ବୋତଲ ଷ୍ଟାଣ୍ଡରେ ଝୁଲୁଛି, ଅଜନ୍ତାର ଓ ଜନ୍ମବ୍ୟାକୁଳ ଭବିଷ୍ୟତର ତ୍ରାଣକର୍ତ୍ତା ! ଯେପରି ପ୍ରତିଟି ସୃଷ୍ଟି, ପ୍ରତିଟି ଭବିଷ୍ୟତ, ପ୍ରତ୍ୟେକ ଜନ୍ମ ପାଇଁ ରକ୍ତ ହିଁ ଜରୁରୀ !

ଅପରେସନ୍ ଥିଏଟରର ବାହାରକୁ ସମସ୍ତେ ଆସିଗଲେ ଏବଂ ଡାକ୍ତରଙ୍କର କିଛି ସମୟର ଅକ୍ଳାନ୍ତ ଶ୍ରମ ପରେ ପରେ କୁଆଁ କୁଆଁ ରାବରେ ନବ ଜାତକଟି ପୃଥିବୀ, ଆକାଶକୁ ନିଜର ଆଗମନୀ ସଙ୍ଗୀତ ଶୁଣାଇ ଭୂପତିତ ହେଲା : ପୁତ୍ର ! ଆନନ୍ଦ ଉଲ୍ଲାସର କଳରବରେ ମୋହିଗଲା ପରିବେଶ ! ସାଲାଇନ୍ ଷ୍ଟାଣ୍ଡ ସହ ଅଜନ୍ତାକୁ ତା'

ବେଡ଼୍ ଉପରକୁ ଅଣାଗଲା । ମା ଓ ପୁଅ ଉଭୟ ନିରାପଦ, ସୁସ୍ଥ ! ସନ୍ଦେହର ଭଉଁରୀକୁ ଭେଦ କରିବା ପାଇଁ ଅନୁପମ ପଚାରିଲା : କିଏ ରକ୍ତ ଦେଲା ଯେ !

ଏ ପ୍ରଶ୍ନରେ ସମସ୍ତେ ଆଶ୍ଚର୍ଯ୍ୟ ହେଲେ : ଆମେ ଜାଣିନୁ ଏବଂ ଅନୁପମ ବି ଜାଣେନି କିଏ ରକ୍ତ ଦେଲା ବୋଲି !

କିଛି ନ ଶୁଣି, ଆଉ କିଛି ନ ଚାହିଁ ଅନୁପମ ନିଜ ଉତ୍ସୁକତାର ପାହାଚ ଡେଇଁ ଡେଇଁ ଧାଇଁଲା ବ୍ଲଡ୍ ବ୍ୟାଙ୍କକୁ । ବ୍ଲଡ୍ ବ୍ୟାଙ୍କର ଡାକ୍ତରଙ୍କୁ ପ୍ରଶ୍ନକଲା : ରକ୍ତ କିଏ ଦେଲା ଆଜ୍ଞା, ନାଁ ଟା ଦୟାକରି କହିବେ !

ଡାକ୍ତର ଜଣକ ରେଜିଷ୍ଟାର ଖୋଲି ଶୁଣାଇଦେଲେ : ପୁରଞ୍ଜନ !

ଅନୁପମ ସେଇଠି ସ୍ତମ୍ଭୀଭୂତ ହୋଇପଡ଼ିଲା । ପୁରଞ୍ଜନ ନାମକ ଏକ ମହାକାବ୍ୟର ଆବେଗମୟ ପଂକ୍ତି ତା' ସାମ୍ନାରେ ଝଲସି ଉଠିଲା । ଏକ କ୍ଷେପାରେ ଅନୁପମ ସେଇଠୁ ଏକପ୍ରକାର ଧାଇଁଲା ଭଳି ପୁରଞ୍ଜନର ସେହି ପାନ ଦୋକାନକୁ ଗଲା । ତାକୁ ସେ କୁଣ୍ଡାଇ ପକାଇବ, କହିବ, ତୋ ପ୍ରତି ମୁଁ ଅବିଚାର କରିଛି, ଆଘାତ ଦେଇଛି, ମୋତେ କ୍ଷମା କର !

ଅନୁପମ ଦେଖିଲା ପାନ ଦୋକାନ ପାଖ ଏକ ଭଙ୍ଗା ଚାଳିଆ ଘର ଭିତରେ ବସିଛି ପୁରଞ୍ଜନ । ସାମ୍ନାରେ ତା'ର ଆଉ କେତେ ବନ୍ଧୁ ! ପୁରଞ୍ଜନ ହାତରେ ଧରିଛି ଗଞ୍ଜେଇ ଚିଲମ । ଶୋଷି ଚାଲିଛି ଧୂଆଁ । ଇମିତି କିନ୍ତୁ କ'ଣ ହେଲା ଯେ, ତା' ଗୋଡ଼ ଦୁଇଟିକୁ ଇମିତି କିଏ ଜାବୋଡ଼ି ଧରିଲା ଯେ ଅନୁପମର ପାଦ ଆଉ ଆଗେଇଲାନି । ସେ ଉପଲବ୍‌ଧି କଲା : ଗୋଟେ ଚିରନ୍ତନ କାବ୍ୟ ଯାହାକୁ ସେ ଦେଖି ପାରୁଛି,- ଅନୁଭବ କରିପାରୁଛି, ଅଥଚ ଛୁଇଁ ପାରୁନି । ଗୋଟେ ସ୍ୱପ୍ନ ସମ୍ରାଟ ତା ସାମ୍ନାରେ ବସି ହୃଦୟକୁ ପରସ୍ତ ପରସ୍ତ ଖୋଲିଚାଲିଛି ।

ଏବଂ ଅଜନ୍ତାର ହୋସ୍ ଆସିଲେ ପୁରଞ୍ଜନ ଭଳି ମୋର ଗୋଟେ ବନ୍ଧୁ ଅଛି, ଯିଏ ସମସ୍ତଙ୍କ ଅଜାଣତରେ ସମସ୍ତଙ୍କୁ ଆଚମ୍ବିତ କରି ତୁମ ପାଇଁ ରକ୍ତ ଦେଇଛି, ତା'ର ସମସ୍ତ କାହାଣୀ ତାକୁ ଶୁଣାଇ ତାଟକାମାଟକା କରିଦବ ! ଏତିକି ମାତ୍ର କହିବ ସତ କିନ୍ତୁ ସେ ନିଜେ କିମ୍ବା ତା'ର ଅନ୍ୟ ସମସ୍ତ ବନ୍ଧୁ କେହି ରକ୍ତ ଟୋପେ ଦେବାକୁ ତିଆର ନ ଥିଲେ ଏକଥା କ'ଣ କହିପାରିବ ?



(ଝଙ୍କାର : ସେପ୍ଟେମ୍ବର ୧୯୮୬)

# ବାଟୋଇ

ପଡ଼ିଆ ମଝିରେ ପାଦଚଲା ରାସ୍ତା । ସରୁ । ଠାଏ ଠାଏ ବେଣାଘାସ ବୁଦା । କେତେ ନା କେତେ ଖାଲ ଢିପ । ମାଟି ତାଡ଼ିନେଇ ଯାଇଥିବାର ଚିହ୍ନ ସବୁ । କିଛି ଅଂଶକୁ ପାଖ ଜମିରେ ମିଶେଇ ନେଇଥିବାର ସୂଚନା । ପଡ଼ିଆ ଧାରକୁ ଲାଗି ସରୁ ନାଳଟିଏ । ଗୋଳିଆ ପାଣି । ନାଳ ଉପରକୁ ଭଙ୍ଗା ଗେଣ୍ଡା କେଉଁଠି କେମିତି ମେଞ୍ଚା ମେଞ୍ଚା । ନାଳରୁ ମାଛ ଧରୁଥିବା, ବନ୍ଧ ପକେଇ ମୁଗୁରା, ଖଇଁଚି ବସୁଥିବା କଥା ହେଜି ହଉଚି । ଏଇ କୁଆଁରପୁନେଇ ପର ପର । ଲୋକଟିଏ ଚାଲିଚି ଏଇ ପାଦଚଲା ରାସ୍ତାରେ । ବଅସ ସତୁରି ହବାକୁ ଅଡ଼ି ବସିଚି । ଢିଲା ଖଇରା ଫୁଲପ୍ୟାଣ୍ଟ ଉପରେ ପୁରୁଣା ଜିନ୍ ସାର୍ଟ ଇନ୍ କରିଚି । ଆଖିରେ ମୋଟା ଚଷମା । ପାଦରେ ହାୱାଇ ଚପଲ । ହାତରେ ବଙ୍କୁଲି ବାଡ଼ି । ବଙ୍କୁଲି ବାଡ଼ିଟି କିନ୍ତୁ ଏ ଯାଏଁ ଆଶାବାଡ଼ିରେ ପରିଣତ ହେଇନାହିଁ । ଖରାଟିକେ ନରମି ଗଲାଣି । ଲୋକଟି ମୁଣ୍ଡ ଉପର ଆକାଶକୁ ଚାହିଁଲା । ଟିକେ ଥକ୍‌କା ଥକ୍‌କା ଅନୁଭବ କଲା । ପାଖରେ ବାବୁଲ ଗଛଟେ । ତାକୁ ଲାଗି ଅରଖ ବୁଦା ତିନି ଚାରିଟା । ବାବୁଲ କଣ୍ଟା ବିଛେଇ ହେଇ ପଡ଼ିଛି । ଘାସ, କଣ୍ଟାବୁଦା ପାଖକୁ ଲଗାଲଗି । ଲୋକଟି ନିରେଖିଲା । ବାବୁଲ ଗଛ ଡାଳରେ ଟିକି ଚଢ଼େଇଟେ ବସିଚି । ଏ ପାଖ ସେପାଖ ଉଡ଼ି ପୁଣି ଆସି ସେଇଠି ବସୁଛି । ଚାରିପାଞ୍ଚଟି ନାନାରଙ୍ଗର ପ୍ରଜାପତି ସେଇଠି ଫୁଟିଥିବା ରଙ୍ଗିଣୀ ଫୁଲ କେତୋଟି ଚାରିପାଖେ ଚକିରି ମାରୁଛନ୍ତି । ଲୋକଟି ସେଠି ଠିଆ ହେଲା । ଟିକି ଚଢ଼େଇକୁ, ପ୍ରଜାପତିମାନଙ୍କୁ ନିବିଷ୍ଟ ଆଖିରେ ଚାହିଁ ରହିଲା । ସେମାନଙ୍କୁ ନିରେଖୁ ନିରେଖୁ ଏଣ୍ଡୁଅଟିଏ ଅରଖ ଗଛ ମୂଳରେ ମୁଣ୍ଡ ଟୁଙ୍ଗାରୁ ଥିବାର ଦେଖିଲା । ଲୋକଟିର ମନ ଭରିଗଲା । ସେ ସେଇଠି ବସି ପଡ଼ିଲା । ଗଛ, କଣ୍ଟାବୁଦା, ରଙ୍ଗିଣୀ ଫୁଲ, ପ୍ରଜାପତି, ଟିକି ଚଢ଼େଇ, ଏଣ୍ଡୁଅ ଏମାନଙ୍କର ଖେଳରେ ବିଭୋର ହୋଇଗଲା । ଟିକି ଚଢ଼େଇଟି ବାବୁଲ ଗଛର ସବା ଉପର ଡାଳକୁ

ଫୁର୍‌କିନା ଉଡ଼ିଗଲାରୁ ବାଟୋଇଟି ସଚେତନ ହେଲା । ଏଥର ସେ ଆଉ ଆଗକୁ ଯିବ ? ଏମିତି ଦୋଦୋ ପାଞ୍ଚ ହଉ ହଉ ସେ ଦେଖିଲା ବିଲ ହିଡ଼ରୁ ପଡ଼ିଆକୁ ଉଠୁଚି ଲୋକଟିଏ । ପଚାଶ ବର୍ଷ ପାଖାପାଖି ହେବ, ଅନୁମାନ । ଆଠ ନଅ ହାତିଆ ଧୋତି ଉପରେ ହାୱାଇନ୍ ସାର୍ଟ ପିନ୍ଧିଛି । ମୁହଁରେ ଦାଢ଼ି ଅସଂଯତ । ଲୋକଟି ନିତାନ୍ତ ଗାଉଁଲି । ଅଣ୍ଟାରେ ତା'ର ନାସ କରାଟ । ପାଖକୁ ଆସିଗଲାରୁ ବାଟୋଇ ତାକୁ ପ୍ରଶ୍ନ କଲା- ତମେ କେଉଁଠୁ ଆସିଲ ?

" ହେଇ ଯୋଉ ହୁଡ଼ି ଦେଖା ଯାଉଚି । ଟାଙ୍ଗରା ହେଇ ଆସିଲାଣି, ତା' ସେକାନି ଯୋଉ ଗାଁ ଡେଙ୍ଗାପଦର, ସେଇଠୁ । କ'ଣ ହେଲା କି ?" ପଚାରିଲା ଲୋକଟି ।

ବାଟୋଇ କହିଲା-" ସେମିତି କିଛି ନାହିଁ ଯେ, ପାହାଡ଼ ସେପଟେ ବଡ଼ ଗାଁଟେ ଅଛି, ଯେଉଁ ଗାଁକୁ ପାଦଚଲା ରାସ୍ତାଟେ ନାହିଁ, ଏ ଯୁଗରେ । ମୁଁ ଭାବି ପାରୁନି ।"

" ରାସ୍ତା ନାହିଁ ତ ମୁଁ ଆଇଲି କିମିତି ?" ଗୁରୁତ୍ୱ ଦେଲା ଭଳି ଢଙ୍ଗରେ କହିଲା ଲୋକଟି । ବାଟୋଇ ଟିକେ ଦାର୍ଶନିକ ହେଇ ଉଠିଲା । ସତରେ ତ । ରାସ୍ତା କୋଉଠି କି ନାହିଁ ? ରାସ୍ତା ସବୁଠି, ସବୁ ଆଡ଼କୁ ଅଛି, ଆମ ପାଦ ସେ ରାସ୍ତାରେ ଚାଲିବାକୁ ସକ୍ଷମ କି ନୁହେଁ, ସେ ଅଲଗା କଥା ।" ବାଟୋଇ ଜଣକ ଚିନ୍ତା କରୁ କରୁ ଲୋକଟି ବ୍ୟସ୍ତ ହେଇ ଚାଲିଯିବାକୁ ଉଦ୍ୟତ ହେଲାରୁ ବାଟୋଇ କହିଲା-" ବ୍ୟସ୍ତ ହଉଚ କାହିଁକି ? କେଉଁଠିକୁ ଯିବ ?"

" ମୁଁ ବସନ୍ତିଆ ଯିବି । ସେଠୁ ଭଦ୍ରକ । ଭଦ୍ରକରୁ ଭୁବନେଶ୍ୱର । ସେଇଠୁ ଦିଲ୍ଲୀ ଯିବି ବାବୁ !

ଆମ ଗାଁ ପାଖିଆ ନାରଣ ଦଲାଲ ସାଜି ଏ ଅଞ୍ଚଳରୁ ପ୍ରାୟ ଷାଠିଏ ଜଣ ଲୋକଙ୍କୁ ଖଣି କାମ ପାଇଁ ଦିଲ୍ଲୀର ଜଣେ କଣ୍ଟ୍ରାକ୍ଟର ପାଖକୁ ନେଇ ଯାଇଚି । ତିନି ମାସ ହେଇଗଲାଣି । ସେଥିରେ ମୋ ପୁଅ ସଉରା ବି ଯାଇଚି । ତିନିଶ ଟଙ୍କା ଲେଖାଏଁ ଜଣକା ଆଗୁଆ ଦେଇଛି ଯାହା । ବାସ୍, ସେତିକି । ତାପରେ ଚିଠି ନାହିଁ, ଟଙ୍କା ନାହିଁ ଲୋକଙ୍କର ପତ୍ତା ବି ମିଳୁ ନାହିଁ । କେହି କେହି କହୁଛନ୍ତି, ଖଣି ଭୁଶୁଡ଼ି ପଡ଼ିଲା ସେମାନଙ୍କ ଉପରେ..... ।" ଏତକ କହୁ କହୁ କାନ୍ଦ କାନ୍ଦ ହେଇ ଉଠିଲା ଲୋକଟି । " ମୋର ଗୋଟେ ବୋଲି ପୁଅ ବାବୁ । କିନ୍ତୁ କ'ଣ ହବ ? ଦି' ଭଉଣୀ ତଳକୁ ତଳ । ମୋର ମୁଣ୍ଡ ବେମାରି । ଟିକେ କଡ଼ା କାମ କଲେ ନେଉଟି ପଡୁଚି । ଏଠି ସେମିତି କିଛି କାମ ପାଇଲାନି । ପଳେଇଲା, କୁଲିଗିରି କରିବ । ଆଉ କ'ଣ କରନ୍ତା ? ପେଟ ପୋଷ, ନାଇଁ ଦୋଷ । ଭାତ ଗଣ୍ଡାକ ପାଇଁ ଲୋକ କାହିଁ କାହିଁ ଘୁରୁଚି । ହିଡ଼, ପାହାଡ଼, ବିଲ, ବଣ ଡେଇଁ ଧାଉଁଚି । ତମେ କିଏ ବାବୁ, ଏ ବେଳରେ ଏ ଏକାଟିଆ ବିଲ ବାଟରେ ଚାଲିଚ, କୁଆଡ଼େ ଯିବ ? " ପ୍ରଶ୍ନ କଲା ସେ ଲୋକଟି ।

ବାଟୋଇଟି ଲୋକଟିର ଅସହାୟ କାହାଣୀ ଶୁଣି ଦ୍ରବୀଭୂତ ହେଇଗଲା । କହିଲା- ଦେଖ ! ବର୍ତ୍ତମାନ ତମର ସମସ୍ୟାଟି ଭାରି ଦୁଃଖପୂର୍ଣ୍ଣ, ଏ ସମୟରେ ମୋ କଥା ଜାଣି ସମୟ ନଷ୍ଟକର ନାହିଁ । ମୁଁ ଜଣେ ବାଟୋଇ । ବାଟୋଇର କଥାକୁ ଆଉ କାନ ନ ଦେଇ ଆଗକୁ ସପଟିଲା ଲୋକଟି । ବାଟୋଇଟି ତାକୁ ଚାହୁଁ ଚାହୁଁ କ'ଣ ଭାବିଲା କେଜାଣି, ଡାକିଲା-ରୁହ, ରୁହ । ଏବଂ ଜୋର୍‌ରେ ଆଗେଇ ଯାଇ ପଚାରିଲା-

: ତୁମ ନାଁ କ'ଣ ?

: ଅନାଥ ମାରିଣ୍ଡି ।

: ତୁମ ପୁଅର ବୟସ ?

: ବାଇଶି ।

: ରଙ୍ଗ ?

: କାଳିଆ ।

: ଡେଙ୍ଗା ନା ବାଙ୍ଗରା ?

: ବାଙ୍ଗରା ।

: ତା'ଦେହରେ କେଉଁଠି କଳାଜାଇ କି ତିଳ ଚିହ୍ନ ଅଛି କି ?

: ହଁ, ଡାହାଣ ଗାଲରେ କଳାଜାଇ ଅଛି ।

: ତା' ଫଟୋ ତୁମ ପାଖରେ ଅଛି ?

: ନା ।

: ହଉ, ତମେ ଯାଅ । ବାଟୋଇ କହିଲାରୁ ଅନାଥ ଆଗକୁ ଯାଉଥାଏ ଏବଂ ପଛକୁ ଫେରି ବାଟୋଇକୁ ଅନାଉଥାଏ । ଏମିତି ଆଗକୁ ଅନା, ପଛକୁ ଚାହାଁ ହେଉ ହେଉ ଅନାଥ ଆଗେଇ ଗଲା । ତା'ର ଯିବା ରାସ୍ତାକୁ ନିରେଖି ଚାହିଁଥିଲା ବାଟୋଇ । ପଶ୍ଚିମାସୂର୍ଯ୍ୟ ଲାଲ୍ ପିଣ୍ଡୁଳା ହେଇ ଆସୁଛନ୍ତି । ସେ ମୁଗ୍ଧ ହେଲା । ଆହା ! ଏଇ ମୁହୂର୍ତ୍ତର, ଏଇ ଅପରୂପ ସୌନ୍ଦର୍ଯ୍ୟକୁ ଗଢ଼ିବାକୁ ପ୍ରକୃତିକୁ, ଏ ବିଶ୍ୱକୁ କେତେ କୋଟି ବର୍ଷର ପ୍ରୟୋଜନ ହେଇଚି, ସେ କଥା କି ମଣିଷ ବୁଝେ ?

ବାଟୋଇଟି ପୁଣି ସେଇ ଅରଖ, ବାବୁଲଗଛ, ଟିକି ଚଢ଼େଇ, ପ୍ରଜାପତିଙ୍କୁ ସେଇଠୁ ନିରେଖିଲା । ଟିକି ଚଢ଼େଇ, ପ୍ରଜାପତି ଆଉ ଦିଶୁ ନାହାନ୍ତି । ସବୁ କିଛି ଦେଖାଯାଉଚି ପାଉଁଶିଆ । ବାଟୋଇ ମନରେ କି ଭାବ ଆସିଲା କେଜାଣି ସେ ସେଇଠି ବସି ପଡ଼ିଲା ଏବଂ ନିଜକୁ ପ୍ରଶ୍ନ କଲା : ତୁ ଏଠାକୁ କାହିଁକି ଆସିଛୁ ଭୈରବୀ ନନ୍ଦନ, ପୂର୍ବତନ ମନ୍ତ୍ରୀ ? କ'ଣ ପାଇଁ ଆସିଚୁ ମନେ ଅଛି ? ଆମେରିକା, ଫ୍ରାନ୍‌ସ, ୟୁରୋପ, ଆଫ୍ରିକା, ଋଷିଆ ସବୁ ବୁଲିଛୁ । କୋଠାବାଡ଼ି, ମନ୍ତ୍ରୀପଦ, କାର୍, ଫୁଲମାଳ, ସମ୍ବାଦପତ୍ରର ପ୍ରଥମ ପୃଷ୍ଠାରେ ଫଟୋ, ଟେଲିଭିଜନ କଭରେଜ, ହାଁଜୀ, ହାଁଜୀ, ନାରୀ,

ସ୍କଚ୍, ଫ୍ଲାଇଟ୍, ସବୁ ପର୍ବରେ ତୁ ! ସବୁ ଅଧ୍ୟାୟରେ ତୋର ଦସ୍ତଖତ । କିନ୍ତୁ ଧୀରେ ଧୀରେ ତୋର ଅନୁଭବ ହେଲା ଯେ ପୃଥିବୀଟା ମଣିଷ ପାଇଁ ଖୁବ୍ ଛୋଟ ହେଇ ପଡ଼ିଛି, ନୁହେଁ ? ପୃଥିବୀରେ ଥିବା ବସ୍ତୁ ପ୍ରତି ମଣିଷର ଆକର୍ଷଣ କମି ଗଲାଣି । ଗଛତଳେ ରହିବା ଯାହା, କୋଠାବାଡ଼ି ତଳେ ରହିବା ସେଇଆ । ସେଇ ମାଟି, ସେଇ ଜୀବନ; ଏକା । ବୟସ ଯାହା ଗଡ଼ି ଗଡ଼ି ଯାଇ ଶେଷରେ ଶୂନ୍‌ରେ ପହଞ୍ଚିବ । ମଣିଷର ଅନୁଭବର ଅଗ୍ରଗତି ପାଇଁ ପୃଥିବୀ ଯଥେଷ୍ଟ ନୁହେଁ, ଦରକାର ଆହୁରି କିଛି । ଏବେ ତ ଯାହା ଚିଟା ଲାଗିଲାଣି ! ଆଗକୁ ଏ ପୃଥିବୀ ମଣିଷ ପାଇଁ ଏକ ଅପାଂକ୍ତେୟ ଉଆସ ଭଳି ଲାଗିବ । ପୃଥିବୀରେ ଯେଉଁ ମୌଳିକ ବସ୍ତୁ ଅଛି ତା ବିନା ଆଉ କିଛି ମୌଳିକ ବସ୍ତୁ ସହ କାରବାର କରିବା ତା'ର ଜରୁରୀ ହେଇ ପଡ଼ିଲାଣି । ଆବଶ୍ୟକ ହେଲାଣି ଆଉ କିଛି ନୂଆ ଆଡ୍‌ଭେଞ୍ଚର । ଗ୍ରହାନ୍ତରକୁ ଯାତ୍ରା । ଚନ୍ଦ୍ର ବା ମଙ୍ଗଳ ଗ୍ରହରେ ବସତି ସ୍ଥାପନ । ସତରେ ଜୀବନର ମୋଡ଼ ବଦଳି ଯାଆନ୍ତା, ଏମିତି ଏକ ଆଶାବାଦୀ ମନ ନେଇ ଦିନେ ରାଜରାସ୍ତାରେ ଟହଲୁ ଟହଲୁ ତୋ ନଜରରେ ପଡ଼ିଲା ଜଣେ ବୃଦ୍ଧ ଭିକ୍ଷୁ । ତା'ର ଚାଲି, ଆଖି ଓ ମୁହଁରେ ଏକ ପ୍ରକାର ସ୍ୱାତନ୍ତ୍ର୍ୟ ଫୁଟି ଉଠୁଥିଲା । ତୁ ତାକୁ ଡାକିଲୁ । ସେ ଆସିଲାରୁ ତାକୁ ତୋର ଏ ପୃଥିବୀ ପ୍ରତି ଜମି ଆସିଥିବା ଅନାକର୍ଷଣ, ବିରକ୍ତି ଭାବକୁ ବଖାଣିଲୁ । ସେ ତୋତେ କହିଲା-ତୁମେ ଏ ପୃଥିବୀରେ ବଞ୍ଚୁଛ ସତ, କିନ୍ତୁ ସବୁ ଜୀବନ ଜିଇଁ ନାହଁ । ପୃଥିବୀ ବାହାରକୁ ଯିବା ପୂର୍ବରୁ ତମେ ଏଇଠି ଆଉ ଏକ ଜୀବନ ଯାପନ କର । ଯେଉଁ ଜୀବନ ତମେ ଜିଇଁଛ ସେ ଜୀବନକୁ ସେଇଠି ଥୋଇ ଦେଇ ଆଉ ଏକ ଜୀବନର ତମେ ବାଟୋଇ ହେଇଯାଅ । ଦେଖ, ଜୀବନର ସ୍ୱାଦ ନୂଆ ଭାବରେ କଣ୍ଟି ଆସୁଛି କି ନା ?

ଭିକାରୀର ଏ ପରାମର୍ଶ ତୋତେ ଛୁଇଁଲା । ଦ୍ୱନ୍ଦ୍ୱାୟିତ ଆଖିକୁ ଫର୍ଚ୍ଚା କଲା ଏବଂ ତୋ ମୁହଁ ଉଲୁସି ଉଠିଲା । ତୁ ଭୂତପୂର୍ବ ମନ୍ତ୍ରୀ ଭୈରବୀନନ୍ଦନର ନାଁ, ଠିକଣା, ପୋଷାକକୁ କାଢ଼ି ଫିଙ୍ଗି ଦେଲୁ ଏବଂ ବନିଗଲୁ କେବଳ ବାଟୋଇଟିଏ । ଗୋଟେ ରାସ୍ତାରୁ ଆଉ ଗୋଟେ ରାସ୍ତାକୁ ବୁଲିଗଲୁ ଗୋଟେ ଛକି ସୃଷ୍ଟି କରି !

ବାଟୋଇଟି ନିଜ ଅତୀତରୁ ଫେରି ଆସିଲା । ସଂଜ ଆସର । ଚକ୍ରବାଳ ହେମାଳ ହେଇ ଆସୁଛି । ଅନାଥ ମାରିଣ୍ଡି ଆଉ ଦିଶୁନି । ବାଟୋଇ ମନେ ମନେ ଚିନ୍ତା କଲା- ଏ ସଂଜୁଆ ବିଲମାଟି ରାସ୍ତାରେ କୁଆଡ଼େ ଯିବ ? ଥକ୍‌କା ମେଣ୍ଟେଇବା ସହଜ, ବାଟୋଇ ହବା ସହଜ ନୁହେଁ । ସେ ପୁଣି ଚିନ୍ତା କଲା- ଅନାଥ ମାରିଣ୍ଡିକୁ ସାହାଯ୍ୟ କରିବା, ତା ପୁଅକୁ ଉଦ୍ଧାର କରିବାର ପଥରେ ସେ ହେବ ପଥୁକି । ଲୁହ, ଦୁଃଖ ପୋଛିବା ରାସ୍ତାରେ ସେ ହେବ ବାଟୋଇ । ଏ କ୍ଷେତ୍ରରେ ସେ ଯଦି ପୁଣି ଭୂତପୂର୍ବ ଭୈରବୀନନ୍ଦନର ରୂପକୁ ଧାରଣ କରିନିଏ, ତା' ହେଲେ ସଉରା ମାରିଣ୍ଡିକୁ ସେ ଉଦ୍ଧାର କରିପାରିବ

ସହଜରେ । ପୁଣି ଦ୍ୱନ୍ଦର ଖିଅରେ ଝୁଲିଲା ସେ । ପ୍ରତିଜ୍ଞା କରିଥିଲା ଭୈରବୀନନ୍ଦନ୍‌ରୁ ସେ ବାଟୋଇ ହିଁ ହେଇଯିବ । ଭୁଲିଯିବ ଭୈରବୀନନ୍ଦନର ଅସ୍ତିତ୍ୱକୁ । କିନ୍ତୁ ବାଟୋଇର ଜୀବନ ତା'ର ଗତିପଥରେ ପୁଣି ଯଦି ଭୈରବୀନନ୍ଦନକୁ ଲୋଡୁଛି, ତାକୁ ସାଉଟି ଆଣିବାକୁ ବ୍ୟଗ୍ର ହେଇ ରହୁଛି ସେଥିରେ ବାଟୋଇର ପରାଜୟ କାହିଁ, ବରଂ ତା'ର ମହତ୍ୱ ବଢୁଚି । ଭିକାରୀର ପରାମର୍ଶର ଜୟ ହେଇଚି । ଭୈରବୀନନ୍ଦନର ଗର୍ଭରୁ ଅନ୍ୟ ଏକ ଭୈରବୀନନ୍ଦନର ଜନ୍ମ ହେଉଚି । ହେଉ ।

ଯେ ପୁଣି ଏକ ଛଳନା ନୁହଁ ତ, ପ୍ରତାରଣା ନୁହଁ ତ ? କାହିଁକି ହବ ? ସେ ତ ନିଜ ପାଇଁ ନୁହଁ, ଜଣେ ସନ୍ତାପିତ ପିତାର ଦୁଃଖକୁ ଲାଘବ କରିବା ପାଇଁ ପୁନର୍ଜନ୍ମ ନେଉଛି । ନେଉ ! ମନ ଭିତରୁ କେହି ଜଣେ ପ୍ରଶ୍ନ କରୁଛି ବାଟୋଇ ଭିତରୁ ଭୈରବୀନନ୍ଦନର ଅହଂକାର ଜନ୍ମ ନେଇପାରେ । ହଁ, ଅସମ୍ଭବ କ'ଣ ? ବାଟୋଇ ଜଣକ ସ୍ଥିର କଲା ମୁଁ ଯଦି ଜଣେ ପିତାର ବିଚଳିତ ହୃଦୟକୁ ଅନୁଭବ କରୁଛି ମୁଁ ସେଇ ପିତା ହିଁ ହେଇଗଲେ ?

x x x x x x x x x

: ଆଜ୍ଞା ! ମୁଁ ଅନାଥ ମାରିଣ୍ଡି । ଘର : ଡେଙ୍ଗାପଦର । ଜିଲ୍ଲା : କେଉଁଝର । ମୋ ପୁଅ ସଉରା ମାରିଣ୍ଡି ସହ ଆଉ କେତେ ଜଣଙ୍କୁ ଶ୍ରମିକ ଦଲାଲ ନାରଣ ନାଇକ ଦିଲ୍ଲୀ ନେଇ ଯାଇଚି ଖଣି କାମ ପାଇଁ । ଦି ମାସ ହେଲାଣି ଚିଠିପତ୍ର ନାଇଁ କି ପିଲାର ଦେଖା ନାଇଁ । ଟଙ୍କା ବି ପଠାଉ ନାହିଁ । କେତେ ଖୋଜିଲିଣି, ନାରଣର ପତ୍ତା ବି ପାଉ ନାହିଁ । ଆପଣଙ୍କ ପାଖରେ କିଛି ଖବର ଅଛି ?

ଏ ପ୍ରଶ୍ନରେ ଶ୍ରମ ଅଧିକାରୀ ଚମକିଲେ ନାହିଁ, ଚମକିଲେ ଅନାଥ ମାରିଣ୍ଡି ଭଳି ଜଣେ ଗାଉଁଲିର ମୁହଁରୁ ଏଭଳି ସାଦାସିଧା ପ୍ରଶ୍ନ ଶୁଣି । ବାରମ୍ବାର ଗହୀରେଇ ସେ ଅନାଥ ମାରିଣ୍ଡିକୁ ନିରେଖିଲେ । ବିଶ୍ୱାସ ହଉ ନ ଥାଏ ଏ ଅନାଥ ମାରିଣ୍ଡି ବୋଲି । ଦାନା କଷ୍ଟରେ ଭିଟା ଛାଡ଼ି କାହିଁ ଦୂରରେ କୁଲି କାମ କରୁଥିବା ଓ ଅବିକା ପତ୍ତାହୀନ ହେଇଥିବା ଯୁବକର ବାପ ମୁହଁରେ ଏଭଳି ତେଜ ! ସଂଶୟ ଆସୁଛି ମନରେ ।

''ଦେଖ, ଓଡ଼ିଶାରୁ ଖଣିକାମ କରିବାକୁ ଯାଇଥିବା କିଛି ଶ୍ରମିକ ଖଣି ଭିତରେ ମାଟି ଅତଡ଼ା ଖସିବାରୁ ମୃତ୍ୟୁମୁଖରେ ପଡ଼ିଛନ୍ତି ବୋଲି ଆମ ପାଖକୁ ଖବର ଆସିଛି । ସତ୍ୟାସତ୍ୟ ଜାଣିବା ପାଇଁ କେତେ ଜଣ ଅଫିସର ଯାଇଛନ୍ତି ।'' ଦମ୍ଭିଲା କଣ୍ଠରେ ଉତ୍ତର କଲେ ଶ୍ରମ ବିଭାଗର ଅଧିକାରୀ ।

: କେଉଁ ସୂତ୍ରରୁ ଆପଣ ଏ ଖବର ପାଇଲେ ଏବଂ କେଉଁ ପତ୍ରରେ ସରକାର ଅଫିସରମାନଙ୍କୁ ପଠେଇଛନ୍ତି ଦୟାକରି ଜଣାଇବେ କି ? ପ୍ରଶ୍ନ କଲା ଅନାଥ ମାରିଣ୍ଡି ।

ଶ୍ରମ ଅଧିକାରୀ ଏଥର ଚମକିଲା ଭଳିଆ ଚମକିଲେ । ଅନାଥ ମାରିଣ୍ଡି ମୁହଁରେ ଏ ପ୍ରଶ୍ନ ? ବଡ଼ ଅଡୁଆ ଶୁଭୁଛି । ଏଭଳି ପ୍ରଶ୍ନ ଯଦି ଦାଦନ ଶ୍ରମିକର ବାପ ମୁହଁରୁ ବାହାରେ ତା' ହେଲେ ତ ପୃଥିବୀର ରଙ୍ଗ ବଦଳି ଯିବ । ପ୍ରକୃତରେ ଏ କିଏ ? ଇଣ୍ଟେଲିଜେନ୍ସ ବିଭାଗର କୌଣସି ଅଫିସର ନୁହଁନ୍ତି ତ ? ଦକା, ଛନକା ପଶୁଛି ଛାତିରେ । ତଥାପି ଦୃଢ଼ତା ଓ ଦମ୍ଭର ପ୍ରଦର୍ଶନୀ କରି ଅଧିକାରୀ ଚଢ଼ାଗଳାରେ ଜବାବ କଲେ- ଦେଖନ୍ତୁ, ସେ ସବୁ ସିକ୍ରେଟ୍, ମାନେ ଡିପାର୍ଟମେଣ୍ଟର ଗୋପନୀୟ ବସ୍ତୁ । ସେ ସବୁକୁ ତୁମକୁ ଦେଖାଇବା, ସେ ବିଷୟରେ ଅଧିକ କିଛି କହିବା ସରକାରୀ ନିୟମର ବାହାରେ ! ଆମ ପାଖରେ ତୁମ ପୁଅ ସଂପର୍କରେ ପ୍ରକୃତ ଖବର ପହଞ୍ଚିଲେ ଆମେ ତୁମକୁ ଜଣାଇଦେବୁ । ଏଥର ତୁମେ ଆସିପାର !''

ଏଥର ଉତ୍ତେଜିତ ହେଇପଡ଼ିଲା ଅନାଥ ମାରିଣ୍ଡି । ସେ ଅଧିକାରୀଙ୍କୁ ଦାଣ୍ଡିଲା- ''ବେପତ୍ତା ହେଇଥିବା ପୁଅର ବାପ ହୁହାନାଳ ହେଉଥିଲା ବେଳେ ତୁମ ସରକାରୀ ଚିଠିର ମୂଲ୍ୟ ଏତେ ବେଶି ? ତୁମ ଚିଠି ବଡ଼ ନା ମୋ ପୁଅ ବଡ଼ ? ସତ କୁହ ! ପ୍ରକୃତରେ ସେମାନେ ମରିଛନ୍ତି ନା ମାଟି ଅତଡ଼ାରେ ମରିଛନ୍ତି ବୋଲି ମିଛ ରିପୋର୍ଟ ହେଇଚି ? ଆଜିକାଲି କେତେ ଜାଗାରେ ତ ଶ୍ରମିକ ମରିଗଲେ ବୋଲି ଘୋଷଣା କରାଯାଇ ସେମାନଙ୍କୁ ଆଜୀବନ ବନ୍ଦୀ ହିସାବରେ ରଖାଯାଇ ଦିନରାତି ହାଡ଼ଭଙ୍ଗା ପରିଶ୍ରମ କରିବାକୁ ବାଧ୍ୟ କରାଯାଉଛି । ଦିଅ, ସତ ଖବର ଦିଅ । ମୋତେ ଏଇଲାଗେ ମୋ ପୁଅର ପ୍ରକୃତ ସଂଧାନ ଦିଅ ।'' ଚିଲେଇଲା ଅନାଥ ମାରିଣ୍ଡି ।

ଶ୍ରମ ଅଧିକାରୀ ଏଥର ଉତ୍ତେଜିତ ହୋଇପଡ଼ି କହିଲେ- ତୁମ ପୁଅ ତା ଇଚ୍ଛାରେ ଯାଇଛି । ଯିବା ପୂର୍ବରୁ ସେ କଥା ତମେ ଆମକୁ ଜଣାଇଲ ନାହିଁ । ଏବେ ଆମକୁ ସନ୍ଧାନ ନେବାକୁ ସମୟ ଦରକାର । ସନ୍ଧାନ ମିଳିଲେ ତୁରନ୍ତ ଖବର ଦିଆଯିବ । ଯାଅ ଏବେ !

''ପୁଅକୁ ନ ନେଇ ଭୈରବୀନନ୍ଦନ ଫେରିବ ନାହିଁ, ସେ ଶପଥ ନେଇଛି । ମୁଖ୍ୟମନ୍ତ୍ରୀଙ୍କୁ ସାକ୍ଷାତ କରିସାରିଲା ପରେ ଯୋଉ କଥା !'' ଏକ ଆବେଗପୂର୍ଣ୍ଣ ସ୍ୱରରେ କହିଗଲା ଅନାଥ ମାରିଣ୍ଡି । ସେଇ ବାଟୋଇ । ନିଜେ ଭୈରବୀନନ୍ଦନ ! ଅବଚେତନରୁ ହଠାତ୍ ନିଜର ପୂର୍ବ ପରିଚୟ ମହକି ଆସିଲା ।

ଭୈରବୀନନ୍ଦନ ନାଁଟି ଶୁଣି ଚମକି ଉଠିଲେ ଅଧିକାରୀ । ପୂର୍ବତନ ମନ୍ତ୍ରୀ ଭୈରବୀନନ୍ଦନ, ଆଜି ଅନାଥ ମାରିଣ୍ଡି ବେଶରେ ! ପାଦ ଥାପିଲେ ପୃଥ୍ୱୀ କମ୍ପୁଥିଲା ସେତେବେଳେ । ପ୍ରତିଦ୍ୱନ୍ଦ୍ୱୀମାନଙ୍କୁ ନିପାତ କରିବାରେ ଧୂରନ୍ଧର, ପ୍ରତାପୀ ଅହଂକାରୀ ଭୈରବୀନନ୍ଦନର ଆଜି ଏ କି ଅବତାର ? ପୁଣି ଅନାଥ ମାରିଣ୍ଡି ଭଳି ଜଣେ ଅପାଂକ୍ତେୟର ପୁଅ ଖବର ଖୋଜିବାରେ ନିଜେ ହିଁ ନିୟୋଜିତ ? କାହା ଦ୍ୱାରା ଖବରଟେ

କି ଟେଲିଫୋନ୍‌ଟେ କରିଥିଲେ ତ ଶ୍ରମ ବିଭାଗ ହାଜର ହେଇଥାନ୍ତା, ଯେ କି ନୂଆ ଅବତାର ? ରାଜନୀତିର ଯେ କି ରହସ୍ୟ ଘନ ଅନ୍ୟ ଦିଗନ୍ତ ? ଅଡୁଆ ତଡୁଆ ଚିନ୍ତାରେ ଘାରି ହେଉ ହେଉ ଶ୍ରମ ଅଧିକାରୀ ମୟୂରବାହାନ ଯା ଭିତରେ ଛିଡ଼ା ହେଇପଡ଼ି "ସାର୍ ନମସ୍କାର !. ଦୟାକରି ବସନ୍ତୁ..." କହି ସାରିଥିଲେ ।

ସାମାନ୍ୟ ହସିଲା ବାଟୋଇ । "ହଁ, ଭୈରବୀନନ୍ଦନର ଜନ୍ମାନ୍ତର ଘଟିଛି । ସେ ଏବେ ଅନାଥ ମାରିଣ୍ଡି । ତା'ର ପୁଅ ନିଖୋଜ । ବାସ୍ ସେତିକି ।" ଅଫିସରୁ ଅତି ଦ୍ରୁତ ପାଦରେ ବାହାରକୁ ଚାଲି ଆସିଲେ ସେ ।

ପଦାକୁ ଆସି ବାଟୋଇ ରାସ୍ତାକଡ଼ ଏକ ଗଛମୂଳେ ଛିଡ଼ା ହେଲା । ବାଦାମବାଲାଠୁ ବାଦାମ କିଣିଲା । ଚୋପା ଛଡ଼େଇ ପାଟିରେ ପକେଇଲା । ଆତ୍ମସମୀକ୍ଷା କଲା । ସତରେ ବାଟୋଇରୁ ଅନାଥ ମାରିଣ୍ଡି, ଅନାଥ ମାରିଣ୍ଡିରୁ ଯେଉଁ ଭୈରବୀନନ୍ଦନ ବାହାରି ଆସିଲା ସେତ ସେଇ ପୁରାତନ ଭୈରବୀନନ୍ଦନ ନୁହେଁ । ଆଉ ଜଣେ । ଯିଏ ଏଭଳି ଏକ ପରିବର୍ତ୍ତିତ ରୂପ ଧାରଣ କରି ଆତ୍ମପ୍ରକାଶ କରିଛି । ବାଟୋଇ ଏକ ପ୍ରଶାନ୍ତି, ଏକ ବିଶ୍ୱାସ, ଏକ ଉଲ୍ଲାସର ହସ ହସିଲା । ତା'ର ଉପଲବ୍‌ଧିକୁ, ପବନକୁ ଆକାଶକୁ ଫିଙ୍ଗି ଦେଲା : ଜୀବନ ଦୃଷ୍ଟିରୁ ମଣିଷର ଆୟୁ ନାହିଁ କି ବୟସ ନାହିଁ । ଅନୁଭବରୁ ଆଉ ଏକ ଅନୁଭବ, ଉପଲବ୍‌ଧିରୁ ଆଉ ଏକ ଉପଲବ୍‌ଧିକୁ ଡେଇଁ ଗଲା ବେଳେ ବୟସର ମାପକାଠି ସେଠି ମୂଲ୍ୟହୀନ । ଗୋଟେ ଲୁଗାରୁ ଆଉ ଏକ ଲୁଗାକୁ ବଦଳିଲା ପରି ଗୋଟେ ଜୀବନ ଧାରାରୁ ଆଉ ଏକ ଜୀବନଧାରାକୁ ଗତି କରି ହବ । ମଣିଷ ଜୀବନ ଚିରକାଳ ଗୋଟେ ଆରମ୍ଭ ! ଜୀବଦ୍ଦଶାରେ ଜଣେ ମଣିଷ ବହୁ ଜୀବନଯାପନ କରିପାରେ । କିନ୍ତୁ ମୁଁ କାହିଁକି ଖୋଜୁଥିଲି ଏ ପୃଥିବୀ ଭିନ୍ନ ଅନ୍ୟ ଏକ ଗ୍ରହରେ ପାଦ ଥାପିବାକୁ । କାହିଁକି ଏ ପୃଥିବୀ ଏବେ ମଣିଷ ପାଇଁ ଏକ ଆକର୍ଷଣବିହୀନ ଜଗତ ବୋଲି ମୋର ଅନୁଭବ ହେଇଥିଲା ? ଏଠି ତ ସ୍ୱାଦର ଅନ୍ତ ନାହିଁ ।

x x x x x x x x x

ଦିନ ରତ ରତ । ଡେଙ୍ଗାପଦରକୁ ଯିବା ବିଲ ରାସ୍ତା । ହୁଡ଼ି ଦେଖା ଯାଉଚି ଆଗରେ । ଅରଖ, ବାବୁଲ ଗଛରେ ଏପାଖ ସେପାଖ ହେଇ ଉଡୁଛନ୍ତି ପ୍ରଜାପତି । ଟିକି ଚଢ଼େଇ କାଇଁ ଦେଖାଯାଉନି । ଡେଙ୍ଗାପଦର ଆଡୁ ସପଟିଛି ଅନାଥ ମାରିଣ୍ଡି । ହାତରେ ବାଡ଼ିଟେ ଧରି । ଧପ୍ କରି ଛିଡ଼ା ହେଇ ପଡ଼ିଲା ସେ । ହାତରୁ ବାଡ଼ିଟା ଖସି ପଡ଼ିଲା । ଆଖି ବିସ୍ଫାରିତ ହେଇଗଲା ତା'ର । ମୁହୂର୍ତ୍ତକ ପରେ ଓଠ ତା'ର ଥରି ଉଠିଲା । ଆଖି ଜକେଇ ଆସିଲା । ସାମ୍ନାରେ ପୁଅ ସଉରା ! ତା' ପାଖେ ପାଖେ ସେଇ ବାଟୋଇଟି ! ଧାଇଁଗଲା ସଉରା ବାପ ପାଖକୁ । ବାପ ପୁଅ କୁଣ୍ଢାକୁଣ୍ଢି ହେଇ ଭୋ-ଭୋ କାନ୍ଦି ଉଠିଲେ । ବାଟୋଇଟି ବାପ-ପୁଅଙ୍କର ଏ ମିଳନରେ ଆତ୍ମହରା ହେଇ

ପଡ଼ିଲା । ତା' ଆଖି ବି ଢଳେଇ ଆସିଲା । ସେ ଅନୁଭବ କଲା ଏ ମୁହୂର୍ତ୍ତଠାରୁ ବଳି ଅମର ମୁହୂର୍ତ୍ତ ଆଉ କ'ଣ ଅଛି ଯେ ! କ୍ଷଣିକ ବାଦେ ଅନାଥ ପୁଅକୁ ଛାଡ଼ିଦେଇ ବାଟୋଇର ଦି' ପାଦକୁ କୁଣ୍ଢାଇ ପକାଇ କାନ୍ଦି କାନ୍ଦି କହିଲା- ''ତୁଇ ତ ଭଗବାନରେ ! ମୋ ପୁଅକୁ ଫେରାଇ ଆଣିଲୁ । ସେ ସ୍ପର୍ଶରେ ଶିହରି ଉଠିଲା ବାଟୋଇ । ଆବେଗ ଉଚ୍ଛନ୍ନ ହେଲା ତା ଆତ୍ମା । ସେ ବି କାନ୍ଦି ଉଠିଲା ।

ଆହା ! ସାରା ଜୀବନରେ ଏଭଳି ଅମୃତ ମଣୋହି ଆବେଗ, ଏମିତି ଛଙ୍କା ଅନୁଭବ ମିଳି ନଥିଲା ତ ! ଭୈରବୀନନ୍ଦନର ଭାଗ୍ୟରେ ଏମିତି ଛଳନାହୀନ ପ୍ରତ୍ୟର୍ପଣ କେବେ ଆସି ନ ଥିଲା । ସେ ଆକାଶକୁ ଅନାଇଲା । ଈଶ୍ୱରଙ୍କ ଉଦ୍ଦେଶ୍ୟରେ ନିଜର କୃତାଞ୍ଜଳି ଜଣାଇଲା- ସତରେ ଏ ପୃଥିବୀରେ ତମେ ଆଶୀର୍ବାଦ ହିଁ ବର୍ଷୁଛ ପ୍ରଭୁ । ତାକୁ ବାଟୋଇଟେ ହେବା ଲାଗି ମନାଇଥିବା ସେ ଭିକାରୀ ଉଦ୍ଦେଶ୍ୟରେ ମନକୁ ମନ ଉଚ୍ଚାରିଲା- ସତରେ ଭାରତର ଭିକାରୀ କ୍ଷୁଧାପୀଡ଼ିତ, ଅନ୍ନଦୈନ୍ୟରେ ସଢ଼ୁଥିବା ମାଗିଖିଆ ଲୋକଟେ ହିଁ ନୁହେଁ, କାଞ୍ଚ ବିହୀନ ବିଶ୍ୱାତ୍ମାର ଝଲକ, ପରିବ୍ରାଜକଟିଏ ! ଏଇ ଅନୁଭବ ବିନା ଜୀବନ ଅକାରଣ ହେଇଥାନ୍ତା ସିନା !

ଅନାଥ ମାରିଣ୍ଡି ବାଟୋଇକୁ ପଚାରିଲା- ଏଯାଏଁ ମୁଁ ତୁମକୁ ଚିହ୍ନିପାରିଲିନି, ମୋ ପୁଅକୁ ତମେ କେଉଁଠୁ ପାଇଲ ? ସତ କୁହ !

ବାଟୋଇ ଅଳ୍ପ ହସି କହିଲା- ''ମୋର ପରିଚୟ ବାଟୋଇ । ନାଁ ବାଟୋଇ । ତୁମ ପୁଅକୁ ମୁଁ ଦିଲ୍ଲୀରୁ ଆଣିଛି । ଖଣି କାମ କରୁ କରୁ ମାଟି ଅତଡ଼ା ଖସି କିଛି ଲୋକ ମରିଯାଇଛନ୍ତି । ଆଉ କିଛି ଲୋକ ଦୁର୍ଘଟଣାରେ ମର ମର ଅବସ୍ଥାରେ ଚିକିତ୍ସା ହେଉଥିଲେ ହସ୍‌ପିଟାଲରେ । ସେଇଠି ତୁମ ପୁଅ ଥିଲା । ଭଲ ହେଲାରୁ ମୁଁ ତାକୁ ନେଇ ଆସିଲି !

ଏତକ କହି ସାରି ବାଟୋଇ ଅନାଥକୁ ପ୍ରଶ୍ନ କଲା- ତମେ ଏବେ କୁଆଡ଼େ ବାହାରିଛ ଅନାଥ ?

ମୁହଁ ତଳକୁ ପୋତି ଅନାଥ କହିଲା- ''ସେ ଦିନ ଦେଖା ହେଇଥିଲା ଠିକ୍ ଏଇଠି । ଦେଢ଼ମାସ ହେଇଗଲା । ସେଦିନ ମୁଁ ପୁଅ ଖୋଜିବାକୁ ଯାଇଥିଲି । ଆଜି ବି ସେଇଥିପାଇଁ ବାହାରିଚି । ତମେ ଯା ଭିତରେ ଏତେ କାମ କରି ତାକୁ ବଞ୍ଚେଇ ଆଣିଲ । ମୁଁ ଯେଉଁଠି ଅଛି ସେଇଠି । ଆଗରୁ ଥରେ ଭୁବନେଶ୍ୱର ଯାଇଥିଲି ନା, ସେଠି ଲେବର୍ ଅଫିସ୍‌ର ଜଣେ ବାବୁ କହିଲା- 'ଯା ଦଲାଲ୍ ନାରଣକୁ ଖୋଜି ଆଣ୍ ଆମ ପାଖକୁ । ତା'ପରେ ଆମେ ତମ ପୁଅକୁ ଖୋଜି ଆଣି ଦବୁ ।'' ବାସ୍ ସେଇଦିନୁ ମୁଁ ସେ ଦଲାଲ୍ ନାରଣକୁ ଖୋଜୁଛି । ହଠାତ୍ ଉତ୍ତେଜିତ ହେଇ ଉଠିଲା ଅନାଥ । ଥରିଗଲା । ଲୋମମୂଳ ଟାଙ୍କୁରି ଉଠିଲା ତା'ର । ତଳେ ପଡ଼ିଥିବା ତା'ର ବାଡ଼ିଟିକୁ ଗୋଟାଇ ଆଣି କହିଲା- ''ତାକୁ ଶେଷ ନ କଲା ଯାଏ ମୁଁ ଥିର ରହିପାରିବିନି ବାବୁ । ତାକୁ ଇ ଖୋଜିବା ଲାଗି କୁକୁଡ଼ା, ଛେଳି ଯାହା ଥିଲା ସବୁ ବିକି ସାରିଲିଣି ।''

ବାଟୋଇ ଅନାଥକୁ ଧରି ପକାଇଲା । ବୁଝାଇଲା ଢଙ୍ଗରେ କହିଲା- ''ତାକୁ ଆଉ ଖୋଜନା । ସେ ନିଜେ ହଜି ଯାଇଛି । ତମେ ତାକୁ ଖୋଜି ପାଇବନି । ଯାଅ, ପୁଅକୁ ନେଇ ଘରକୁ ଯାଅ ।''

ସେତେବେଳକୁ ଜହ୍ନ ଉଠିଲାଣି ଧୀରେ । ଅରଖ, ବାବୁଲ ଗଛରେ ପ୍ରଜାପତି ଆଉ ଦିଶୁ ନାହିଁ । ସଂଜ ନିଗିଡ଼ା ଭୂଇଁ ପାଉଁଶିଆ ଦେଖା ଯାଉଛି । ଅନାଥ ମାରିଣ୍ଡି ବାଟୋଇର ହାତ ଧରି ପକାଇ କହିଲା– ''ବାଟୋଇ ବାବୁ ! ସେ ଦିନ ଏଇ ରାସ୍ତାରେ ତୁମେ ଆଗକୁ ଆଗକୁ ଯାଉଥିଲ, ଆଜି ମୁଁ ଡାକୁଚି ଆସ, ଆମ ଘରକୁ ଯିବା । ମନା କରନି, କୁଡ଼ିଆଘର ହେଲେ ବି ଆମେ ତୁମକୁ ସାରା ରାତି ଜଗି ବସିବୁ ! ଆସ ।''

ବାଟୋଇ ଅନାଥ ମାରିଣ୍ଡିକୁ ଧରି ପକାଇଲା । ଆକାଶକୁ ଚାହିଁଲା । ଜହ୍ନକୁ । ନିଆରା, ତୋଫା ସରଳ ସୃଷ୍ଟିଟିଏ ଗଢ଼ାହେଇଚି କୋଉ କାଳରୁ । ମଣିଷ ତା' ଉପରକୁ ପାଦ ପକାଇବାକୁ କେଡ଼େ ଆଗଭର ସତରେ ଯେ !

ସେ ତ ବାଟୋଇ । କୁଆଡ଼େ ଯିବ ? ଉଙ୍ଗାପଦର ଗାଁକୁ ନା ଜହ୍ନମଣ୍ଡଳରେ ପାଦ ଥାପିବାକୁ ? କୁଆଡ଼େ ଯିବ ? ଭାବୁ ଭାବୁ ଅନାଥ ଆଡ଼କୁ ଗଭୀର ଭାବେ ନିରେଖିଲା । ''ପୁଅକୁ ଖୋଜିବାକୁ ଯାଇ ତୁମେ ନାରଣ ଦଲାଲକୁ ଖୋଜିବା ଭିତରେ ହିଁ ରହିଗଲ, କେତେ ସରଳରେ ! ଆଜି ହୁଏତ ତମେ ପୁଅକୁ ହରାଇ ସାରିଥାଆନ୍ତ !'' ଚିନ୍ତା କରୁଥିଲା ବାଟୋଇ । ସେ ଅନାଥର ପିଠି ଆଉଁସି କହିଲା- ''ମୁଁ ତ ବାଟୋଇ । ମୋର ଘର କାହିଁ । ତମ ଘରକୁ ମୋତେ ଡାକନା । ତମେ ମତେ ଯାହା ଦେଇଚ, ଯେଉଁ ଅନୁଭୂତି ମୁଁ ପାଇଚି, ତା'ଠୁ ସ୍ୱର୍ଗ ବଡ଼ ନୁହେଁ ଅନାଥ । ମୋତେ ମୋ ବାଟରେ ଯିବାକୁ ଦିଅ ।''

କେଉଁଠିକୁ ଯିବ ? ପ୍ରଶ୍ନ କଲା ଅନାଥ ।

ଆକାଶକୁ, ଜହ୍ନ ମଣ୍ଡଳକୁ ଚାହିଁଲା ବାଟୋଇ । ଧୀରେ କହିଲା- ''ହେଇ ଉପରକୁ । ମୁଁ ପା' ବାଟୋଇ । ସେଠି ପାଦ ଥୋଇବି ।''

ଜହ୍ନଭର୍ତ୍ତି କିଆରିରେ ସଂଜ ପହରକୁ ପାରି ହେଇ ଯାଉଥିଲା ବାଟୋଇ ।

ଅନାଥ ମାରିଣ୍ଡି ପୁଅ ସଉରାକୁ ଧରି ଅପଲକ ଆଖିରେ ଚାହିଁ ରହିଥିବା ସେଇଆଡ଼େ ।



(କଥା : ଅଗଷ୍ଟ ୧୯୯୬)

# ଗୁଧାଡ଼ି ବେଳା

ପ୍ଲାଟଫର୍ମ । ରକ୍ତ ଝରଝର । ଯାତ୍ରୀ, କୁଲି, ଇଂଜିନର ସେଁ ସେଁ, ତୃତୀୟ ଘଣ୍ଟାର ଠନ୍ ଠନ୍ ଠନ୍, ପାନ, ବିଡ଼ି ସିଗ୍ରେଟ୍, ଏୟ୍ ଚାଆ, ଏୟ ଚାଆର ଲମ୍ବା ରଡ଼ି, ଅସ୍ତବ୍ୟସ୍ତ ଆସବାବ ପତ୍ର, ଦୂରରୁ ଟ୍ରେନର ହୁଇସିଲ୍, ଚଢ଼ିଯିବା ଓହ୍ଲେଇଯିବାର କଦମ୍ କଦମ୍ ଜୀବନ, କେତେ ଲୁହ ଲହୁର ଦୂର ଦୂରାନ୍ତ ହସୌକ୍ତିକ ମିଷ୍ଟିକ୍ ସମ୍ଭାବ୍ୟ ପରିବେଶ । ପ୍ଲାଟଫର୍ମ । ରକ୍ତ ଝର ଝର । ଏ.ଏଚ୍. ହ୍ୱିଲର୍‌ରେ ଗୋଛା ଗୋଛା ବହିର ପ୍ରଚ୍ଛଦ କହୁଚି ମୋତେ କିଣ, ମୋତେ କିଣ । ଆମୂଳଚୂଳ ଥରେ ମାତ୍ର, ଥରେ ମୋତେ ପଢ଼ିସାରି ଏଇ ଡଷ୍ଟବିନ୍‌ରେ ଫୋପାଡ଼ି ଦେଇ ଯାଅ । ମୁଁ ସୁରକ୍ଷିତ ହେବାକୁ ଚାହେଁନା । ତାକୁ ଘେରି ତରୁଣ ବୟସ୍କ ପୁରୁଷ । ମୁହଁରୁ ମୁହଁକୁ, ସିଗ୍ରେଟ୍‌ରୁ ସିଗ୍ରେଟ୍‌କୁ ବୁଲିଯାଉଛି ନିଆଁରୁ ନିଆଁ । ଜଣକର ନିଆଁ ଆଉ ଜଣଙ୍କ ମୁହଁକୁ ତରୁଣ ବୟସ୍କ ପୁରୁଷ । ଅଳ୍ପଦୂର ସିମେଣ୍ଟ ବେଞ୍ଚ ଉପରେ ତରୁଣୀ ଓ ବୟସ୍କାଙ୍କ ଭିଡ଼ । ମୁହଁରୁ ମୁହଁକୁ ଫିସ୍ ଫିସ୍ ଶବ୍ଦ । ଭିତରୁ ଭିତରକୁ । ସେ ଶବ୍ଦ ବାହାରକୁ ଆସିବା ମନା । ଉପରେ ଜଙ୍କ ଲାଗିଯାଇଥିବା ପଙ୍ଖାର ଘଡ଼ର ଘଡ଼ର । ଜଙ୍କ ଲାଗିଛି, ତେଣୁ ଶବ୍ଦ ବାହାରୁଛି । ଯାହା ସ୍ୱାଭାବିକ, ଯାହା ସାଧାରଣ, ସେଠି ଶବ୍ଦ କାହିଁ ? ପ୍ଲାଟ୍‌ଫର୍ମ । ରକ୍ତ ଝର ଝର । ତରୁଣଙ୍କ ଆଖି ତରୁଣୀଙ୍କ ଉପରେ । 'ଆଜି ତୁମ ଟ୍ରେନ୍ ଲେଟ୍ ଅଛି', ଘୋଷଣା କରନ୍ତେ କି ଷ୍ଟେସନ୍ ମାଷ୍ଟର ! 'ଆଜି ତୁମ ଯିବାକୁ ଥିବା ଟ୍ରେନ୍ ଇଂଜିନ ବାଟରେ ଖରାପ ହେଇ ପଡ଼ିଛି', ଘୋଷଣା କରନ୍ତେ କି ଷ୍ଟେସନ ମାଷ୍ଟରର ଭାବ ଭାବ ମୁହଁ ! ସିଗ୍ରେଟ୍‌ରୁ ସିଗ୍ରେଟକୁ ବ୍ୟାପିଯାଉଚି ନିଆଁ । ଛିଡ଼ା ହେଇଥିବା ଟ୍ରେନ୍‌ର କମ୍ପାର୍ଟମେଣ୍ଟରୁ କମ୍ପାର୍ଟମେଣ୍ଟକୁ ଡେଉଁ ଯାଉଚି ଟି.ଟି.ସି. । ଟିକେଟ ଟିକେଟ ? କେଉଁଠୁ କେଉଁଠିକୁ ଯିବ ତମେ ? କେତେ ଲମ୍ବାରାସ୍ତା ଯିବ ? କିନ୍ତୁ ବନ୍ଧୁ, ଯେଉଁଠି ଟ୍ରେନ୍ ଅଟକିବ, ସେଠି ତୁମେ ଅଟକିପାରିବନି । ତୁମକୁ ଆହୁରି ଆଗକୁ ଯିବାକୁ ହେବ । ଆହୁରି ଆଗକୁ । ଆଗକୁ ଆଗକୁ । ଜଳୁଥିବା

ଓ ଲିଭୁଥିବା ଇଲେକ୍‌ଟ୍ରିକ୍ ବଲ୍‌ବରେ ସିକନ, ପେଟ୍ଲିକନ ପ୍ରଭୃତି ଆଧୁନିକ ଫେବ୍ରିକ୍‌ସର ଚିହିଡ଼ା ଚିହିଡ଼ା ବିଜ୍ଞାପନ । ତମକୁ ଯିବାକୁ ହେବ ତାଠୁଁ ଦୂରକୁ ଦୂରକୁ । ସାମ୍ନାରେ ଓଜନ ମାପିବା ଯନ୍ତ୍ର । ମାତ୍ର ଦଶ ପଇସାରେ ତୁମ ଓଜନ, ତା' ସହ ଭାଗ୍ୟଫଳ । ତମର ଓଜନ କେତେ ପୁରନ୍ଦର ? ''ଆସନ୍ତାକାଲି ହିଁ ତୁମ ଜୀବନର ସକାଳ'' ବୋଲି ଭାଗ୍ୟଫଳ ଉଠିପାରେ । କିନ୍ତୁ ତୁମକୁ ତ ଦୂରକୁ, ଆହୁରି ଦୂରକୁ ଯିବାକୁ ହବ । ତମେ କିନ୍ତୁ ପ୍ଲାଟ୍‌ଫର୍ମର ଶେଷ ଖୁଣ୍ଟକୁ ଆଉଜି ହେଇପଡ଼ିଚ କାହିଁକି ? ପିଇବା ପାଣିର ଟବ୍‌ରୁ ବା ପାଇପ୍‌ରୁ କିଛି ପାଣି ପିଇ ନେଇପାର । ଆଗକୁ ଆହୁରି ଆଗକୁ ଯିବାକୁ ହବ ଯେ ! ମାର୍କସିଷ୍ଟ, ରିଭିଜନିଷ୍ଟ, ରିଭାଇଭାଲିଷ୍ଟ, ଆନାର୍କିଷ୍ଟମାନଙ୍କର କାନ୍ଥୁଆ ସ୍ଲୋଗାନ୍ । ମୋତେ ପଢ଼, ମୋତେ ବୁଝରୁ ବି ଆଗକୁ, ଆହୁରି ଆଗକୁ ଯିବାକୁ ହେବ । ତମେ ସିନା ସୈନିକର ପୋଷାକକୁ ଫୋପାଡ଼ି ଦେଇ, ଢିଲା ଲୋଚାକୋଚା ପେଣ୍ଟ ଓ ଅନ୍ତ ଫାଟିଯାଇଥିବା ପନ୍ଦର ଟଙ୍କିଆ ଫୁଟ୍‌ପାଥ୍ ସାର୍ଟ ପିନ୍ଧିପକାଇଛ, ତମକୁ କୌଣସି ନା କୌଣସି ଗାଡ଼ି ଧରିବାକୁ ହେବ । ଆଗକୁ ଯିବାକୁ ହେବ । କେହି ପ୍ଲାଟଫର୍ମରେ ଅଟକିଯାଇ ପାରିନାହିଁ । ରହିଯାଇ ପାରି ନାହିଁ ।

ରକ୍ତ ଝରଝର ପ୍ଲାଟ୍‌ଫର୍ମରେ ସାଲୁବାଲୁ ଦାଢ଼ି, ଥରିଲା ଥରିଲା ପାଦ, କାହିଁ କାହିଁର ପ୍ରଶ୍ନବାଚୀ ଛାତି ଧରି ମନସ୍କ ପୁରନ୍ଦର । କୋଳାହଳମୟ ସମସ୍ତ ଶବ୍ଦରୁ ଅପହଂଚ ପରିଣତିରେ ପୁରନ୍ଦର ଖୋଜୁଛି କୁଆଡ଼େ, କୁଆଡ଼େ ଯିବ ? ଥ୍ରୀ ଅପ୍ ଏକ୍‌ସପ୍ରେସ୍ ଛାଡ଼ିବ ଛାଡ଼ିବ ହଉଚି । କମ୍ପାର୍ଟମେଣ୍ଟରୁ ଓହ୍ଲାଇ ପାଣିଟବରୁ ପାଣିଢାଳେ ଧରି ତରତର ହେଇ ଧାଉଁଛି ଗାଉଁଲି ସ୍ତ୍ରୀ ଲୋକଟେ । ଖୋଜୁଛି ତା' କଂପାର୍ଟମେଣ୍ଟକୁ । ଏପାଖ ସେପାଖ ହଉଚି । ଯୋଉ କମ୍ପାର୍ଟମେଣ୍ଟରୁ ସେ ଓହ୍ଲେଇଥିଲା ତାକୁ ସେ ଆଉ ଚିହ୍ନିପାରୁନାହିଁ । ମୁହଁ କାନ୍ଦୁଣୁ ମାନ୍ଦୁଣୁ ହେଇ ଆସୁଛି । ତମେ କେଉଁ କଂପାର୍ଟମେଣ୍ଟରୁ ଓହ୍ଲେଇଥିଲ ପୁରନ୍ଦର, ତମର ମନେ ଅଛି ? ପ୍ଲାଟ୍‌ଫର୍ମଠୁଁ ଦୂରକୁ ଲମ୍ବି ଯାଇଥିବା ଫେନ୍‌ସ୍ କଡ଼େ କଡ଼େ ଲମ୍ଭତମ୍ଭ ହେଇ ପଡ଼ିଛନ୍ତି କେତେକ ଭିକାରି, ଭିକାରୁଣୀ । ବୟସ୍କ ଭିକାରି ଜଣେ ସେମାନଙ୍କ ମଝିରେ ଛିଡ଼ା ହୋଇ ଖୋଜୁଛି । ଦେହରେ ସାମାନ୍ୟ ଚମକ ଥିବା, କିଛି ଫୁଲୁକା ମାଂସ ଥିବା କୌଣସି ଭିକାରୁଣୀ, ଯାହା ପାଖରେ ଲଗାଲଗି ହୋଇ ସେ ରାତିଟା କଟେଇଦବ । ତମର କୋଡ଼ିଏ ବର୍ଷର ସୈନିକ ଜୀବନ ଭିତରେ ତମେ ସେମିତି କିଛି କେବେ ଖୋଜିଛ ପୁରନ୍ଦର ? ପ୍ଲାଟଫର୍ମ ରକ୍ତ ଝରଝର । ସ୍ୱିଚ୍‌ରୁମ୍ ଉପରେ ଆ ଥୁଃ, ଆ ଥୁଃ, ଛେପ ପକାଇବାରେ ଲାଗିଛି ପାଗଳ ସନାତନ । ବେଳେବେଳେ କହୁଚି ସନାତନ ଥୁଃ, ସନାତନ ଥୁଃ ! କଳା ମଚମଚ ବୁର୍ଷୁଳିଆ ଦେହୀ ସନାତନ ଥିଲା ବିଚାରବିଭାଗର ହନ୍ତାରୀ । ଫାଶୀଦଣ୍ଡରେ ଅଭିଯୁକ୍ତ ଆସାମୀଙ୍କ ଗଳାରେ ଫାଶୀ ଚଢ଼େଇ ଝୁଲେଇବା ଥିଲା ତା'ର ଦାୟିତ୍ୱ । ହଠାତ୍ ତା'ର କେମିତି ମନେ

ହେଲା କେଜାଣି ବିଚାର ବିଭାଗ ସେମାନଙ୍କୁ ଫାଶୀ ଦେଉନାହିଁ, ସେ ହିଁ ସେମାନଙ୍କୁ ଫାଶୀ ଦେଉଛି, ହତ୍ୟା କରୁଛି । ସେ ନିଜକୁ ଅପରାଧୀ ଅପରାଧୀ, ହନ୍ତାରୀ ହନ୍ତାରୀ, ଜହ୍ଲାଦ ଜହ୍ଲାଦ ଭାବି ଭାବି ମସ୍ତିଷ୍କର ଭାରସାମ୍ୟ ହରାଇ ଦେଇଛି । ନିଜକୁ ଅପରାଧୀ ସାବ୍ୟସ୍ତ କରି ପରିଣତ ହେଇଚି ଏକ ମସ୍ତ ପାଗଳରେ । ପ୍ଲାଟ୍‌ଫର୍ମ୍ । ରକ୍ତ ଝର ଝର । ତମେ ପୁରନ୍ଦର ସେମିତି କ'ଣ ନିଜକୁ ଅପରାଧୀ ଭାବି ଫେରିଆସିଛ ଯୁଦ୍ଧକ୍ଷେତ୍ରରୁ ? ଓହ୍ଲାଇଦେଲ ତମ ଦେହରୁ ସୈନିକର ସମସ୍ତ କାତି ? ଡଷ୍ଟବିନ୍ ପାଖରେ ଛଅ ସାତବର୍ଷର ନଙ୍ଗଳା ଛୁଆ । ପେଚୁଆ ଆଖି । ଡଙ୍କେଇ ଯାଉଥିବା ହାତ ଗୋଡ଼ । ପୁଟୁଳି ପେଟ । ଡଷ୍ଟବିନ୍‌ରୁ କିଛି ଖୋଜୁଛି । ହୁଏତ କିଛି ଟୁକୁରା ପାଉଁରୁଚି । ହଜାର ହଜାର ବର୍ଷର ସଭ୍ୟତା ସଂସ୍କୃତି, ତା'ର ଜ୍ଞାନ ବିଜ୍ଞାନ ସବୁ ଯେମିତି ଏଇ ଦୃଶ୍ୟଠି ହାର ମାନି ଯାଇଛନ୍ତି । ପୁରନ୍ଦର ଉଠିଯାଇ ସେଇ ଶିଶୁକୁ ଟଙ୍କାଟେ ଦେଲା । ତୁ ଯାହା ଖୋଜୁଛୁରେ ବାୟା, ତା'ର ରୂପ ଏଇମିତି, ଏଇପରି । ପୁଣି ଫେରିଆସି ପୁରନ୍ଦର ସେଇମିତି ପ୍ଲାଟ୍‌ଫର୍ମ୍‌ର ଶେଷ ଖୁଣ୍ଟକୁ ଆଉଜି ଛିଡ଼ାହେଲା । ଟଙ୍କା ପାଇ ଶିଶୁଟି ଧାଇଁଗଲା । ପ୍ଲାଟଫର୍ମ ବାହାରକୁ । ପୁରନ୍ଦର ! ତୁମକୁ ସେମିତି କେହି କିଛି ଯାଚି ଦେଇପାରିବ ନାହିଁ । ଦଶପଇସିଟେ ପାଇଁ ତୁମକୁ ହାତ ପତେଇବାକୁ ହେବ । ସଭ୍ୟତାର ଅନୁଭୂତି ତୁମକୁ ଶିକ୍ଷାଦେଇଛି ମାଗିବାକୁ । ସହାନୁଭୂତି, ସମବେଦନା ଓଟାରିବାକୁ ନୁହେଁ । ତା'ର ଅଧିକାର ତମର ନାଇଁ । ପ୍ଲାଟ୍‌ଫର୍ମ । ରକ୍ତ ଝରଝର । ସିମେଣ୍ଟ ବେଞ୍ଚର ଗୋଟେ କୋଣକୁ କୌଶିକ୍ ବସି ସିଗ୍ରେଟ୍ ପରେ ସିଗ୍ରେଟ୍ ଫୁଙ୍କି ଚାଲିଛି । ଏବକୁ ଅନ୍ୟତ୍ର ବିବାହ କରିଯାଇଥିବା ତା'ର ପ୍ରେମିକା ପ୍ରଥମକୁ ଫେରୁଛି । ତା'ର ବାପଘରକୁ । ଟ୍ରେନ୍‌ରେ । ପହଞ୍ଚିବ ରାତ୍ରୀ ତିନିଟାକୁ । ଅଥଚ କୌଶିକ୍ ସେ ଟ୍ରେନ୍‌କୁ ଅପେକ୍ଷା କରୁଛି ରାତି ବାରଟାରୁ । ତମର ପୂର୍ବତନ ପ୍ରେମିକା ଆସିବ ତିନିଟାରେ ଅଥଚ ତମେ ବାରଟାରୁ ଅପେକ୍ଷା କରୁଛ ? ତମର ସମୟ ନିର୍ଦ୍ଧାରିତ, ହୁଏତ ନିର୍ଦ୍ଧାରିତଠୁଁ ବି ବିଳମ୍ବ ହେଇପାରେ, ତା' ସତ୍ତ୍ୱେ ତମେ ଅପେକ୍ଷା କରିବାକୁ ଆସିଛ କୌଶିକ୍ ? ଜାଣ, ଅପେକ୍ଷା କରିବାର ଯନ୍ତ୍ରଣା, କର୍ଫ୍ୟୁ ଜାରିହେବାର ଯନ୍ତ୍ରଣାଠୁ ବି, ଚାକିରିରୁ ଛଟେଇ ହେଇଯିବାର ଯନ୍ତ୍ରଣାଠୁଁ ବି, ଭୋଟ୍ ଅଫ୍ ନୋ କନ୍‌ଫିଡ଼େନ୍‌ସରେ ଚେୟାରରୁ ଓହ୍ଲାଇଯିବାର ଯନ୍ତ୍ରଣାଠୁଁ ବି ଯନ୍ତ୍ରଣାଦାୟକ । ତମେ କ'ଣ କହିବାକୁ ଚାହଁ କୌଶିକ୍ ଯେ କେବଳ ଅପେକ୍ଷା ବ୍ୟତୀତ ଆଉ ସମସ୍ତ ସ୍ୱାଧୀନତା ଓ ଅଧିକାରଠୁଁ ମଣିଷ କ୍ରମଶଃ ବଂଚିତ ହେଇଯାଇଛି ? ଏବଂ ମଣିଷର ଅପେକ୍ଷା ହିଁ ତାକୁ ଶୋଷଣ କରୁଛି ? ପୁରନ୍ଦର ! ତମେ କାହାକୁ ଅପେକ୍ଷା କରିଚ ? ତମର ସ୍ତ୍ରୀ ଅଛି ? ପୁତ୍ର ଅଛି ? ପ୍ରେମିକା ଅଛି ? ତୁମର ନିଜର ବୋଲି କିଛି ସାମ୍ରାଜ୍ୟ ଅଛି ପୁରନ୍ଦର ? କୋଉ ଟ୍ରେନ୍‌କୁ ତମେ ଅପେକ୍ଷା କରିଛ ? ତମେ ବୋଧେ କାହାକୁ କିଛି ଅପେକ୍ଷା କରୁନ, ତମ ଆଖି ବିବ୍ରତ ନୁହେଁ, ତମ ଓଠ ସିଗ୍ରେଟ୍

ଚୁମ୍ବ ନାହିଁ । ତମ ଚିନ୍ତାରେ ବି ଯନ୍ତ୍ରଣା ନାହିଁ ପୁରନ୍ଦର ! ମଣିଷର କାର୍ଯ୍ୟ ଅପେକ୍ଷା, ସେଇ କାର୍ଯ୍ୟର ଚିନ୍ତା ହେଉଚି ପୀଡ଼କ, ପ୍ରଳୟକ, ଶୋଷକ ! ବମ୍ ପକେଇ ତମେ ବସ୍ତିକୁ ଉଡ଼େଇଦେଇଥିଲ ମାତ୍ର ତିନି ମିନିଟ୍‌ରେ, ଅଥଚ ତା'ର ଏକମାସ ପର୍ଯ୍ୟନ୍ତ ତମେ ବିବ୍ରତ ହେଇ ଚିନ୍ତାରେ ଡହଳ ବିକଳ ହେଇଛ ବସ୍ତିକୁ ଉଡ଼େଇଦେଇ ତମେ ଠିକ୍ କରିଛ କି ଭୁଲ କରିଛ ବୋଲି, ନୁହେଁ ? ଏଇ ପ୍ରଶ୍ନ ଭିତରେ ତମେ ଶୋଷି ହେଇଯାଇଥିଲ, ନୁହେଁ ପୁରନ୍ଦର ? ପ୍ଲାଟ୍‌ଫର୍ମ । ରକ୍ତ ଝରଝର । ଏକ ଉଦାସ ନକ୍ଷତ୍ର ଭଳି ଚାହିଁ ରହିଛି ଯୁବକଟେ । ଶେଷ ସିମେଣ୍ଟ ବେଞ୍ଚର ଶେଷ ଆଡ଼କୁ ବସି ଢୁଳୁଢୁଳୁ ଆଖିରେ ଖୋଳି ଚାଲିଛି ପ୍ଲାଟ୍‌ଫର୍ମର ଗନ୍ତାଘରକୁ । ଟ୍ରାଉଜର ଓ ପଞ୍ଜାବି ପିନ୍ଧା ଏଇ ଯୁବକଟିର ମୁଖମଣ୍ଡଳ କିନ୍ତୁ ଯନ୍ତ୍ରଣାରେ ଆହା ଆହା । ବୋଧହୁଏ ଲେଖକ ବା ଶିଳ୍ପୀଟିଏ ହେବ । ଘନ ଘଂଚ ଏଇ ପ୍ଲାଟଫର୍ମରୁ ଗୋଟେ ମଜଭୁତ ଚିତ୍ର ଓଟାରି ନେବାକୁ ଚାହିଁ ସହସ୍ର ଚରିତ୍ରର ଭାର କାନ୍ଧରେ ବୋହିବାକୁ ପଡୁଛି । ସିଝିଯାଉଛି ଯୁବକଟି ସେ ଭାରରେ । ରା ରା କରୁଛି ଯନ୍ତ୍ରଣା । ସହିଯାଉଛି । କୌଣସି ଚରିତ୍ରକୁ ଅପମାନିତ କରିବାର ଅଧିକାର ଶିଳ୍ପୀର ନାହିଁ । ଗୋଟେ ମଜଭୁତ ଚରିତ୍ର ପାଇଗଲେ କାନ୍ଧରେ ଭାରେଇଥିବା ଶତ ଶତ ଚରିତ୍ରଙ୍କୁ ସେ ଓହ୍ଲାଇ ଦେଇପାରନ୍ତା । ସେମାନଙ୍କୁ ହେଇ ଛୁ କରିଦେଇ ପାରନ୍ତା । କିନ୍ତୁ ଏ ପ୍ଲାଟ୍‌ଫର୍ମ ଏମିତି ଏକ ଜଙ୍ଗଲ ଯେ କୌଣସି ମଜଭୁତ ଚରିତ୍ରର ହେଣ୍ଡାଳ ଶୁଭୁନାହିଁ । ପୁରନ୍ଦର ! ତମେ କ'ଣ ଏମିତି ଏକ ମଜଭୁତ ଟ୍ରେନ୍ ଖୋଜୁଛ ଯେ ରାସ୍ତାରେ ବ୍ରେକ୍‌ଡାଉନ ହେବାର, ଆକ୍‌ସିଡ଼େଣ୍ଟ ହେବାର ସମ୍ଭାବନା ଯେମିତି ଆଦୌ ନଥିବ ? ଶିଳ୍ପୀଟି ଏଥର ଝୁଙ୍କିପଡ଼ିଲା । ଆଖି ଯୋଡ଼ିକ ଗହୀରା ହେଇଆସିଲା । ସେ ଗୋଟେ ମଜଭୁତ ଚରିତ୍ରକୁ ଯେମିତି କାଠେଇ ପକେଇଛି । ଆଟାଚିଧରା ବୟସ୍କ ପୁରୁଷଟି ପ୍ଲାଟଫର୍ମ ଉପରେ ମଚ ମଚ କରି ଚାଲିଛି । ତା' ପାଖେ ପାଖେ କାକୁସ୍ଥି ହେଇ ହେଇ ଚାଲିଛି ଆଦିବାସୀ ଝିଅଟା : ଦେ ବାବୁ, ଦେ ଦି'ଟା ଟଙ୍କା । କାମ ସାରିଦେଲୁ, ମଜୁରି ଦଉନୁ ? ପାଉଣା ଦଉନୁ ? ଶହ ଶହ ଆଖିର କଟୁରି ସିଧା ସିଧା ସେ ଆଡ଼କୁ । ଏ ଗହଳି ଚହଳିରେ ଅପେକ୍ଷାକୃତ ଜୋର୍ ପାଟିରେ ସେ ମାଗୁଛି । ଚରିତ୍ରଗତ ଅପନିନ୍ଦା ପଦାରେ ପଡ଼ିଯିବା ଭୟରେ ପୁରୁଷଟି କାଳବିଳମ୍ବ ନ କରି ତାକୁ ତା'ର ପାଉଣା ଦେଇଦବ ଅବା ! କିନ୍ତୁ ପୁରୁଷଟି ସେ ଆଡ଼କୁ ଆଦୌ ଖାତିର ନ କରି ବେପରୁଆ । ବେଶ୍ ଚାଲିଛି ଠକ୍ ଠକ୍ ପ୍ଲାଟଫର୍ମରେ । ଯେମିତିକି : ହଅ, ତୁ କ'ଣ ମୋ ଚରିତ୍ର ପଦାରେ ପକେଇବୁ ? ଏ ତ ସବୁ ପୁରୁଷର ଚରିତ୍ର ! ଶିଳ୍ପୀଟି ଏଥର ସେ ଆଡ଼କୁ ଆଗେଇଲା । ବାଃ, ବାଃ, କି ଚରିତ୍ର ! ସବୁ ଖୋଲା । ସବୁ ନିଃସଙ୍କୋଚ । ଚରିତ୍ରର ଘୋଡ଼ଣୀ ନାହିଁ । ଏଥର ଯୁବତୀଟି ପୁରୁଷର ସାମ୍ନାରେ ଛିଡ଼ା ହୋଇ ପଡ଼ିଲା : ଦେ ବାବୁ, ପାଉଣା ଦେ । ପୁରୁଷର ଆଖି ଜଳି

ଉଠିଲା । ପ୍ଲାଟଫର୍ମ । ରକ୍ତ ଝରଝର । ''ଶାଳୀ ମୋତେ କହିଲୁ ମୋଟେ ଅଇଁଠା ହେଇନୁ, ଦେଖିଲାବେଳକୁ ଖାଲି ଟାକୁଆଟା, ଯା, ଭାଗ୍ !'' ଆଟାଚିଧରା ପୁରୁଷଟି ଚିହିଁକି ଉଠିଲା । ''ନହେଲା ନାହିଁ, ଆଠଣା ଦେ ବାବୁ ! ଦିହ ହାତ ବଥା । କାଲିଠୁଁ କିଛି ଖାଇନି । ପାଉଁରୁଟିଟେ ଖାଇମି ।'' ଆଦିବାସୀ ଝିଅଟା ଅତି କାକୁସ୍ଥ ହେଇ ଭିକ ମାଗିଲା ଭଳି ହାତ ପତେଇଲା ।

କାହିଁକି ଆଉ ହାତ ବଢ଼େଇଛୁ ? କିଏ ତୋତେ କ'ଣ ଦବ ? କିଏ କ'ଣ ଦେଇପାରେ ତୋତେ ? ଆଖି ଛଳ ଛଳ ତା'ର । ଏଇ ଯେମିତି ବିସ୍ଫୋରଣ ଘଟିଯିବ ପ୍ଲାଟ୍‌ଫର୍ମରେ ! ବିଶ୍ୱ ଛିଁଆଡ଼ି ହୋଇ ପଡ଼ିଚି ଲୋ ଝିଅ, ଲୁହ ଛଳ ଛଳ ଆଖିରେ ହାତ ପତେଇ ଛିଡ଼ା ହୋଇଥିବାର ଚିତ୍ର ହିଁ ତୋର ଏବର ସଂଜ୍ଞା ! ନା, ହେଲା ନାହିଁ । ଅପେକ୍ଷାକୃତ ଯନ୍ତ୍ରଣାର ମୁହଁ ମୋଡ଼ି ଫେରିଆସୁଛି ଶିଳ୍ପୀ । ଏଠି ସବୁ ଖୋଲା । ସବୁ ନିଃସଙ୍କୋଚ । ଚରିତ୍ରର ଷୋଡ଼ଶ ଘୋଡ଼ଶୀ ନାହିଁ । କିନ୍ତୁ କି ପ୍ରତାରଣା ! ବାରମ୍ବାର ତୁମକୁ ଏମିତି ଫେରିବାକୁ ହେବ ଶିଳ୍ପୀ । ମଜଭୁତ ଚରିତ୍ର ଖୋଜିବା ନିଶାରେ, ଏମିତି ସହସ୍ର ଚରିତ୍ରର ଯନ୍ତ୍ରଣା ଭାରରେ ତମେ ସିଝିଯିବ । କିଛି ବିସ୍ମୟ ସୃଷ୍ଟି କରିଥିବା ଚରିତ୍ରକୁ ମଜଭୁତ ବୋଲି ଭାବି ତମେ ଧାଇଁଯିବ ତା' ପାଖକୁ, କିନ୍ତୁ ତୁମକୁ ଫେରିବାକୁ ହେବ ନିଷ୍ଫଳା ତଲିପାଁ ପରି । ତମ ଜୀବନରେ ଏମିତି କିଛି ଘଟିଛି ପୁରନ୍ଦର ? ଯୁଦ୍ଧଭୂଇଁରେ ଜଣକୁ ଗୁଳି କରି ସାରିଲା ପରେ ତା'ର ଶବକୁ ଦେଖି ତମେ କ'ଣ ଅନୁଭବ କରିନାହିଁ ବନ୍ଧୁକର ଗୁଳିଟିଏ ନଷ୍ଟ ହେଲା, ନଷ୍ଟ ହେଲା ବୋଲି ? ପ୍ଲାଟ୍‌ଫର୍ମ । ରକ୍ତ ଝରଝର । ସେଆଡୁ ଗୋଟେ ଗର୍ଜନ ଶୁଭି ଆସୁଛି । ଅସ୍ତବ୍ୟସ୍ତ ଚକ୍ଷୁ । କିଏ ? କିଏ ? କାହାର ଶବ୍ଦ ? ଉର୍ଜସ୍ୱଳ ଧ୍ୱନି : ଭାରତର ଗଣତନ୍ତ୍ରରେ ମାଛିଟେ ବସିଥିଲା । ବନ୍ଧୁଗଣ, ସେ ମାଛିଟି ବଂଶ ବିସ୍ତାର କରିଛି । ଏବେ ସମ୍ବିଧାନରେ, ସମ୍ବିଧାନରୁ ଆଇନରେ, ଆଇନରୁ ମଣିଷ ଉପରେ ବ୍ୟାପି ଯାଇଛି । ଦେଖିଛ, ଦେଖିଛ ସେ ବିଚିତ୍ର ମାଛିକୁ ? ଚିହ୍ନିଛ ? ମୁଣ୍ଡଠୁ ପାଦ ଯାଏ ଆବୃତ ପଗଡ଼ି । ଏକ ଭାଷାବ୍ୟସ୍ତ ଆଖି ଏବଂ ରେଖାତ୍ରସ୍ତ କପାଳ ଧରି ଉଚ୍ଚା ବର୍ଦ୍ଧିତ କେଶରାଶି ସମ୍ବଳିତ ବୃଦ୍ଧ । ଅଧିକ ପରିମାଣରେ ମାଲଗାଡ଼ି ଅଟକୁଥିବା ଏଇ ଷ୍ଟେସନରେ ଆବିର୍ଭୂତ ଏଇ ଆକସ୍ମିକ ମାନବ : ହୁଏତ ଜଣେ ଦାର୍ଶନିକ । ତମକୁ ବି ଶେଷରେ ଆସିବାକୁ ହେଲା ଏଇ ପ୍ଲାଟଫର୍ମକୁ । ଗାଡ଼ି ଚାଲିଯାଏ । କିନ୍ତୁ ପ୍ଲାଟଫର୍ମ ସେମିତି ଥାଏ । ରକ୍ତ ଝରଝର । ତମକୁ କ'ଣ କେଉଁଠିକୁ ଯିବାକୁ ହେବ ଦାର୍ଶନିକ ? ତମେ ବି ବିଚଳିତ ! ଅଥଚ ଯିବା ପୂର୍ବରୁ କିଛି ଦର୍ଶନ ଶୁଣେଇ ଦେଇଯିବ ? ପ୍ଲାଟଫର୍ମକୁ ତ୍ରସ୍ତ ବିଚଳିତ କରି ତମେ ଚାଲିଯିବ ତମ ଗାଡ଼ିରେ । ଏମିତି କିଛି କହିବାକୁ ଚାହଁ ପୁରନ୍ଦର, ଅଥଚ ତୁମର ପାଟି ଖୋଲୁନାହିଁ ? ଏମିତି କିଛି ଅଛି କହିବାକୁ ? କିନ୍ତୁ ତୁମେ ଏମିତି ନୀରବ, ଠିକ୍ ବିଶ୍ୱଯୁଦ୍ଧ ସମୟର ନୀରବତା

ଭଳି ! ଭାଷା ନିଃଶକ୍ତ, ଦୁର୍ବଳ ହେଇଗଲେ ଯୁଦ୍ଧ ହୁଏ । ଶବ୍ଦ ଫେଲ୍ କରିଗଲେ ଯୁଦ୍ଧ ଅବଶ୍ୟମ୍ଭାବୀ ! ପୁରନ୍ଦର ! ତମର ନୀରବତା ଏମିତି କୌଣସି ଏକ ଯୁଦ୍ଧର ସଙ୍କେତ କି ? ପ୍ଲାଟଫର୍ମ । ରକ୍ତ ଝରଝର ।

x x x x x x x x x

ବାପା କହିଥିଲେ : ଚାରିଥର ମେଟ୍ରିକ୍ ଫେଲ୍ ହେଲୁ । ଏଥର କହ, ନଙ୍ଗଳ କଣ୍ଟି ଧରିବୁ ନା ଯୁଦ୍ଧକୁ ଯିବୁ ? ପୁରନ୍ଦର କିଛି କହି ନଥିଲା । ବେଡ଼ିଂପତ୍ର ବାନ୍ଧିଥିଲା । ସେ ଜାଣିଥିଲା ସୈନ୍ୟବାହିନୀରେ ଯୋଗ ଦେବା ପାଇଁ ତା'ର ସମସ୍ତ ଶାରୀରିକ ଅନୁକୂଳତା ରହିଛି । ଇଣ୍ଟରଭିଉରେ ସେ ନିଶ୍ଚୟ ସିଲେକ୍ଟ ହେଇଯିବ । ତା' ଭଳି ହତଭାଗ୍ୟ ବେକାର ମାନଙ୍କ ପାଇଁ ଗୋଟିଏ ହିଁ ପଥ : ଯୁଦ୍ଧକୁ ଯାଅ, ସୈନିକ ହେଇଯାଅ । ଆଉ ବାଟ ନାହିଁ । ପନ୍ଥା ନାହିଁ । ସେଥିପାଇଁ ଆନ୍ତରିକତା ଥାଉ ବା ନଥାଉ, ଇଚ୍ଛା ଥାଉ ବା ନଥାଉ ଯୁଦ୍ଧକୁ ଯାଅ । ବଳି ପଡ଼ିବାକୁ ଯାଅ । ପ୍ରବୃତ୍ତି ନଥାଇ ବୃତ୍ତିକୁ ଯିବା, ପୁଣି ସୈନ୍ୟ ବିଭାଗକୁ, ଯୂପ କାଠରେ ବଳିପଡ଼ିବା ଭଳି ନୁହେଁ ତ ଆଉ କ'ଣ ? ବୋଉ କାନ୍ଦିଥିଲା । ପୁଅ ଯୁଦ୍ଧକୁ ଯିବ ? ଆଉ ଲେଉଟିବ ତ ? ମାଆ ଜାଣେ, ବୟସ ହେଇଗଲା ପରେ ପୁଅକୁ ଲୁଗା କାନିରେ ଆଉ ବାନ୍ଧି ହେବନି । ତଥାପି ବଞ୍ଚିବା ପାଇଁ ଯୁଦ୍ଧକୁ ଯିବ ? ଯୁଦ୍ଧଭୂଇଁରେ କେହି ବଞ୍ଚିପାରେ ? ବଞ୍ଚିବା ଲାଗି ମୃତ୍ୟୁକୁ ହାତମୁଠାରେ ଧରିବା କ'ଣ ଜରୁରି ? ପୁରନ୍ଦର କହି ଦେଇଥିଲା : କେତେଜଣ ବଞ୍ଚିବା ପାଇଁ କେତେଜଣ ଯୁଦ୍ଧ କରିବା ଆବଶ୍ୟକ । ମାଆ ତାଟକା ରହିଯାଇଥିଲା । ପୁରନ୍ଦର ଚାଲିଯାଇଥିଲା । ଏ ଖବର ଶୁଣି ତା'ର ପ୍ରେମିକା ସଲିଳା ଆଉ ଜଣଙ୍କୁ ବାହା ହେଇପଡ଼ିଲା । ଆକାଶରେ ମେଘର ଘନଘଟା ଆସର ଦେଖି କିଏ ବା ଆଶଙ୍କା ନ କରିବ ଯେ ବର୍ଷା ହେବ ବୋଲି ? ସୈନ୍ୟବାହିନୀରେ ଯୋଗଦେବା ପରେ ପୁରନ୍ଦର ପୁତ୍ର, ପ୍ରେମିକ, ବନ୍ଧୁ ପ୍ରଭୃତି ସମସ୍ତ ନାମାବଳୀରୁ ଆପେ ଆପେ ତା'ର ନାଁ କାଟି ହେଇଯାଇଥିଲା । ଯେମିତିକି ସେ ଏକ ସାମାଜିକ ଜୀବ ନୁହେଁ । ସେ ଗୋଟେ ଜୀବାସ୍ତ୍ର ! ମାଆ ଆଶା ଛଡ଼ା, ପ୍ରେମିକା ଆଶା ଛଡ଼ା, ଗାଁ ଆଶା ଛଡ଼ା ! ଏପରିକି ଦେଶ ବି !

କମାଣ୍ଡର ସିଂଙ୍କ ନିର୍ଦ୍ଦେଶ ଥିଲା : ପ୍ରଚୁର ଖାଅ, ବନ୍ଧୁକ ଉପରକୁ ଉଠାଅ । ଦେଖ, ଆକାଶରେ ଉଡ଼ନ୍ତା ପକ୍ଷୀକୁ ଲକ୍ଷ୍ୟକର । ରେଞ୍ଜ ଭିତରକୁ ଆସିଗଲେ ଫାୟାର କର । ବନ୍ଧୁକ ଉଠାଉ ଉଠାଉ ପୁରନ୍ଦର ଝମକି ପଡ଼ିଥିଲା । କୁହାନାଳେଇଥିଲା ତା'ର ଜୀବନ୍ତ ଶରୀର । ବନ୍ଧୁକ ଶିକ୍ଷା କରିବା ପାଇଁ ଗୋଟେ ମୁକ୍ତ ନଭୋଚାରୀକୁ ଜୀବନରୁ ଶେଷ କରିଦେବା କ'ଣ ଜରୁରି ? ତା'ର ହାତ ଥରି ଯାଇଥିଲା । ଏବଂ କମାଣ୍ଡର ସିଂ ତା' ପିଠାକୁ ଗୋଇଠାଟେ ପକାଇ କହିଥିଲେ : ଦେଖ, ଯୁଦ୍ଧ କଲାବେଳେ କିଏ ସ୍ୱାଧୀନ,

କିଏ ପରାଧୀନ, କିଏ ମୁକ୍ତ, କିଏ ଦେଶପ୍ରାଣ, କିଏ ଦେଶଦ୍ରୋହୀ, ଏ ଚିନ୍ତା କଲେ ତୁମେ ବନ୍ଧୁକ ଉଠାଇ ପାରିବ ନାହିଁ। ଫାୟାର କରିପାରିବ ନାହିଁ। ତମେ ମଣିଷ ଭଳି ବଞ୍ଚିବାକୁ ଆସିନାହଁ, ଆସିଛ ଅସ୍ତ୍ରଭଳି ଯୁଦ୍ଧ କରିବାକୁ। ସେତେବେଳେ ପୁରନ୍ଦର ଆଖିରୁ ପୁଅଡୋଳାଟି ଛିଟିକି ପଡୁଥିଲା ଯେମିତି ! ତାକୁ ଅନୁଭବ ହେଉଥିଲା ବନ୍ଧୁକଟି ସଭ୍ୟତାର ମଞ୍ଜିକୁ କ୍ରମଶଃ ତା'ର ହାତ ବଢ଼ାଇ ଚାଲିଛି। ବନ୍ଧୁକର କାରବାର କେବଳ ଜୀବନ୍ତ ଶରୀର ସହ। ଆକାଶ, ପାହାଡ଼, ଫୁଲ, ଝରଣାର ଦିଗନ୍ତ ତା' ପାଇଁ ଅନାବଶ୍ୟକ। ପୁରନ୍ଦର ! ତମେ ମାନବିକ ମୂଲ୍ୟବୋଧ, ସ୍ୱାଧୀନ ଚିନ୍ତା, ଅନୁଭୂତିର କଜ୍ଜ୍ୱଳ ଓ ଉପଲବ୍ଧିର ବହ୍ନିରେ ମଛି ହେଲେ ବନ୍ଧୁକ ଉଠାଇ ପାରିବ ନାହିଁ। ସେଥିରୁ ନିଷ୍କୃତି ନ ନେଲେ, ସେ ସବୁକୁ ନଷ୍ଟ କରି ନ ଦେଲେ ଯୁଦ୍ଧ କରିପାରିବ ନାହିଁ। ପୁରନ୍ଦର ! ଅନୁଭୂତି, ଚିନ୍ତା ଓ ଉପଲବ୍ଧିହୀନ ହେବାକୁ ହେଲେ ତୁମକୁ ପଶୁତ୍ୱରୁ ବି ପଶୁ ହେବାକୁ ପଡ଼ିବ। କିନ୍ତୁ ଅନୁଭୂତିହୀନ, ଚିନ୍ତାହୀନ ହେବା କ'ଣ ସମ୍ଭବ ମଣିଷ ପକ୍ଷେ ? ତେଣୁ ଜବରଦସ୍ତି ସେ ସବୁକୁ ଚାପିଦେବାକୁ ହେବ, ଯାହାର ପରିଣାମରେ ସୃଷ୍ଟି ହିଂସା ଓ ବିରକ୍ତି ! ତାହା ହିଁ ତ ସୈନିକର ସମ୍ପତ୍ତି ! ପ୍ରେମ ଓ କରୁଣା ନୁହେଁ। କମାଣ୍ଡର ସିଂ ପୁରନ୍ଦର ହାତରୁ ବନ୍ଧୁକଟି ଟାଣିନେଇ ସେଇ ବିସ୍ତୀର୍ଣ୍ଣ ପଡ଼ିଆରେ ଖୋଜି ଚାଲିଥିଲେ, ମାଛରଙ୍କା ଆଖିରେ। ଭୂଇଁ ଉପରେ ଜମିଥିବା ପିମ୍ପୁଡ଼ିମାନଙ୍କ ଆଡ଼କୁ ଆଙ୍ଗୁଠି ଦେଖାଇ ଚିତ୍କାର କରିଥିଲେ : ପୁରନ୍ଦର ! ଏଇ ପିମ୍ପୁଡ଼ିମାନଙ୍କୁ ଗୋଡ଼ରେ ଦଳିପକାଅ ! ପୁରନ୍ଦର କମାଣ୍ଡର ସିଂଙ୍କ ଆଖିକୁ ନିରେଖୁଥିଲା। ତାଙ୍କ ଆଖି ଜଳୁଥିଲା, ହୁତ୍‌ହୁତ୍। ପିମ୍ପୁଡ଼ିମାନେ ସାଧାରଣ ଜୀବ ଏଠି ନୁହନ୍ତି, ଏ ସମୟରେ, ଏ ପରିସ୍ଥିତିରେ ତୁମପାଇଁ ପୁରନ୍ଦର, ସେମାନେ ଭୟଙ୍କର ଶତ୍ରୁ। ଦଳ୍, ଦଳିଯାଆ ଗୋଡ଼ରେ। ପିଲାଦିନେ ପୁରନ୍ଦର ଗାଁରେ ବି କେତେ ପିମ୍ପୁଡ଼ିମାନଙ୍କୁ ଗୋଡ଼ରେ ଦଳି ଦେଉଥିଲା। ସେତେବେଳେ କିନ୍ତୁ ତା' ମନରେ ନ ଥିଲା ଏତେ ହାହାକାର। କିନ୍ତୁ ବର୍ତ୍ତମାନ ସେ ଯେତେବେଳେ ପିମ୍ପୁଡ଼ିମାନଙ୍କର ଜୀବନକୁ ସ୍ୱୀକୃତି ଦେବାର ବିବେଚନା କରିପାରୁଛି, ସେତେବେଳେ ସେ ସେମାନଙ୍କୁ ଦଳିଦବ ? ଗର୍ଜନ ଛାଡ଼ି ପୁଣି ଥରେ ତା' ପିଠାରେ ଗୋଇଠା ପକେଇଲେ କମାଣ୍ଡର ସିଂ : ଦଳ୍, ଦଳିଯାଆ। ହାତକୁ ମୁଠା କରି, ନିଶ୍ୱାସ ରୁଦ୍ଧ କରି ଏକ ବିଚିକିଚିଆ ମୁହଁରେ ପୁରନ୍ଦର ଦଳି ଚାଲିଲା ପିମ୍ପୁଡ଼ିମାନଙ୍କୁ। ତା'ର ଅନୁଭବ ନଥିଲା ସେତେବେଳେ ଯେ ସେ ପିମ୍ପୁଡ଼ିମାନଙ୍କୁ ହତ୍ୟା କରୁଛି। କମାଣ୍ଡର ସିଂ ହା ହା କରି ହସି ଉଠିଲେ। ପୁରନ୍ଦରକୁ ସେ ଯୋଦ୍ଧା, ସୈନିକରେ ପରିଣତ କରୁଛନ୍ତି। ଦଳିସାରିଲା ପରେ ପୁରନ୍ଦର ତଳକୁ ଚାହିଁଲା। ତା' ଆଖି ଉବଡବେଇ ଗଲା, ଛାତି ହା ହୁତାଶ, ତଳେ ବିକ୍ଷିପ୍ତ, ମୃତ ପିମ୍ପୁଡ଼ିମାନେ। ପିମ୍ପୁଡ଼ିମାନଙ୍କର ଶବଗୁଡ଼ିକ କ୍ରମେ କ୍ରମେ ଏକ ଗଦା ଗଦା କଙ୍କାଳର ପାହାଡ଼ ଭଳି ତାକୁ ପ୍ରତୀୟମାନ ହେଲା। ସେ ମନେମନେ ଭାବିଲା, ଏମିତି, ଠିକ୍

ଏମିତି ସେ ସୈନିକରୂପୀ ମଣିଷଙ୍କୁ ଦଳିବ ଅଥଚ ହତ୍ୟା କରୁଛି ବୋଲି ମୋଟେ ତା'ର ଅନୁଭବ ରହିବ ନାହିଁ । ପୂରନ୍ଦର ଆଉ କ୍ଷଣେ ଅପେକ୍ଷା ନ କରି ସେଠୁ ଧାଇଁବାରେ ଲାଗିଲା । ଯେମିତି ସେ ଗୁଳି ମୂହଁରୁ ଧାଉଁଛି ।

x x x x x x x x x

ଆହ୍ୱାନ । ବାରବାର । ଫେରିଆସ, ଫେରିଆସ ପୁରନ୍ଦର, ଯୁଦ୍ଧ ନାଁରେ, ତୁମକୁ ସୈନିକ ସଜାଇବା ନାଁରେ ତୁମ ଦ୍ୱାରା ମଣିଷକୁ ହତ୍ୟା କରାଯାଉଛି । ତୁମେ ହତ୍ୟାକାରୀ, ହତ୍ୟାକାରୀ । ଆସ, ଫେରିଆସ ।

ସେ ଯେତେବେଳେ ଭାବିଛି ମୁଁ ହତ୍ୟା କରୁଛି ବୋଲି, ସେତେବେଳେ ସେ ଥରହର ହୋଇପଡ଼ିଛି । ହାତରୁ ବଂଧୁକ ଖସିପଡ଼ିଛି । କିନ୍ତୁ ପୁଣି ତାକୁ ବଂଧୁକ ଉଠାଇବାକୁ ପଡ଼ିଛି । ଯୁଦ୍ଧ କରିବାକୁ ପଡ଼ିଛି । ସେ ଫେରିପାରି ନାହିଁ । ସୈନିକ ପକ୍ଷେ ପଳାୟନ ଏକ ଦୁର୍ବଳତାର ପ୍ରତୀକ ବୋଲି ତା'ମୁଣ୍ଡରେ ଗୋଟେ ପରଓ୍ୱାନା ନଟ୍‌କେଇ ଦିଆଯାଇଛି । ଅନେକ ସମୟରେ ସାମ୍ନାରେ ଥିବା ଅପରପକ୍ଷ ସୈନ୍ୟଙ୍କୁ ଦେଖି ପୁରନ୍ଦରର ଆଖି ନିଶ୍ଚଳ ହେଇଯାଇଛି । ବନ୍ଧୁକ ନୀରବ ହେଇଯାଇଛି । ତା' ଛାତି ଚିତ୍‌କାର କରି ଉଠିଛି : ତମେ ତମ ବନ୍ଧୁକ ଫୋପାଡ଼ି ଦିଅ, ମୁଁ ମୋ ବନ୍ଧୁକ ଫୋପାଡ଼ି ଦଉଚି, ଦେଖିବ ତମ ମୋ ଭିତରେ କିଛି ପାର୍ଥକ୍ୟ ନାହିଁ ! କିନ୍ତୁ କମାଣ୍ଡର ସିଂ କହୁଥିଲେ : ଶତ୍ରୁପକ୍ଷର ମଣିଷ ତ ଦୂରର କଥା, ବିରାଡ଼ି, କୁକୁର ବି ତୁମର ଶତ୍ରୁ । ଏପରିକି ତାଙ୍କ ଗଛ ଡାଳରେ ବସିଥିବା କୋଇଲି, କପୋତ, ପୁଷ୍କରିଣୀର ଶୀତଳ ଜଳ, ବୃକ୍ଷଛାୟା ମଧ୍ୟ !

x x x x x x x x x

ସୀମାନ୍ତରେ ଯୁଦ୍ଧ । ବିଂଶ ଶତାବ୍ଦୀର ଶେଷ ଭାଗରେ ଦଣ୍ଡାୟମାନ ମଣିଷ ବି ସୀମାନ୍ତ ଚେତନାରେ ଉଦ୍‌ବେଗଶୀଳ । ଅଥଚ ପଥରସନ୍ଧିର ମଣିଷ ଯେତେବେଳେ ବଣ, ପାହାଡ଼ ପରିତ୍ୟାଗ କରି ଧାଉଁଥିଲା ଆଗକୁ ଆଗକୁ, ସେତେବେଳେ ସେ ପରିତ୍ୟକ୍ତ ଭୂମିକୁ ଆଦୌ ସ୍ମରଣ ରଖୁ ନ ଥିଲା । ସୀମାନ୍ତ ଯୁଦ୍ଧକୁ ଅଗ୍ରସର ହେବା ପୂର୍ବରୁ କମାଣ୍ଡର ସିଂ ତାଙ୍କ ଟ୍ରୁପ୍‌କୁ କହିଥିଲେ : ସର୍ବପ୍ରଥମେ ଶତ୍ରୁରାଷ୍ଟ୍ରର ସୀମାନ୍ତ ଗାଁ, ସହରକୁ ଧ୍ୱଂସ କରିଦିଅ । କେହି ଯେପରି ଜୀବନ୍ତ ନ ରୁହନ୍ତି । କାହିଁକି ଜାଣ ? ରାଷ୍ଟ୍ରର ସୀମାନ୍ତ ଅଧିବାସୀମାନେ ଅନ୍ୟମାନଙ୍କଠାରୁ ବେଶୀ ସଂସ୍କୃତି ସଂପନ୍ନ, ଯୁଦ୍ଧ ସଚେତନ, ସାହସୀ, କୌଶଳୀ ଓ ଜାତୀୟବାଦୀ ! ଗୋଟେ ଶତ୍ରୁ ରାଷ୍ଟ୍ରକୁ ଦୁର୍ବଳ କରିଦବାର ପ୍ରଥମ ପାହାଚ ସୀମାନ୍ତ ଅଞ୍ଚଳକୁ ଧ୍ୱଂସ କର । ଶିଶୁ ଓ ନାରୀମାନଙ୍କୁ ଅତ୍ୟାଚାର କରି ମାନବିକ ମୂଲ୍ୟବୋଧର କମ୍ପନ ସୃଷ୍ଟି କର ! ପ୍ରମାଣ କରିଦିଅ ଯୁଦ୍ଧ

ମାନବର ଅନ୍ୟ ସମସ୍ତ ମୂଲ୍ୟବୋଧକୁ ନଷ୍ଟ କରିଦେଇପାରେ ଏବଂ ସମର ଚେତନା ଅନ୍ୟ ସମସ୍ତ ଚେତନାଠାରୁ ଶକ୍ତିଶାଳୀ, ତୀବ୍ର ! ତା'ହେଲେ ସୈନିକ ହିଁ ପୃଥିବୀର ସବୁଠୁଁ ଗୁରୁତ୍ୱପୂର୍ଣ୍ଣ ବୋଲି ବିବେଚିତ ହେବ ।

ପୁରନ୍ଦର ଚମକି ଉଠିଥିଲା । ଛାତି ଭିତରର ସମସ୍ତ କୋଠରିରେ ଟେକା ବାଜିଗଲା ଭଳି ଲାଗିଲା । ତାକୁ ଅନୁଭବ ହେଲା, ତା'ର ହାତ ପାଦ ଥଣ୍ଡା ହେଇଆସୁଛି, ଏବଂ କାନ୍ଧରେ ଥିବା ବନ୍ଧୁକର ଭାରରେ ସେ ପାତାଳପୁରୀକୁ ଚାପି ହେଇଯାଇଛି ।

ସୀମାନ୍ତରେ ଘୋର ସମର । ଆର୍ତ୍ତନାଦ ଓ ଚିତ୍କାରରେ ରା ରା କରୁଛି ମାନବିକତା । ବନ୍ଧୁକ, ଗୁଳି, ଟ୍ୟାଙ୍କ୍, ତୋପ ଓ କମାଣର ଗର୍ଜନ । ଶବ୍ଦ ଓ ଧୂଆଁ, ଯନ୍ତ୍ରଣା ଓ ମୃତ୍ୟୁର ଘନନାଚ । ପୁରନ୍ଦର ଦେଖୁଛି ସାମ୍ନାରେ ଯବାନଗଣ ଧର୍ଷଣ କରି ଚାଲିଛନ୍ତି ନାରୀ ସମୂହ, ହତ୍ୟାକରି ଚାଲିଛନ୍ତି ଶିଶୁ ଓ ବୃଦ୍ଧ । ସଭ୍ୟତାର ଖେଳ ଆଉ ମଣିଷର ଖେଳ ହେଇ ନାହିଁ ! ହେଇଚି ଗୋଳା, ବାରୁଦ, ରଣକୌଶଳର ଖେଳ । ମୃତ୍ୟୁର ଖେଳ । ସମଗ୍ର ବିଶ୍ୱରେ ମଣିଷର ବହୁକଷ୍ଟ ସଂଚିତ ଶକ୍ତିକୁ ପରିଣତ କରାଯାଇଛି ସାମରିକ ଶକ୍ତିରେ, ସେ ଶକ୍ତିକୁ ପୁଣି ବ୍ୟବହାର କରାଯାଇଛି ସେଇ ମଣିଷ ବିରୁଦ୍ଧରେ । ମଣିଷର ସଂଚିତ ଶକ୍ତି ତା'ର ଧ୍ୱଂସରେ ହିଁ ନିୟୋଜିତ !

ଦୃଶ୍ୟମାନ୍ ଭୟଙ୍କରତାରୁ ନିବୃତ୍ତି ପାଇଁ ପୁରନ୍ଦର ଆଖି ବୁଜିଦେଲା । କିନ୍ତୁ ଯନ୍ତ୍ରଣାର ଆର୍ତ୍ତନାଦ ଦୋହଲାଇ ଦେଉଛି ଛାତି । ଆଖି ବୁଜିଲେ ବି ଦୃଶ୍ୟପଟ ଜୀବନ୍ତ । ଆଖି ଖୋଲିଲା ପୁରନ୍ଦର । ସାମ୍ନାରେ ନହୁନୁହାଣ ବୃଦ୍ଧା । ହାତ ମେଲେଇ ତା' ଆଡ଼କୁ ଅଗ୍ରସର ହେଉଛି । ଚିତ୍କାର ଛାଡୁଛି : ହା ପୁତ୍ର ! ହା ପୁତ୍ର !

ପୁରନ୍ଦର ଅନୁଭବ କଲା ଯେମିତି ତା'ର ମାଆ ତାକୁ ପ୍ରଶ୍ନ କରୁଛି : ତୁ ସୈନିକ ହେବା ପାଇଁ ମୁଁ ନାହିଁ କରୁଥିଲି । ଅଥଚ ତୁ ମୋ କଥା ମାନିଲୁ ନାହିଁ । ସୈନିକ ହେଲୁ ଏବଂ ଏଥିପାଇଁ ସୈନିକ ହେଲୁ ଯେ ତୋ ମାଆକୁ ଧର୍ଷଣ କରିବୁ, ରକ୍ତାକ୍ତ କରିବୁ ?

ଏଥର ପୁରନ୍ଦର ଶୁଣିଲା ବୃଦ୍ଧା ଜଣକ ଚିତ୍କାର ଛାଡୁଛନ୍ତି: ମୁକ୍ତି, ମୋତେ ମୁକ୍ତି ଦେ ପୁତ୍ର !

ଧନ୍ୟ ତୁ ମଣିଷ ! ମୁକ୍ତିର ଆହ୍ୱାନ ଏଠି ତୋର ମୃତ୍ୟୁସଙ୍ଗ । ମୁହୂର୍ତ୍ତେ ଅପେକ୍ଷା ନକରି ପୁରନ୍ଦର ବୃଦ୍ଧାର ଛାତିକୁ ବନ୍ଧୁକ ଲକ୍ଷ୍ୟ କଲା ଏବଂ ଟ୍ରିଗାର ଦବେଇ ଦେଲା ।

ବୃଦ୍ଧା ଶାନ୍ତ ନୀରବ ବରଫ । ପରେ ପରେ ଧାଇଁଲା ପୁରନ୍ଦର । ସୀମାନ୍ତ ନଗ୍ରର ଭିତର, ଭିତରକୁ । ସମରବାହିନୀର ସୈନ୍ୟରୂପେ ନୁହେଁ, ଏକ ମୁକ୍ତିଦାତା ରୂପେ । ଗୁଳିବିଦ୍ଧ ନରନାରୀ, ଚିତ୍କାର ଛାଡୁଥିବା ଶିଶୁ, ସୈନିକମାନଙ୍କ ଦ୍ୱାରା ସଂଘବଦ୍ଧ ଭାବରେ ଯୌନଲୁଣ୍ଠିତା ନାରୀ, ଯେଉଁମାନେ ଯନ୍ତ୍ରଣାର ଶିକୁଳିରୁ ମୁକ୍ତି ପାଇଁ ଚିତ୍କାରରତ, ସେଇମାନଙ୍କ ଛାତିରେ ମୁକ୍ତିବୀଜ ଗୁଳି ଥୋଇଦେଇ ଯିବାରେ ଲାଗିଲା । ପୁରନ୍ଦରର

ମଥାରେ ପ୍ରଶ୍ନଟିଏ ମୁଖ ମେଲୁଥିଲା । ସୈନ୍ୟବାହିନୀ ମଣିଷଙ୍କୁ ଏମିତି ବିକଳାଙ୍ଗ କରିବାରେ ଲାଗିଥିବେ ଏବଂ ସେ ସେଇ ବିକଳାଙ୍ଗମାନଙ୍କୁ ମୁକ୍ତି ଦେବାରେ ଲାଗିଥିବ ? ମଣିଷର ଏଇ ମୃତ୍ୟୁ ମୁକ୍ତି କେତେ ଦିନ, କେତେଦିନ ? କମାଣ୍ଡର ସିଂଙ୍କୁ ସେ ଗାଳି ଦେବାରେ ଲାଗିଥିଲା : ସ୍କାଉଣ୍ଡ୍ରାଲ୍ ! ତମେ କ'ଣ ବୁଝିବ ଯେ ମଣିଷର ସଂଗ୍ରାମ ପାଇଁ ଯୁଦ୍ଧ ଜରୁରୀ ! କିନ୍ତୁ ଯୁଦ୍ଧ ପାଇଁ ଯୁଦ୍ଧ, ଉପନିବେଶ ପାଇଁ ଯୁଦ୍ଧ, ଜାତୀୟବାଦ ନାମାଙ୍କିତ ଏକ ବୀଭତ୍ସ ପାଗଳାମି !

ଶେଷରେ ପୁରନ୍ଦର ନିଷ୍ପତ୍ତି ନେଲା : ନା, କେବଳ ଯନ୍ତ୍ରଣାରୁ ମୁକ୍ତି ଦେବାଟା ଯଥେଷ୍ଟ ନୁହେଁ । ତା' ସହ ଏଇ ବୀଭତ୍ସ ପାଗଳମାନଙ୍କୁ ପାଗଳାମିରୁ ବି ମୁକ୍ତି ଦେବା ଜରୁରି ।

ଜୁନିଅର କମାଣ୍ଡର ନଟ୍‌ମ୍ୟାନ୍ ଯେତେବେଳେ କମାଣ୍ଡର ସିଂଙ୍କୁ ପ୍ରସ୍ତାବ ଦେଇଥିଲେ ସୀମାନ୍ତ ଅଞ୍ଚଳକୁ ବୋମାଫିଙ୍ଗି ଅଧିକାର କରିବାକୁ, ସେତେବେଳେ କମାଣ୍ଡର ସିଂ କହିଥିଲେ : ନା, ସୀମାନ୍ତ ଅଞ୍ଚଳରେ ବୋମା ନିକ୍ଷେପ କରିବା ଅର୍ଥ ନିଜର ସୈନ୍ୟବାହିନୀ ଦୁର୍ବଳ ବୋଲି ପ୍ରମାଣିତ କରିଦେବା ! ଏହି ବୋମା ପ୍ରସଙ୍ଗଟି ପୁରନ୍ଦରର ସ୍ମରଣ ଆସିଲା । ତା'ର ଆଖି ଯୋଡ଼ିକ ରଙ୍ଗମୟ ହେଇ ଉଠିଲା । ତତ୍‌କ୍ଷଣାତ୍ ସେ ଶକ୍ତିଶାଳୀ ବୋମା ହାତପଇଠ କରିବାରେ ଲାଗିଲା ।

ସୀମାନ୍ତ ଅଞ୍ଚଳରେ ଘନଘୋର ପୀଡ଼ନର କବନ୍ଧ ଅଟ୍ଟହାସ୍ୟର ଦୋଳି ଖେଳୁଥିଲା ବେଳେ ପୁରନ୍ଦର ଅତି ସତର୍କ ଭାବରେ ଦୁଇଟି ଶକ୍ତିଶାଳୀ ବୋମା ନିକ୍ଷେପ କଲା ଏବଂ ଧାଇଁବାକୁ ଲାଗିଲା । ପ୍ରାଣମୂର୍ଚ୍ଛା । ଧାଇଁଲା, ଧାଇଁଲା । ଯେମିତି ସେ ଯନ୍ତ୍ରଣାସକ୍ତ କେତେକ ଜୀବନଙ୍କୁ ମୁକ୍ତିଦେଇ ଘରକୁ ଫେରୁଛି । ବାହୁଡୁଛି ।

x x x x x x x x x

ପ୍ଲାଟଫର୍ମ । ରକ୍ତ ଝରଝର । ରାତ୍ରୀ ଦି'ଟା ଚମକୁଛି । କମ୍ପାର୍ଟମେଣ୍ଟ ଖୋଜୁଥିବା ଗାଉଁଲି ସ୍ତ୍ରୀ ଲୋକଟି କୌଣସି ନା କୌଣସି କମ୍ପାର୍ଟମେଣ୍ଟକୁ ଚଢ଼ି ଯାଇଛି । ତା' ଗାଡ଼ି ଛାଡ଼ି ଦେଲାଣି । କୌଣସି ନା କୌଣସି ଭିକାରୁଣୀ ନିକଟରେ ଲଗାଲଗି ହେଇ ଶୋଇ ଯାଇଛି ବୟସ୍କ ଭିକାରୀ । ପାଗଳ ସନାତନ ସିଗ୍‌ନାଲ ଖୁଣ୍ଟ ଆଲୁଅକୁ ଅପଲକ ଆଖିରେ ଚାହିଁ ରହିଛି । ହାତ ପତେଇଥିବା ଆଦିବାସୀ ଝିଅଟି ରାହା ନପାଇ ହାତ ତଳକୁ ଖସାଇଦେଇ କୁଆଡ଼େ ଚାଲିଗଲାଣି । କୌଶିକ୍ ଅପେକ୍ଷାର ଯନ୍ତ୍ରଣାରୁ ନିବୃତ୍ତି ନେବା ଲାଗି ବେଞ୍ଚ ଉପରେ ଶୋଇ ପଡ଼ିଲାଣି । ତା' ପୂର୍ବତନ ପ୍ରେମିକାର ଗାଡ଼ି ଆହୁରି ପହଞ୍ଚିନାହିଁ । ଶିଳ୍ପୀର ଆଖି ହତାଶାର ଆହୁଲାରେ କାହିଁ କାହିଁ ଭାସି ଯାଉଛି । ପ୍ଲାଟ୍‌ଫର୍ମରେ ଶକ୍ତ ଚରିତ୍ରର ଅଭାବ । ଦାର୍ଶନିକ ତାଙ୍କର ଶେଷ ସ୍ଲୋଗାନ୍ : ''ପ୍ଲାଟ୍‌ଫର୍ମ ସବୁକିଛିକୁ ବୁଡ଼େଇଦବ, ବି କେୟାର୍ ଫୁଲ୍'' ସମାପ୍ତ କରି ରେଲ ଧାରଣା କଡ଼େ କଡ଼େ କୁଆଡ଼କୁ ଚାଲିବାରେ ଲାଗିଛନ୍ତି । ପ୍ଲାଟ୍‌ଫର୍ମ । ରକ୍ତ ଝର ଝର । ପୁରନ୍ଦର

ଆଉଜିଥିବା ଖୁଣ୍ଟରୁ ସିଧା ଛିଡ଼ାହେଇ ପଡ଼ିଲା । ତା' ମୁହଁରେ ଏକ ସଦ୍ୟ ଅନୁଭବର ରଶ୍ମି ଛାଇଗଲା ହଠାତ୍ ଟ୍ରେନ ଆସିବାର ଘଣ୍ଟି ବାଜି ଉଠିଲେ ସତର୍କ ଓ ବ୍ୟଗ୍ର ହେଇ ଉଠୁଥିବା ଯାତ୍ରୀଟି ପରି ! ସେ ଅନୁଭବ କଲା ଏଠି ସବୁ କିଛି ନୀରବ । ନିଷ୍ପନ୍ଦ । ସେ ଏତେ ସମୟ ଧରି ପ୍ଲାଟଫର୍ମର ଶେଷ ଖୁଣ୍ଟକୁ ଆଉଜି ଛିଡ଼ା ହେଇଥିଲା ଏବଂ ଆଜୀବନ ସେ ଯଦି ସେହିପରି ଛିଡ଼ାରୁହେ କାହାରି କିଛି ଯାଏ ଆସେନା । ପ୍ଲାଟଫର୍ମର କିଛି କ୍ଷତି ଘଟେନା । ଆଃ, ପ୍ଲାଟ୍‌ଫର୍ମ ! ତମରି ଯୋଗୁଁ ଏଇଠି ସବୁକିଛି ଅଟକି ଯାଇଛି । ସମସ୍ତ ମାନବିକ ସଂଗ୍ରାମ ଏଇଠି ନିର୍ବାପିତ ହେଇଯାଇଛି । ଯାହାର ପରିଣତିରେ ସୀମାନ୍ତରେ ଘନଘୋର ଯୁଦ୍ଧ । ଏତକ ଭାବିନେଇ ସାରିଲା ପରେ କ'ଣ ହେଲା କେଜାଣି ସେ ଉଲ୍ଲସିତ ହେଇ ଉଠିଲା ଏବଂ ପ୍ଲାଟ୍‌ଫର୍ମରେ ଝୁଲୁଥିବା ଘଣ୍ଟା ବାଡ଼େଇବାକୁ ଲାଗିଲା : ଟଂ ଟଂ ଟଂ ଟଂ ଟଂ ।

ଘମାଘୋଟ ହଇଚଇ । ଉପସ୍ଥିତ ପ୍ଲାଟ୍‌ଫର୍ମବାସୀ ବ୍ୟଗ୍ର ଓ ଉଦ୍‌ବେଗ । କୋଉ ଗାଡ଼ି ଆସିଲା, କୋଉ ଗାଡ଼ି ? ଉଠ, ଉଠ୍, ଜାଗ, ଜାଗ ! ପ୍ଲାଟଫର୍ମ କର୍ତ୍ତୃପକ୍ଷ ସତର୍କ ଘଣ୍ଟି କିଏ ଦେଲା, କିଏ ଦେଲା ବୋଲି ହୁରି ଛାଡ଼ି ଇତସ୍ତତ ଧାଆଁ ଧାପଡ଼ା କଲାବେଳକୁ ଧାଇଁଲା ପୁରନ୍ଦର । ଖୁବ୍ ଜୋର୍‌ରେ ଧାଇଁଲା, ରେଲ ଲାଇନ୍ କଡ଼େ କଡ଼େ । ଧାଇଁଲା ଏବଂ ଧାଇଁଲା । ପ୍ଲାଟ୍‌ଫର୍ମର ଅଭ୍ୟସ୍ତ ନିୟମକୁ କିଏ ଭାଙ୍ଗିଲା, ରେଲ୍‌ୱେ ପୋଲିସ୍ ସନ୍ଧାନରେ ଲାଗିପଡ଼ିଲେ ।

ସେତେବେଳେ ରେଡ଼ିଓରୁ ଶୁଭୁଥିଲା ଏକ ବିଶେଷ ଘୋଷଣା : ପୁରନ୍ଦର ନାମକ ଜଣେ ପଦାତିକ ସୀମାନ୍ତ ଯୁଦ୍ଧରେ ଦେଶଦ୍ରୋହୀ କାର୍ଯ୍ୟ କରି ଆଜକୁ ଦଶଦିନ ହେଲା ଫେରାର୍ । ତାଙ୍କର ବର୍ଣ୍ଣ କଳା । ହୃଷ୍ଟପୁଷ୍ଟ ସ୍ୱାସ୍ଥ୍ୟ । ଲମ୍ବା ପାଞ୍ଚଫୁଟ୍ ଛଅ ଇଞ୍ଚ । ଡାହାଣ ଗାଲରେ ଅଧଇଞ୍ଚ ବ୍ୟାସର ଏକ କଳାଜାଇ । କୌଣସି ବ୍ୟକ୍ତି ତାଙ୍କୁ ଜୀବନ୍ତ ବା ମୃତ ଧରାଇଦେଲେ ଦଶହଜାର ଟଙ୍କା ପୁରସ୍କାର ପାଇବେ ।

ହଠାତ୍ ଦେଖାଗଲା ଶିଙ୍କୀଟି ଏକ ବିଚିତ୍ର ଅନୁଭବରେ ପୁରନ୍ଦରକୁ ଅନୁସରଣ କରିବାରେ ଲାଗିଛି ।



[*ତାଲିପା : ମରିସସ୍ ଦ୍ୱୀପର ଏକ ବୃକ୍ଷ, ଯେକି ଶହେ ବର୍ଷ ପରେ ମାତ୍ର ଗୋଟିଏ ଫୁଲକୁ ଜନ୍ମ ଦେଇ ମରିଯାଏ]

[କଥା : ସେପ୍ଟେମ୍ବର ୧୯୮୭]

# ଗଣନାୟକ

ଅମିସା ରାତି ଅନ୍ଧାରର ନହଡ଼ିରେ ମହୀପୁର ଗାଁର ଘଞ୍ଚ କଳା ମଶାଣି । ଝଙ୍କାଳିଆ ବରଗଛର ସନ୍ଧିରୁ ପେଚାର ହୁଟ୍ ହୁଟ୍, କାଠଖୁମ୍ପାର ଠକ୍ ଠକ୍ ଆଉ ତାଳଗଛର ବରଡ଼ାରୁ ଫଡ଼୍‌ଫାଡ଼ । ଖଜୁରି ଗଛ ତଳେ ଭଙ୍ଗା ଆଟିକା, ବାଡ଼ି, ଭଙ୍ଗାଛତା, ଛୋଟବଡ଼ ହାଡ଼ ଖଣ୍ଡ ଖଣ୍ଡ, ଖପୁରୀ, ଛିଡ଼ା ଖଜୁରୀ ପଟିଆ, ସପ- ଖରା ବର୍ଷାରେ କଳା ଓ ମୁର୍କୁଟିଆ । ଏବେ ଏବେ ଲିଭିଯାଇଥିବା ଚୁଇରୁ ପୋଡ଼ା ମାଂସର ଧୂଆଁ ଓ ଧୂଆଁ, ମଣିଷର ମାଂସ । ଶିଆଳ କେତୋଟିଙ୍କର ଏପାଖ ସେପାଖ ଦଉଡ଼ ଓ କେତେବେଳେ ମଶାଣି ଆଲୁଅର ଚକ୍‌ଚକ୍, ମଣିଷ ଜୀବନର ଶେଷ ଆଶ୍ରୟ, ଶେଷ ସନ୍ତକ, ସବୁ ପଥର ଶେଷ ବିନ୍ଦୁ ଅଥଚ ତାକୁ କେଉଁଦିନୁ ଏକ ଭୟ ଓ ଭୟଙ୍କରତାର ବାଡ଼ ଭିତରେ ଲୁଚାଇ ରଖିଚି ମଣିଷ । ମଣିଷର ଶେଷକୁ ମଣିଷ ସହିପାରେନି ।

ରାତି ଗହିରେଇଚି । ଶୂନ୍‌ଶାନ ଗାଁ । ଖାଁ ଖାଁ । ଝିଙ୍କର ଝିଁ ଝିଁ ନୀରବତାକୁ ଭେଦି ଚାଲିଛି । ମହୀପୁର ମଶାଣି ପାଖାପାଖି ତିନିଛକିରେ ଗୌରବାବୁର ଦଶଦିନିଆ ମାଲଆଟିକା ଥୋଇଦେଇ ମାଲଭାଇମାନେ ଅଫେରାମୁହାଁ ଫେରୁଥିଲେ । ଗୌରବାବୁର ପ୍ରେତ ପାଇଁ ମାଲଆଟିକାରେ ଯେଉଁ ସୁଆଦି ସଜାହେଇଚି ନା, ଗୌରବାବୁ ପା ପହଣାମାଛ, ରସଗୋଲା, ବଡ଼ି ବାଇଗଣ ତରକାରି, ଲୁଚି, ବୁଟ ଡାଲମାକୁ ବେଶ୍ ଭଲ ପାଉଥିଲେ; ସେ ସବୁ ସଜାହେଇଚି, ଗୌରବାବୁର ପ୍ରେତ ବେଶ୍ ସନ୍ତୁଷ୍ଟ ହେଇଯିବ ! ମାଲଆଟିକା ରଖିବା ସଙ୍ଗେ ସଙ୍ଗେ ମଶାଣିର ବରଗଛ ତଳୁ ଗୋଟେ ଡେଙ୍ଗା କଳାମିଚା ବୁଢ଼ା ଅଧା ଦାନ୍ତକୁ ଦେଖାଇ ହସିଉଠିଲା ଏବଂ ଜୋର୍ ପାହୁଲ ପକେଇ ହାତରେ ବାଡ଼ି ଧରି ଆସି ପହଞ୍ଚିଗଲା ମାଲଆଟିକା ନିକଟରେ । ଧରିଥିବା ବାଡ଼ିରେ ତିନିଛକିର ଭୂଇଁରେ ତିନିଥର ବାଡ଼େଇଲା ଏବଂ ବସିପଡ଼ି ମାଲଆଟିକାକୁ କୋଳରେ ଧରି ଗହିରେଇକି ଚାହିଁଲା । "ଏଇ ଦେଖ୍ ଗୌରବାବୁ ! ତୋ ଖାଇବା

ଜିନିଷ ମୁଁ ଛଡ଼ାଇ ନଉଚି, ଏଇ ଦେଖ୍ ! ଏଣିକି ତୁ ବାବନାଭୂତ ହେଇ ବୁଲୁଥା ! ତୋ ଲାଗି ଆଉ ମାଲଆଟିକା କିଏ ଦବନା ତୁ ମୁକ୍ତି ପାଇବୁ ?''- ମନେ ମନେ ଏତକ କହିଲା ସେ ଗୋଦରାଗୋଡ଼ିଆ ବୁଢ଼ାଲୋକଟି । ପରକ୍ଷଣରେ ତା' ଆଖି କଅଁଳିଲା, ଉଦାସ, ଉଦାସ । ମୁହଁରେ ଯନ୍ତ୍ରଣାର କଣ୍ଟା ଫୋଡ଼ିଯାଉଥିଲା ଟପ୍‌ଟାପ୍ । ଆଖିପତାରୁ ଚିପୁଡ଼ି ଆସିଲା ଲୁହ ବିନ୍ଦୁ ବିନ୍ଦୁ । ସେ ଚାରିଆଡ଼କୁ ଚାହିଁଲା । ମଶାଣି, ବରଗଛ, ଖପୁରିହାଡ଼, ଜୁଇ, ଅନ୍ଧାର, ଅମିସା ଏସବୁ ଆଦୌ ଭୟଙ୍କର ଲାଗିଲା ନାହିଁ; ବରଂ ଯେମିତି ସେ ତା'ର ଏକ ନିର୍ଭରଯୋଗ୍ୟ ଆଶ୍ରୟରେ ପରଷାଯାଇଥିବା ଖାଦ୍ୟ ଖାଇବାକୁ ବସିଚି । ସେ ଆଖିଲୁହ ପୋଛିଲା । ତା' ଆଡ଼କୁ ଶିଆଳ ବା କୁକୁରଟିଏ ଆସୁଥିବାର ଶବ୍ଦ ଅନୁଭବ କରି ଧରିଥିବା ବାଡ଼ିରେ ପୁଣି ମାଟିରେ ଦୁଇ ତିନି ପାହାର କଷିଲାରୁ କୌଣସି ଜୀବଟିଏ ଦୌଡ଼ି ପଳାଇବାର ଶବ୍ଦ ଧୀରେ ଧୀରେ ଅପସରିଗଲା । ମାଲଆଟିକାରୁ ବେଶ୍ ମହମହ ବାସୁଥିବା ଖାଦ୍ୟ କାଢ଼ିଆଣି ହାତରେ ଧରିଲା । ସେତେବେଳେ ତା'ର ମନେପଡ଼ିଲା ଗୌର ସିଂର ରାଗ । ପ୍ରଚଣ୍ଡ କଡ଼ା ସ୍ୱର : ''ଶଳା, ହାରାମଖୋର୍ ! ମୋତେ କହୁଚୁ - ତୁ ଭୂତ ! ମୁଁ ଭୂତ ଭଳି ସମସ୍ତଙ୍କୁ ଲାଗିଚି, ସମସ୍ତଙ୍କୁ ଶୋଷୁଚି, ତୋତେ ଯଦି ମୁଁ ବାବନାଭୂତ କରି ନ ଛାଡ଼ିଚି, ତା'ହେଲେ ମୁଁ ଗୌର ସିଂ ନୁହେଁ, ବୁଝିଲୁ !'' ତା' ସହ ଗୌର ସିଂର ଚାପୋଡ଼ା, ବିଧା ବାଜିଥିଲା ପଦନା ବୁଢ଼ା ଉପରେ । ଗାଁର କେତେକ ଲୋକ ଜମିଥିଲେ ସେଠି, କିନ୍ତୁ କେହି ପ୍ରତିବାଦଟିଏ କରି ନ ଥିଲେ, କା'ରି ରକ୍ତ ଗରମ ନଥିଲା ।

ପଦନାର ମୁହଁ ରଙ୍ଗ ରଙ୍ଗ ହେଇଉଠିଲା - ବିକଟାଳ । ଦାନ୍ତ କଡ଼ମଡ଼ କଲା । ଯେମିତି ମେଘ ଅନ୍ଧାର ରାତିରେ ପିଶାଚ ଖପୁରି ହାଡ଼କୁ ଧରି କଡ଼ମଡ଼ କରି ଚୋବାଉଚି । ସେ ହାପୁଲା ହାପୁଲା କରି ମାଲଆଟିକାରୁ ସବୁ ଖାଇନେଲା ଏବଂ ଆଟିକାଟାକୁ ଧରି ତଳେ ଢୋ କରି କଚାଡ଼ିଦେଲା । ସେଇଠି ସେ କିଛି ସମୟ ଧରି ବସି ରହିଲା ଏବଂ ଭାବିନେଇ ଆଶ୍ଚର୍ଯ୍ୟ ହେଇଗଲା - କାଇଁ, ସମସ୍ତେ ତ କହନ୍ତି ମାଲଆଟିକା, ପ୍ରେତ ଆଟିକା, ତାକୁ ଖାଇବା ତ ଦୂରର କଥା, ସେ କଥା ଚିନ୍ତାକଲେ ବି ଭୟଙ୍କର ବିପଦ । ଆଜି ସେ ସବୁ ଖାଇଗଲା, କାଇଁ କିଛି ହେଲାନି ! ସେଦିନର ଭୋକ ଦାଉରୁ ରକ୍ଷା ପାଇ ପଦନାବୁଢ଼ା ସେଇ ଅନ୍ଧାରେ ଅନ୍ଧାରେ ଫେରିଲା ମହୀପୁର ଗାଁ ଭିତରକୁ । ଗାଁ ଠକୁରାଣୀ ମନ୍ଦିରବେଢ଼ାରେ ଗାମୁଛା ପାରି ଶୋଇପଡ଼ିଲା । ନିଦ ଆସିବା ପୂର୍ବରୁ ତା' ମୁହଁରେ କାଳ ହସଟେ ଚହଟିଲା । ''ଯା ହଉ, ଏଣିକି ସୁଖାଦ୍ୟ ପାଇବାର ଗୋଟେ ରାସ୍ତା ପାଇଗଲା ସେ ! ଏଣିକି ସେ ମହୀପୁର ଗାଁ, ଆଉ ଆଖପାଖ ତିନିଚାରି ଖଣ୍ଡ ଗାଁର ମଲାଲୋକଙ୍କର ଦଶଦିନର ହିସାବ ରଖିବ । ଏଣିକି ପ୍ରତିଦିନ ଜଣେ ଜଣେ ମରନ୍ତେ କି ? ଏଣିକି ତା'ର ଭୂତପ୍ରେତଙ୍କୁ ଭୟ ନାହିଁ । ସେ ନିଜେ ହିଁ

ସମସ୍ତଙ୍କର ପ୍ରେତ ହେଇ ବୁଲିବ, ମାଲଆଟିକା ଖାଇବ । ଭଲ ହଅନ୍ତା ଗୌରସିଂର ସବୁ ଚାମଚା ଗୋଟାଏ ପରେ ଗୋଟାଏ ନଉଟନ୍ତେ କି ? ଗୌର ସିଂ ଆଉ ତା'ର ଚାମଚାମାନଙ୍କ ଭୟରେ କେହି ତୋରାଣି ମୁନ୍ଦେ ଦିଅନ୍ତି ନାହିଁ । ଭିକ ମାଗିଲେ କହନ୍ତି : "ଯା, ଆଗ ଗୌରବାବୁଙ୍କ ଘରୁ ଆଣିଲେ, ତା'ପରେ ଆମେ ଦେବୁ ।" ସବୁଗୁଡ଼ାକ ମାଇଚା, ଅଣପୁରୁଷା । ଗୌର ସିଂ ଭୟରେ କେହି ତାକୁ ପିଣ୍ଡା ଚଢ଼ାଇ ଦିଅନ୍ତିନି !... ଛି, ଏଗୁଡ଼ାକ ମଣିଷରେ ଲେଖା ! ଏଭଳି ଚିନ୍ତୁ ଚିନ୍ତୁ ପଦନା ବୁଢ଼ାର ନିଦ ଘାରି ଆସିଲା । ପୂରିଲା ପେଟର ନିଦ ପେଟେ ।

x x x x x x x x x

ଖରା ପଟାଳି ମେଲି ସାରିଲାଣି । ତଥାପି ବି ଠାକୁରାଣୀ ପିଣ୍ଡାରେ ପଦନା ଚାରିକାତ ମେଲେଇଚି । କି ଅଜବ ! କାଉ କା' କହିବା ଆଗରୁ ପଦନା ମହୀପୁର ଗାଁ ଛାଡ଼ିସାରିଥାଏ, ଆଜି ଏ କି ଅଘନ ? ଓ... ଗୌର ସିଂ ମରିଯାଇଛି ବୋଲି ଅଚିନ୍ତା ନିଦରେ ବେଶ୍ ସୁଖସପନ ଦେଖି ଆରାମରେ ନିଦେଇଯାଇଚି ପରା !

ଗାଁ'ର କେତେ ବଗୁଲିଆ ଟୋକା ଠାକୁରାଣୀ ମନ୍ଦିର ବେଢ଼ା କୂଅରୁ ପାଣି ଆଣି ତା' ନାକରେ କାନରେ ପକାଇଲାରୁ ଉଠିପଡ଼ିଲା ପଦନା । ବେଶ୍ ଫୁଲ୍‌ଫୁଲିଆ, କୁଲୁକୁଲିଆ ଦୁଶୁଚି ତା' ମୁହଁ । ଯିମିତି ସେ ଗଡ଼ ଜିଣିଛି । ମୁରବୀ ଢଙ୍ଗରେ ଏପାଖ ସେପାଖ ଠିଆ ହେଇଥିବା ଗାଁ ଟୋକାଙ୍କ ଆଡ଼କୁ ଲକ୍ଷ୍ୟ କରି କହିଲା- ତମ ସମସ୍ତଙ୍କ ପାଇଁ ତ ମୋ ଜୀବନଟା ମାଟି ହେଇଗଲା, ବାରଓଳି ଭିକାରୀ ହେଲି । କିନ୍ତୁ ମନେରଖ, ମୁଁ ଛାଡ଼ିବା ଲୋକ ନୁହେଁ, ତମେ ସବୁ ମରିଗଲା ପରେ ବି ତମ ପ୍ରେତମାନଙ୍କ ସହ ମୁଁ ଯୁଝିବି, ମନେରଖ । ଦେଖିଲନି, ଗୌର ସିଂ ମୋତେ ଭିକାରୀ କଲା, ଅଘରୀ, ବାରଦୁଆରୀ କଲା, ତେବେ ବି ମୁଁ ମୁଣ୍ଡ ନଇଁନି । ତମେ ସବୁ ମେଞ୍ଚଡ଼ ଟୋକାଏ ମୋ ସାଙ୍ଗରେ ଟାପରା ଖେଳୁଚ ? ଷଢ଼େଇଗାଣ୍ଡିଆଗୁଡ଼ାକ, ନାତେ ପକେଇଲେ ଛଅମାଇଲ ଦୂରରେ ମାଟି କାମୁଡ଼ି ପଡ଼ିବ, ମୋ ସାଙ୍ଗେ ଗେଲ ଲାଗୁଛନ୍ତି ! ଖବରଦାର !

ଶେଷଆଡ଼କୁ ପଦନାର ମୁହଁ ବିକୃତ, ଭୟଙ୍କର ଦେଖାଗଲା । ଟୋକାଏ ଛାନିଆ ଖାଇଗଲେ । ପଦନା ଉଠିଲା । ଚାରିଆଡ଼କୁ ନିରିଖେଇଲା ଏବଂ ଗାଁ' ରାସ୍ତାରେ ଗୋହିରୀ ଆଡ଼କୁ ମୁହାଁଇଲା । ସେଆଡୁ "ହରିବୋଲ, ହରିନାମ ସତ୍ୟ ହୈ" ଧ୍ୱନି ଭାସିଆସୁଥିଲା । ସେଇଠି ଛିଡ଼ା ହେଇପଡ଼ିଲା ପଦନା । ଜଗ ମିଶ୍ରର ଶବ ଧରି ମିଶ୍ର ସାଇବାଲାଏ ଯାଉଥିଲେ ମଶାଣି । ଛ' କାଠିଆ ଧରି । ପଦନା ଓଠରେ ଓଠେ ହସ ବିଜୁଳିର ଚମକ ଭଳି ଚମକିଗଲା । ଏବଂ କେଉଁ ଏକ କାଳଭୋକର ଦାଉରେ ପଦନାର ପାଟିଟା ଆଁ ହେଇ ଉଠିଲା । ଏହି ସମୟରେ ପଦନାର ବଡ଼ ପୁଅ ବଜରା ଆଡ଼ ଆଡ଼ ହେଇ ତା'

ଆଗରେ ଚାଲିଯାଉଥିଲା । ପଦନା ସେଇଠି ମେଞ୍ଚେ ଛିପ 'ଥୁ' କରି ତଳକୁ ପକାଇଲା । କହିଲା- ଘୁଅଖିଆଟା !

ବଜରା ପଛକୁ ବୁଲିପଡ଼ି ରଙ୍ଗ ରଙ୍ଗ ଆଖିରେ ପଦନାକୁ ଚାହିଁବାରୁ ପଦନା ଗୁରୁଗୁରୁ ହେଇ ଚାଲିଲା ପୁଣି ଆଗକୁ-''ନାଁ ରଖିଥିଲି ବଜ୍ର- ବଜରା-ଥୁ-ନଫଙ୍ଗା, ଘରଭଙ୍ଗା ଗୌର ସିଂର ଅଇଁଠାଚଟା ହେଇଥାଆନ୍ତୁ !''

ବଜରାକୁ ଦେଖିବାଠୁଁ ପଦନାର ପାଦ ଆହୁରି ଧୀର, ଆହୁରି ଅବଶ ହେଇଆସିଲା । ବଗ ପଡ଼ିଆର ପଞ୍ଚବଟୀ ଛାଇରେ ବସିପଡ଼ିଲା ସେ । ଖଣ୍ଡ ଅଞ୍ଚଳରେ ନାଁ ଡାକ ପଦନା ବାଡ଼ିଆ, ପାଞ୍ଚହାତିଆ କଳା ମର୍ଦ ଆଜି ବୁଢ଼ା ହେଇଗଲା ବୋଲି କେଉଁ କାରଣରୁ ଭିକ ମାଗି ବୁଲୁଚି, ନିଜ ଆଖି ଲୁହ ନିଜେ ପୋଛୁଛି, କାହାକୁ ବା ଅଜଣା !

ପଦନା ଯଦି ବି ହାତରେ ଦି'ଖଣ୍ଡ ବାଡ଼ି ଧରି ବୁଲାଉଚି, ସେତେବେଳେ ତା' ଉପରକୁ ଟେକା ଫୋପାଡ଼ିଲେ ତା' ଦିହରେ ନ ବାଜି ବାଡ଼ିରେ ବାଜି ଫେରିବ ! ବାଡ଼ି ଖେଳି କେତେ ନା କେତେ ବାଡ଼ିଆଙ୍କୁ ହରେଇ ସେ ପୁରସ୍କାର ପାଇଚି ! କେତେ ନା କେତେ ଲୋକଙ୍କୁ ସେ ରକ୍ଷା କରିଛି ଏ ଗାଁରେ । କେତେ ନା କେତେ ଧମକକୁ ସେ ଉଡ଼େଇଦେଇଚି ବାଏଁ ବାଏଁ । ଜଳସେଚନ ପଏଣ୍ଟ ବସେଇବା ଘଟଣାରୁ ଆରମ୍ଭ ହେଇଥିବା କଳି ବଢ଼ି ବଢ଼ି ଶେଷରେ ଇମିତି ସ୍ତରକୁ ଆସିଯାଇଥିଲା ଯେ ବଜାର ଉପରେ ଗୌର ସିଂକୁ ତା'ର ବିରୋଧୀପକ୍ଷ ସବୁ ଯେତେବେଳେ ମାରିବା ପାଇଁ ଘେରିଯାଇଥିଲେ, ସେତେବେଳେ ଏ କଥା ଶୁଣି ପଦନା ଗୋଟେ ଗୁମୁଟିରୁ ଖୁଣ୍ଟେ ଓଟାରି ଆଣି ଏକାଏକା ଯୁଝିଥିଲା ପନ୍ଦର କୋଡ଼ିଏଙ୍କ ସହ । କାହାର ମୁଣ୍ଡ ଫଟେଇଚି ତ, କାହାର ନେଡ଼ି ଭାଙ୍ଗିଛି ଏବଂ ଉଦ୍ଧାର କରିଥିଲା ଗୌର ସିଂକୁ ।

କିନ୍ତୁ ଯେତେବେଳେ ଗାଁ'ରେ ପକ୍କା ମାଇନର ସ୍କୁଲ ହବାକଥା ହେଲା, ଠାକୁରାଣୀ ମନ୍ଦିର ପକ୍କା ହେବାକଥା ଗାଁ' ମିଟିଂରେ ପଡ଼ିଲା, ସେତେବେଳେ ସରପଞ୍ଚ ଗୌର ସିଂ କହିଥିଲା- ''ମାଇନର ସ୍କୁଲ ପକ୍କା ହବାକୁ ପାଞ୍ଚହଜାର ମୁଁ ଦେବି, ବାକି ଟଙ୍କା ଗାଁ' ବାଲାଏ ଚାନ୍ଦା କରି ଦେବେ । ସ୍କୁଲ ନାଁ ହବ 'ବିପିନ ସିଂ ମାଇନର ସ୍କୁଲ' - ମୋ ବାପା ନାଁ'ରେ । ଠାକୁରାଣୀ ମନ୍ଦିର ପକ୍କା କରିବା ପାଇଁ ମୁଁ ଦେବି ପାଞ୍ଚହଜାର ଆଉ ବାକି ଟଙ୍କା ଗାଁ'ବାଲା ଚାନ୍ଦା କରି ଦିଅନ୍ତୁ । ମନ୍ଦିର ମୁକୁଟାଳିରେ ଗୋଟେ ବଡ଼ ମାର୍ବଲ ପଥରରେ ଖୋଦେଇହବ 'ଶରଧା ସିଂ - ମନ୍ଦିର ନିର୍ମାଣକର୍ତ୍ତ୍ରୀ'- ମୋ ମା'ନାଁ'ରେ, ବାସ୍ !

ଏତେବଡ଼ ଗାଁ'ରେ ପଚାଶ ଟଙ୍କା ଚାନ୍ଦା ଦବାକୁ ଆଗଭର ହଉ ନ ଥିବା ଲୋକ ଗୌର ସିଂର ଏ ପ୍ରସ୍ତାବକୁ କରତାଳି ମାରି ଧନ୍ୟ ଧନ୍ୟ କରି ସମର୍ଥନ ଜଣାଇଥିଲେ ।

କେହି କେହି ଫୁସ୍‌ଫାସ୍ ହେଲେ-ହଁ, ସରପଞ୍ଚ ସେ, ସେ କରିବନି ତ ଆଉ କେ କରନ୍ତା ? କେତେକ ଗଜୁରୁଥିବା ଟୋକା ଚୁପ୍‌ଚାପ୍ ହେଲେ-ହଁ, ସରପଞ୍ଚ ହେଇ ବହୁତ ମାରିଛୁ । କଣ୍ଟ୍ରୋଲ ଦୂକାନରୁ ଚିନି, ଗହମ ତ ଯାହା କରୁଛୁ କରୁଛୁ, ପାପ ଛଡ଼େଇବା ପାଇଁ କିଛି ଦାନ ଦକ୍ଷିଣା ଦେ !''

ଗୌର ସିଂ ନିଶଟାକୁ ମୋଡ଼ି କହିଲା- ଗାଁ' ବାଲାଏ ସମସ୍ତେ ତ ବସିଛନ୍ତି, ମୁଖିଆ ଲୋକ ବି ଅଛନ୍ତି, କହୁନା ଖୋଲା କଥା, ମୋ ପ୍ରସ୍ତାବରେ ରାଜି ତ ?

-''ଆରେ, ଏଥିରେ ଅରାଜି ହବାର କଥା ରହିଲା କୋଉଠି ? ଯାଠୁଁ ଭଲ ପ୍ରସ୍ତାବ ଆଉ କ'ଣ ଅଛି ? ତୁମ ପ୍ରସ୍ତାବଟା କାଏମ୍ ରହିଲା ଜାଣ । ଲେଖରେ ପିଲାଏ, ଅଧିବେଶନ ଖାତାରେ ଲେଖ, ସମସ୍ତଙ୍କଠାରୁ ସଇ କରିନିଅ, ଆଉ ଘରଘରକା ଚାନ୍ଦା ସବୁ ଚିଠା କରି ଶୁଣାଇଦିଅ !''. ଗାଁ'ର ଜଣେ ପୁରୁଖା ମାନ୍ୟଗଣ୍ୟ ବୁଢ଼ା କହିଲେ ।

ସେତେବେଳେ ପଦନା ଛିଡ଼ାହେଇ ପଡ଼ିଥିଲା । ଉତ୍ତେଜନାରେ ତା'ର ଦେହ ଥରୁଥିଲା ଗୋଟାପଣ । ସେ ଚିତ୍କାରକରି କହିଥିଲା- '' ଏ ପ୍ରସ୍ତାବରେ ମୁଁ ରାଜି ନୁହେଁ । ଗୌରବାବୁ ଟଙ୍କା ବେଶି ଦେଇପାରନ୍ତି, କିନ୍ତୁ ତାଙ୍କ ବାପା, ମା' ନାଁ'ରେ ଗାଁ'ର ଅନୁଷ୍ଠାନ ହେଇପାରିବନି । ଟଙ୍କା ବଳରେ ଗାଁ'ର ଅନୁଷ୍ଠାନ କିଣାଯାଇ ପାରିବନି, ନା । ଗୌରବାବୁର ବାପା ଦେଶୀ ମଦ ରାନ୍ଧି ବିକୁଥିଲେ, ଝିଅ କିଣାବିକା କାମ କରୁଥିଲେ, ସେଥିରୁ ସେ ଧନୀ ହେଇଚନ୍ତି, ତାଙ୍କ ନାଁ'ରେ ଗୋଟେ ଇସ୍କୁଲ ହେବ ? ଗାଁ'ରେ ଦେବାଳୟ, ବିଦ୍ୟାଳୟ ହଉ; କିନ୍ତୁ ଗାଁ'ଲୋକଙ୍କ ଚାନ୍ଦାରେ , ସେମାନଙ୍କ କଷ୍ଟରେ, ମୂଳରେ । କେହି ନ କହୁ ଏ ଇସ୍କୁଲଟା, ଏ ଠାକୁରାଣୀ ମନ୍ଦିରଟା ମୋ ବାପା କରିଥିଲା ବୋଲି ! ସମସ୍ତେ କହିବେ ଯିମିତି ଏ ଗାଁ' ଲୋକେ ମିଳିମିଶି କରିଛନ୍ତି । ଏ ରାଇଜରୁ ଇଂରେଜ ଗଲେଣି, ଜମିଦାର ଗଲେଣି, ସେ ପୁରୁଣା କଥା ଆଉ ପଟିବ ନାଇଁ । ଧନୀ ହେଇଚ, ଟଙ୍କା ଅଛି, କ୍ଷମତା ଅଛି ବୋଲି ଅନୁଷ୍ଠାନ ସବୁକୁ କିଣିନବ ? କାହିଁକି, ତପନବାବୁ ନା'ରେ କରୁନା ଇସ୍କୁଲ ! କେତେଥର ନା ଜେଲ୍ ଖଟିଥିଲେ ସେ ଇଂରେଜ ଅମଳରେ । ବୁଲି ବୁଲି ମାଗୁଥିଲେ ଦୁଃଖୀରଙ୍କିଙ୍କ ପାଇଁ । ବନ୍ୟା ବାତ୍ୟାରେ ଭୋକ ଶୋଷ ଭୁଲି ଖରାତରାକୁ ଖାତିର ନ କରି କେତେ ସେବା ସେ କରିଯାଇଛନ୍ତି ଲୋକଙ୍କ ପାଇଁ ! ତାଙ୍କ ନାଁ ପଡ଼ିଲେ ମୁଣ୍ଡ ନଇଁଯାଏ । ବିଚରା ବୁଢ଼ା ଦିନେ ଖାଇବାକୁ ନ ପାଇ, ଔଷଧ ପଥି ନ ପାଇ ହାଁ ପା ହେଇ ମରିଗଲେ । ସରକାରଙ୍କ ପେନ୍‌ସନ୍ ବି ପାଇ ନ ଥିଲେ !

-'' ସେଇ କଥା କହ ପଦନା । ଏତେ ଜେଲ୍ ଖଟିଲେ, ସେବା କଲେ, କିନ୍ତୁ କ'ଣ ହେଲା ? ଶେଷକୁ ଏଇ ଅବସ୍ଥା ! କାହିଁକି ଜାଣୁ ? ଟଙ୍କା । ଟଙ୍କା ନ ଥିଲେ ସବୁ ବୃଥା, ଟଙ୍କା,ମୁହଁ କରିଦିଏ ବଙ୍କା ! ଆଜି ଗାଁ'ରେ ଯେକୌଣସି କାମ କଲେ ଆଗ

ଦରକାର ଟଙ୍କା । କହିଲୁ, କେହି ଜଣେ ଏ ଗାଁରେ ଅଛି ଯିଏ ବିନା ମୂଲ୍ୟରେ ଦିନେ ଆସି ସ୍କୁଲ କାମ କରିବ ? କେହି ଜଣେ ଅଛି ବାଡ଼ିରୁ ବାଉଁଶଟେ ବିନା ଦାମ୍‌ରେ ଦବ ? ବରଂ ଭଲ, ଗୌରବାବୁଙ୍କ ପ୍ରସ୍ତାବକୁ କାମରେ ଲଗାଇବା !'' କହିଲା ଗାଁ' ମୁରବୀ କୁଟିଆ ପଣ୍ଡା । '' ତମ କଥାକୁ ମୁଁ ଠିକ୍ ଭାବୁନି ଆଜ୍ଞା ! ଜଣେ ଯଦି ନିଃସ୍ୱାର୍ଥ ଭାବେ କାମ କରିବ ନା, ଛାଁକୁ ଛାଁ ଲୋକେ ବି ଆନନ୍ଦରେ ଆଗେଇ ଆସିବେ । ପରଖି କରି ଦେଖୁନା ! ତା' ଛଡ଼ା, ଗୌରବାବୁ ଯଦି ତାଙ୍କ ବାପାଙ୍କ ନାଁରେ ଇସ୍କୁଲ, ମା'ଙ୍କ ନାଁରେ ଦେଉଳ ତୋଳିବାକୁ ଚାହାଁନ୍ତି, ସେ ନିଜେ ସବୁ ଖର୍ଚ୍ଚ କରିପାରନ୍ତି । କିନ୍ତୁ ଗାଁ' ଲୋକେ ସେଥିରେ କାହିଁକି ସାମିଲ ହେବେ ? ଯଦି ଗାଁ' ଲୋକଙ୍କ ଦ୍ୱାରା ସ୍କୁଲ, ମନ୍ଦିର ହବ, ସେ ବି ଜଣେ ଗ୍ରାମବାସୀ ଭାବରେ ନିଜ ଚାନ୍ଦା ଦେବେ । ତାଙ୍କ ଖୁସି ଅନୁସାରେ ସେ ହଜାର ହଜାର ଦେଇପାରନ୍ତି । କିନ୍ତୁ ବେଶୀ ଚାନ୍ଦା ଦେଇ ବାପ ମା'ଙ୍କ ନାଁରେ ଅନୁଷ୍ଠାନ କରିନବାର ବେପାରୀ କାମ ଚଳିବନି । ମୋର ସଫା କଥା... ।'' ପଦନା ରୋକ୍‌ଠୋକ୍ ଜଣାଇଦେଲା ।

ଗାଁ' ସଭାରେ ବସିଥିବା ଯୁବକମାନେ ତାଳି ମାରି କହିଲେ-''ପଦନାଇ ଠିକ୍ କହିଚି । ଉଚିତ କଥା କହିଚି ।''

ଲୋକମତ, ବିଶେଷକରି ତରୁଣମାନଙ୍କ ମତ ପଦନା ଆଡ଼କୁ ଢଳିଚି, ଏ କ୍ଷେତ୍ରରେ ନିଜ ବାଣ କାମ କରିବନି ଭାବି ଗୌର ସିଂ ସଭାର ସଭାପତିଙ୍କୁ ଆଖିଠାର ମାରିଦେବାରୁ ସଭାପତି ଉଠିପଡ଼ିଲେ ଏବଂ ଚତୁରତାର ସହ ନିଜ ମନ୍ତବ୍ୟ ଦେଲେ- '' ଯେଉଁଭଳି କଥା କଟାକଟି ହେଲାଣି, ଏଥିରେ କେତେ ଲୋକ ମତ୍‌ଲବୀ କାରବାର କରିବାର ଜଣାପଡୁଛି, ଗଣ୍ଡଗୋଳର ଆଶଙ୍କା ବି ରହିଚି; ଏଣୁ ଏ ସମ୍ପର୍କରେ ବିଶଦ ଆଲୋଚନା ପାଇଁ ଆଉ ଏକଦିନ ସ୍ଥିର କରିବା । ଆଜି ଏଇଠି ସଭା ବନ୍ଦ ହେଲା ।'' ଏତକ କହି ସଭାପତି ଛିଡ଼ା ହେଇପଡ଼ିଲେ ଏବଂ ସଭାରୁ ଚାଲିଯିବାକୁ ଆରମ୍ଭ କଲେ । ସେଇଠୁ ସଭା ଶେଷ ।

ନା, ତା'ପରେ ଆଉ ଗାଁ ସଭା ହେଲାନି; ମାନେ ଡକାଗଲାନି । କିନ୍ତୁ ଗୌର ସିଂ, ଗାଁ ମୁଖିଆ ସବୁ ଘରଘରକା ବୁଲି ସ୍କୁଲ ପାଇଁ, ଦେଉଳ ପାଇଁ ଚାନ୍ଦା ଆଦାୟ କରିବା ଦେଖାଗଲା । ଲୋକମାନଙ୍କୁ ବିଭିନ୍ନ ଉପାୟରେ, ବିଭିନ୍ନ ଖାପ୍‌ଚାରେ ବୁଝାଇ ଦିଆଗଲା- ପଦନା ଆଉ ଜଣେ ଦି'ଜଣ ମିଶି ପଡ଼ିଶା ଗାଁରୁ ରେସା ଖାଇ, ଗୌର ସିଂର ବିରୋଧୀ ଦଳଠୁଁ ଉସୁକା ପାଇ ଏ ଗାଁରେ ସ୍କୁଲ, ଦେଉଳ କରେଇ ଦବୁନି ବୋଲି ସବୁ ଗଣ୍ଡଗୋଳ ଭିଆଉଛି । ଗାଁରେ ହଠାତ୍ ଯୁବକ ସଂଘଟେ ଗଢ଼ିଉଠିବାର ଦେଖାଗଲା । ଦେଖାଗଲା ବି ସଂଘର ଯୁବକମାନେ ପ୍ରତି ପନ୍ଦର ଦିନେ କୋଡ଼ିଏ ଦିନେ ଫିଷ୍ଟ କରି ମଉଜ ଉଡ଼ାଉଛନ୍ତି । ମିଟିଂ ମାନ କରୁଛନ୍ତି । ଏମ୍.ଏଲ୍.ଏ., ମନ୍ତ୍ରୀ

ବି ଆସିଲେଣି । ଗୌର ସିଂ ସଭାପତି ଆସନରେ ବସି ନିଶ ସଳଖିଲେଣି । ଗାଁରେ ଦଳଦଳ ଭିତରେ ବଚସା, ପିଟାପିଟି, ରକ୍ତପାତ, ପୋଲିସ, କଚେରି ବି ହେଲାଣି । ଯେଉଁ ଯୁବକ ଓ ଛାତ୍ରମାନେ ସେଦିନ ଗାଁ ସଭାରେ ପଦନାର ଚିନ୍ତାଧାରାକୁ ସମର୍ଥନ କରୁଥିଲେ, ସେମାନେ ତାକୁ ଉପେକ୍ଷା, ହତାଦର କଲେଣି । ମଦ,ଗଞ୍ଜା,ସିଗ୍ରେଟ୍ ଖାଇ ହାତରେ ବଳା ପକାଇ ବୁଲିଲେଣି । ପଞ୍ଜାବୀ ହୋଟେଲର ଦଉଡ଼ି ଖଟିଆରେ ବସି ଗୌର ସିଂ ସହ ରୁଟି, ତଡ଼କା, ମାଂସ ଖାଇଲେଣି । ଦୁଇ ତିନିଟା ଝିଅଙ୍କର ଗର୍ଭପାତ ବି କରେଇଲେଣି । ପଦନାର ଘରବାଡ଼ିର ଘେରାବାଡ଼ରୁ କିଛି କିଛି ଗଛ ଉପାଡ଼ି ନେଲେଣି । ପାଳିଥିବା କୁକୁଡ଼ାରୁ ଦୁଇଟି ମୋଡ଼ି ଭୋଜି କରିଦେଲେଣି । ପଦନା ଗାଁର ମୁଖିଆମାନଙ୍କୁ କହିଲାରୁ "ଆଚ୍ଛା ଦେଖିବା, କ'ଣ ହଉଚି ବୁଝିବା" ବାକ୍ୟ ବ୍ୟତୀତ ଆଉ କିଛି ଉପାୟ କି ନିଦାନ ଶୂନ । ଦେଖାଗଲାଣି ତା' ପୁଅ ବଜରା ଆଉ ବୋହୂ ତା' ଆଡ଼କୁ ବେଖାପିଆ ବେଖାପିଆ ବ୍ୟବହାର ଦେଖେଇଲେଣି । ଠିକ୍ ସମୟରେ ତା' ଟୋପେ କି ଭାତଗଣ୍ଡେ ଦବାରେ କୁଣ୍ଠା । ସେଥିରେ ପୁଣି ବୋହୂର ଗରଗର, ରଗରଗ । ସେଦିନ ତ ପୁଅ ବୋହୂ ଯୋଡ଼ିଯାଡ଼ି ହେଇ କହିଲେ- ଜମିବାଡ଼ି ବୋଲି ଘରତଳି ଖଣ୍ଡକ ବିନା ଆଉ ବାଡ଼ି ଗୋବରେ ଗୋବାଏ ବି ନାହିଁ, ଯାହା ବଖରା ଜମି ! ଏ ସନଟା ଗଲା ଗଲା, ଆର ସନକୁ ଜମି ମାଲିକ ସବୁ ଜମି ଛଡ଼େଇ ନେବେ ବୋଲି ତାଗିଦା ଦେଇସାରିଲେଣି । ଜଣେ ଲୋକ ତ ପୁଣି ପାଞ୍ଚପରାଣୀ ପୋଷିବ । ତମର ଯଦି ଏଠି ଅସୁବିଧା ହଉଚି, ଯାଉନା କାହା ଘରେ ମୂଲିଆପଣରେ ନ ହେଲେ ଚାକରପଣରେ ରହି ଖାଇବ !"

ପଦନାର ଆଖି ନରମିଗଲା । ଲୁହ ଖେଳିଗଲା । ସେ ଅନୁଭବ କଲା ତା' ଚାରିପାଖେ ସବୁବେଳେ ଗୋଟେ ଅସହଣି ନୀରବତା, ଭୟଙ୍କର ନୀରବତା । ତୀବ୍ର କୋଳାହଳ, ହୋ-ହାଲ୍ଲା, ଗାଳି-ଫଜିତ୍ ଅପେକ୍ଷା ଏଭଳି ଅଶାନ୍ତ ନୀରବତା ଆହୁରି ବେଦନାମୟ । ଏ ନୀରବତା ଯେମିତି ତା' ବିରୁଦ୍ଧରେ ଏକ ଷଡ଼ଯନ୍ତ୍ରର ପରିପ୍ରକାଶ । ଗାଁ ଲୋକେ, ସାଇପଡ଼ିଶାଏ ଆଉ ତା' ସହ ସେମିତି କଥାବାର୍ତ୍ତା କରୁନାହାନ୍ତି, ଯାହା ହୁଁ,ହାଁ !

ବେଶ୍ ଚହଟ ଟକ ହେଇ ଇସ୍କୁଲ ଆଉ ମନ୍ଦିରର ପକ୍କା କାନ୍ଥ ଉଠିଲା । ଗାଁ ଲୋକେ ଖୁସ୍, ଦିଲବାଦ୍, ବାଃ, ଦେଖ ଦେଖ, ଗୌର ସିଂ କାମଟାଏ କଲା ! ବାପର ମଦବିକା ପଇସା ହେଲେ କ'ଣ ହେଲା, କେଡ଼େ ହିତକାମରେ ଲଗାଇଲାନା ! ହେଲା ଏବେ ତା' ବାପ ନାଁରେ ବିଦ୍ୟାଳୟ, ମା ନାଁରେ ଦେବାଳୟ, କ'ଣ ହେଲା ? ଇସ୍କୁଲ ତ ପିଲାଙ୍କ ପାଠ ପଢ଼ିବା ଲାଗି, ଦେଉଳ ତ ଠାକୁର ଘର, ସେଥିରେ ଯାହା ନାଁରେ ହଉଚି, ହଉ ! କିନ୍ତୁ ହେଲା ତ !

ଏଭଳି ଆଲୋଚନା ସବୁ ଶୁଣିଲା ପଦନା । କିନ୍ତୁ ତା' ଛାତି ଏସବୁ ଘିନି ପାରିଲାନି । ଭାରତ ଦେଶ ଥିଲା, ଲୋକେ ଥିଲେ, ଯିଏ ଶାସନ କରୁନା କାହିଁକି କେହି ଜଣେ ତ ରାଜୁତି କରିବ, ସେ ଇଂରେଜ ହେଉକି ଯିଏ ହେଉ, ଏଥିରେ କ୍ଷତି କ'ଣ ? ଏଭଳି ଚିନ୍ତା ଯଦି ଥାଆନ୍ତା, ଗାନ୍ଧି ମହାତ୍ମା ତା'ହେଲେ ଦେଶ ସ୍ୱାଧୀନ କରିବାକୁ ଅଣ୍ଟା ଭିଡ଼ିଲା କାହିଁକି ? ଏଟା ସେମିତିଆ କଥା ! " ଗାଁ'ବାଲାଏ ! ଅସଲ କଥାଟି ଜାଣ ? ଗୌର ସିଂ ଏଇଭଳି ତମରି ପଇସା ଉପରେ ନାଁ କମେଇ ତା' ପ୍ରଭାବକୁ , ତା' ରାଜୁତିକୁ ତମମାନଙ୍କ ମନରେ ସବୁବେଳ ପାଇଁ ଜମେଇ ରଖିବାକୁ ଚାହେଁ, ଇସ୍କୁଲ ମନ୍ଦିରର ଆବଶ୍ୟକତା ତା'ପାଇଁ ଯେତିକି, ତା'ଠୁଁ ବେଶି ସ୍ୱାର୍ଥ ତା'ର ଏଇ ପ୍ରଭାବ ! ଏ କଥାଟି ହେଉଛଟି ।" ଏଭଳି ମନକୁ ମନ ଚିନ୍ତିଯାଏ ପଦନା, କିନ୍ତୁ ନୀରବିଯାଏ ।

ସଞ୍ଜ ବଢ଼ି ଯାଇଥାଏ । ପଦନା ବାତଜରରେ କମ୍ପୁଥାଏ । ପିଣ୍ଡା ଉପରେ କନ୍ଥାଟେ ଘୋଡ଼େଇ ଶୋଇଥାଏ । ପାଦ ଫୁଲି ହାତୀପାଦିଆ । ଗାଁର କେତେ ଜଣ ମୁଖିଆ, ଯୁବକସଂଘ ଟୋକାଙ୍କ ସହ ପହଞ୍ଚିଥିଲା ଗୌର ସିଂ । ମୁଖିଆଙ୍କ ଭିତରୁ ମଙ୍ଗବୁଢ଼ା କହିଲା- "କିରେ ପଦନା ! ବାତଜର କି ? ଆଚ୍ଛା,ଆଚ୍ଛା,ହଉ, ଇସ୍କୁଲ ଆଉ ଦେଉଳ ଚାନ୍ଦାଟା ଏଯାଏ ଦେଲୁ ନାହିଁ ଯେ !

"ଥରେ କହିଚି, ଇସ୍କୁଲ ମନ୍ଦିର ଗାଁ ନାଁରେ ହବ, ନ ହେଲେ ତପନବାବୁ ନାଁରେ ଯଦି ହବ ମୁଁ ଚାନ୍ଦା ଦେବି, କିନ୍ତୁ ମଦନ ସିଂ ନାଁରେ ହେଲେ ଦେବି ନାହିଁ, ବାସ୍ !" ପଦନା ସେଇ ଜର କମ୍ପ କମ୍ପ ଗଳାରେ ସଲଖେଇଲା ।

"ଯେ କୋତରା ଧଇଲାଣି, ସେ ଆଉ କି ମୁରବୀ ଯେ, ବଳରାକୁ ଡାକୁନା !"- କହିଲା ଗୌର ସିଂ । ବାହାରେ ଏତେ ଲୋକଙ୍କ ଗହଳି ଶୁଣି ବଳରା ଘରୁ ପଦାକୁ ପଳାଇ ଆସିଲା ଏବଂ ଗୌର ସିଂକୁ ଦେଖି 'ଜୁହାର ସରପଞ୍ଚ ଆଜ୍ଞା' କହି ଆଗକୁ ବଢ଼ିଲା- "ଚାନ୍ଦାପାଇଁ ଏତେ କଷ୍ଟ କଲେ କାହିଁକି ? ମୁଁ ତ କାଲି ସକାଳେ ଆପଣଙ୍କ ଘରେ ପଇଠ କରି ଆସିଥାଆନ୍ତି !"

" ଖବରଦାର ବଳରା ! ଚାନ୍ଦା ଦେଲେ ଏ ଘରେ ତୁ ରହିବୁ କି ମୁଁ ରହିବି ।" ପଦନା ଦାଣ୍ଡିଲା । ହୁମୁହୁମୁ ହୁମୁହୁମୁ ହେଇ ବଳରା ଚିହିଁକି ଆସିଲା- " ଗାଁର ସମସ୍ତେ ଯେ ଚାନ୍ଦା ଦଉଚନ୍ତି, ସେମାନେ ସବୁ ବୋକା ? ଆଉ ତମେ ଏକଲା ପଣ୍ଡିତ ! ନୁହେଁ ? ତମ ମୁଣ୍ଡ ପାଗଳା ହେଇଗଲାଣି, ମୁଁ ଏଠି ଘରେ, ଏଇ ଗାଁରେ ରହିବି । ସେଣିକି ତମ ଇଚ୍ଛା ।" ଡମଡମ ହେଇ ଘର ଭିତରକୁ ଚାଲିଗଲା ବଳରା । ଚାନ୍ଦାଟଙ୍କା ଆଣି ଗୌର ସିଂ ହାତରେ ଦେଲା । ବାଗିଆ ହସଟେ ଓଠରେ ଝୁଲେଇ ଗୌର ସିଂ ଚାନ୍ଦାଟଙ୍କା

ଧରି କହିଲା-" ପଦନା ନାଁରେ ଚାନ୍ଦାଟା ପକେଇଦିଅ, ଯେତେହେଲେ ବାପ ତ ! ଦୁଃଖ ଲାଗୁଚି, ପଦନା ବୁଢ଼ାଟାର ମୁଣ୍ଡଟା ବିଗିଡ଼ି ଗଲାଣି !"

" ତମର ସେ ସରପଞ୍ଚ, ପରପଞ୍ଚ ବୁଦ୍ଧି ଏ ଘରେ ଖଟାଅନା ଗୌରବାବୁ, କହି ଦଉଚି, ଭଲଫଳ ହବନି ।" ସେଇ କମ୍ପ ଜରରେ ପଦନା ଉତ୍ତେଜନାରେ ଉଠିପଡ଼ିଲା ।

ସେତିକିବେଳେ ବଜରା ହୁମୁହୁମୁ ହେଇ ଧାଇଁ ଆସିଲା ବାପ ପାଖକୁ । " ତୋ କଥାରେ ଆଉ ଘର ଚଳୁନି ବା, ତୋ ବୁଦ୍ଧିରେ ପଡ଼ିଲେ ମୋତେ ଏ ଗାଁରେ ଠାବ ମିଳିବନି । ମୁଁ ଛୁଆପିଲା ଧରି ଗାଁରେ ରହିବି ନା ସେମାନଙ୍କୁ ଧରି ଏ ଗାଁରୁ ସେ ଗାଁ ଭିକ ମାଗିବି । ଏସବୁ ତୁମକୁ ଯଦି ପସନ୍ଦ ହେଉନି, ଛାଡ଼ିଦିଅ ଏ ଗାଁ । ଯାଅ, କୋଉ ନର୍କକୁ । ବଜରାର ଏଭଳି କଟୁକଥା ଶୁଣି ଗୌର ସିଂ ଓ ଗାଁ ମୁଖିଆ ସବୁ ହେଁ ହେଁ ଫେଁ ଫେଁ ହେଇ ଦାଣ୍ଡ ଅଗଣା ପାରିହେଇ ଚାଲିଗଲେ । ବଜରା, ତା'ସ୍ତ୍ରୀ ଘର ଭିତରକୁ ପଶିଯାଇ ଧଡ଼୍‌କିନା କବାଟ କିଳିଦେଲେ ।

ସେଇ କବାଟକିଳା ଶବ୍ଦରେ ପଦନା ଅନୁଭବ କଲା, ତାକୁ ଯେମିତି ନିର୍ବାସିତ କରିଦିଆଯାଇଛି । ଏହେଁ ଏହେଁ ଆଖିକାଢ଼ି କନ୍ଥା ଭିତରୁ ମୁହଁ ଉଠାଇ ପଦନା ବୁଢ଼ା ଆକାଶକୁ ଚାହିଁଲା । କଳାମେଘ ଘୁରୁଚି । ଅନ୍ଧାର ପହରା ଦଉଚି । ନିଜକୁ ନିଜେ ସେ ହନ୍ତାଳିଲା । ମୁଁ କ'ଣ ଭୁଲ କଥା କହିଚି ?

ନା, ମୁଁ ଭୁଲ କହିଲି କେଉଁଠି ? ଭୁଲ୍ କଥାର ପରିବର୍ତ୍ତନ ଅଛି । କିନ୍ତୁ ସତକଥାର ପରିବର୍ତ୍ତନ ନାହିଁ । ସତ୍ୟର ପ୍ରତିବାଦ ନାହିଁ । ଯାହା ଅଛି ସତ୍ୟକୁ ଘୋଡ଼ାଇ ଦବାର କୌଶଳ । ଠିକ୍ କଥାଟି ପାଇଁ ମଣିଷକୁ ଏତେ ହନ୍ତସନ୍ତ ହବାକୁ ପଡ଼େ ? ବୋଧେ ସତ୍ୟ ତା'ର ମୂଲ୍ୟ ଖୋଜେ, ମୂଲ୍ୟ ହାସଲ କରେ । ପୁଣି ବିଛଣା ଉପରେ ପଡ଼ିଗଲା ପଦନା । ମୁହଁ ଉପରକୁ କନ୍ଥାକୁ ଟାଣିନେଲା ।

x x x x x x x x x

ଯେଉଁଦିନ ସକାଳୁ ସକାଳୁ ଗାଁ ଲୋକେ ଦେଖିଲେ ଇସ୍କୁଲ ଫାଟକରୁ " ବିପିନ୍ ସିଂ ମାଧମିକ ବିଦ୍ୟାଳୟ" ଓ ଠାକୁରାଣୀ ମନ୍ଦିର ମୁଖଶାଳାରୁ "ଶରଧା ସିଂ" ଫଳକ ଦୁଇଟିକୁ କିଏ କାଢ଼ିନେଇଚି, ସେଦିନ ପଦନାକୁ ତା' ପିଣ୍ଡା ଉପରୁ ଗାଁ ଠାକୁରାଣୀ ଦାଣ୍ଡକୁ ଘୋଷାରି ଅଣାଗଲା । କୌଣସି ପ୍ରଶ୍ନ ନ ପଚାରି ତା' ଉପରେ ବିଧା, ଗୋଇଠା, ଛେପ, ଖଙ୍କାରର ଉପଚାର ହେଲା, ଏବଂ ଗୌର ସିଂ ସମେତ ଗାଁ ମୁଖିଆମାନେ ନିଷ୍ପତ୍ତି ଦେଲେ - " ଆଜିଠାରୁ ପଦନାବୁଢ଼ା ଗାଁର କାହା ପିଣ୍ଡାକୁ ଉଠି ପାରିବନି, ବାସ୍ !" ସେହି ସମୟରେ ପୁଅ ବଜରା ଆସି କହିଦେଇଗଲା- " ଯେଉଁ କାମ କଲୁ, ତା'ର ଫଳ ପାଇଲୁ । ଆଜିଠାରୁ ସେ ଘରକୁ ତୁ ଆଉ ଯିବୁନି । ସେ ଘରେ

ଯଦି ତୋର ପାଦ ପଡ଼ିଚି, ମୁଁ ଛୁଆପିଲାଙ୍କୁ ଧରି କୋଉଠିକୁ ହେଲେ କୋଉଠିକି ପଳେଇବି । ବୁଝିଲୁ ? ଏଇଟା ଶେଷ କଥା ।''

ସେଇଦିନୁ ପଦନାବୁଢ଼ାର ସତ୍ୟଟି ହେଲା ତା'ର ସଂସାର । ସେ ବନିଗଲା ଭିକାରୀ । ସେଇଦିନୁ ସେ ଗାଁର କୌଣସି ଘରର ଦାଣ୍ଡଦୁଆର ମାଡ଼ିନାହିଁ । ମାଡ଼ିନାହିଁ ବି ନିଜ ଘର ଦୁଆରମୁହଁ । ଠାକୁରାଣୀ ପିଣ୍ଡାରେ ରାତି ରାତି କଟାଇଛି । ସକାଳୁ ଭିକ ମାଗି ଚାଲିଯାଏ ପଡ଼ିଶା ଗାଁମାନଙ୍କୁ । ଲୋକେ ସବୁ କୁହାକୁହି ହୁଅନ୍ତି- ଭାଗ୍ୟ ଦେଖ, ବାଡ଼ିଖଣ୍ଡେ ହାତରେ ଥିଲେ ପଦନା ରାଇଜ ଜିଣିଯାଏ । ଭାଗ୍ୟ ଦେଖ, ଆଜି ଭିକମାଗି ଖାଉଚି । କେତେ ଲୋକଙ୍କୁ ସେ ରକ୍ଷା ନ କରିଚି ! ଭାଗ୍ୟ ଦେଖ !''

ସେବଠାରୁ ପଦନାବୁଢ଼ା ମନେ ମନେ ପ୍ରତିଜ୍ଞା କରିଥିଲା, ଏ ଜନ୍ମରେ ହେଉ ବା ଆର ଜନ୍ମରେ ହେଉ ସେ ଗୌର ସିଂ ଅତ୍ୟାଚାରର ଠିକଣା ଜବାବ୍ ଦେବ ।

x x x x x x x x x

ବଗ ପଡ଼ିଆର ପଞ୍ଚବଟୀ ଛାଇ ପଦନା ବୁଢ଼ାକୁ କାହିଁକି କେଜାଣି ଆଶ୍ୱସ୍ତି ଦେଇପାରିଲା ନାହିଁ । ହଜାର ହଜାର ବର୍ଷଧରି ଚାଲିଥିବା ପରମ୍ପରା, ବିଶ୍ୱାସକୁ ସେ ଗିଳିଦେଲା, ହଜମ କରିଦେଲା ସିନା, ଗୌର ସିଂ ପ୍ରେତ ଆଟିକାର ଖାଦ୍ୟକୁ ଖାଇଦେଲା ସିନା, କିନ୍ତୁ ଠିକଣା ଜବାବ୍ ଦେଲାଭଳି ତା'ର ମନେ ହେଲାନି । ମାଲଆଟିକାଟାକୁ ଖାଇ ଯଦି ସହଜରେ ହଜମ କରିହେଲା, ତା'ହେଲେ ଏଟା କି ପ୍ରତିଶୋଧ ଯେ ! ଏବେ ବି ପୁଣିଥରେ ଗୌର ସିଂର ବାପ ନାଁରେ ସ୍କୁଲ ଫଳକ, ମାଆ ନାଁରେ ମନ୍ଦିର ଫଳକ ଝୁଲୁଚି । ଗୌର ସିଂର ପୁଅ ମଧୁ ସିଂ ଏବେ ସରପଞ୍ଚ ହବା ପାଇଁ ମସୁଧା ଚଳାଇଛି । ବାପ ଗୌର ସିଂ ନାଁରେ ଗୋଟେ ହୋମିଓପାଥି ଡାକ୍ତରଖାନା ଖୋଲିବାର ଯୋଜନା ବି କରୁଛି । ପଦନାର ମନ ବୁଝୁ ନ ଥିଲା ।

ବୈଶାଖର ପଣାସଂକ୍ରାନ୍ତି ଦିନ ଗାଁ ଠାକୁରାଣୀଙ୍କର ଘଟପାଟ ଯାତ୍ରାର ଶେଷଦିନ । ସେଦିନ ରାତିର ଗୁଧାଡ଼ିବେଳରେ ଗାଁ ଶେଷମୁଣ୍ଡ ତ୍ରିଛକିରେ ଖୁବ୍ ସତର୍କରେ ଯେତେବେଳେ ଅନ୍ଧାରରେ ଡେରା ଛଡ଼ାଗଲା, ବାଡ଼ି ଠକ୍‌ଠକ୍ କରି ପଦନା ସେଠାରେ ପହଞ୍ଚି ଡେରା ଆଟିକାଟି ହାତରେ ଧରି ଆନନ୍ଦରେ ହାତ ପୂରାଇ ହାପୁଲା ହାପୁଲା ଖାଇବାରେ ଲାଗିଲା । ଏହି ସମୟରେ ଟର୍ଚ୍ଚର ଆଲୁଅ ପଡ଼ିଲା ପଦନା ଉପରେ । ତ୍ରିଛକିରେ ଡେରା ଛାଡ଼ି କେତେ ଜଣ ଘଟପାଟୁଆ ଠାକୁରାଣୀଙ୍କ କାଳିସୀ ସହିତ କିଛି ଦୂର ନିଛାଟିଆରେ ବସି ଡେରା ଜଗିଥିଲେ । ଡେରା ପାଖରେ ବାଡ଼ିର ଖଟ୍ ଖଟ୍ ଶବ୍ଦରେ ଚିହିଁକି ଉଠି ସେମାନଙ୍କ ହାତରେ ଥିବା ଟର୍ଚ୍ଚ ଜଳିଉଠିଥିଲା । ପଦନା ବୁଢ଼ାକୁ ଡେରା ଖାଇଯିବାର ଦେଖି ସେମାନଙ୍କ ଦେହ ମୁହଁ ଭୟ ଗୁଲୁ ଗୁଲୁ ହେଇଉଠିଲା ।

ସଙ୍ଗେ ସଙ୍ଗେ କାଳିସୀ ପ୍ରସନ୍ନ ହେଲା ଏବଂ କୁହାଟ ଛାଡ଼ିଲା । କାଳିସୀର କୁହାଟ ଶୁଣି ଗାଁ ଲୋକେ ଦଉଡ଼ିଲେ । ପଦନା ବୁଢ଼ାର ହାତରେ ଡେରା; ମୁହଁରେ ପଣାଭୋଗ ଦେଖି ସାରା ଗାଁ ଲୋକେ ଶିହରି ଉଠିଲେ । ଖବର ଛାଁକୁ ଛାଁ ବ୍ୟାପିଲା ଗାଁକୁ ଗାଁ । ଆଖପାଖ ଗାଁ ଲୋକେ ଧାଇଁଲେ ଏ ଆଚମ୍ବିତ କଥା ଶୁଣି । ଠାକୁରାଣୀ ଡେରା ଯେ ଛୁଇଁବ, ସେ ରକ୍ତବାନ୍ତି କରି ମରିବ, ଅଥଚ ପଦନାବୁଢ଼ା..., ଗାଁର ବୁଢ଼ା ବୁଢ଼ା ଲୋକେ କିଏ କେତେପ୍ରକାର କହିଲେ । କିଏ କହିଲା ପଦନା ବୁଢ଼ା ଉପରେ ମା' ଶ୍ମଶାନ କାଳୀ ସବାର ହେଇଚି, କିଏ କହିଲା ମଶାଣି ଚାମଣ୍ଡା । ଆଉ କିଏ କହିଲା- ନା, କେଉଁ ଅପାଣିଆ ପାହାଡ଼ି ଦେବତା ସିଏ, ନ ହେଲେ ଏ ସାହସ ଆଉ କେଉଁ ଦେବତା କରିପାରିବନି !

ପଦନା ବୁଢ଼ା ସମସ୍ତଙ୍କ ଆଡ଼କୁ ଚାହିଁ ଡେରା ଆଟିକାକୁ କଚାଡ଼ିଦେଲା । କହିଲା, " ଆରେ ଏମିତି ସବୁ ଚାହିଁଛ କ'ଣ "ଖାଲି କ'ଣ ଏତିକି ? ମଶାଣିର ସବୁ ମାଲଆଟିକା ବି ମୁଁ ଖାଇଚି ।"

ଏକଥା ଶୁଣି ସମସ୍ତଙ୍କର ଫାକାସି ଗୁଡୁମ୍ । ମଶାଣି ଚାମଣ୍ଡା ନିଶ୍ଚେ ଆବିର୍ଭାବ ହୋଇଚି । ଏ ଅଞ୍ଚଳକୁ ମହା ବିପତ୍ତି ! କେତେକ ସେଇଠି ପଦନାର ଗୋଡ଼ତଳେ ପଡ଼ି କହିଲେ- " ମା, ଆମକୁ ରକ୍ଷାକର ମା !" ଘଟପାଟୁଆ ସବୁ ଗୋଡ଼ତଳେ ପଡ଼ିଯାଇ ପ୍ରଶ୍ନ କଲେ- "ମା, ଆମର କି ଦୋଷ ହୋଇଚି କହ, କାହିଁକି ତୋର ଏ ଭୟଙ୍କର ରୂପ ?"

" ମହୁଆ, ଅନ୍ୟାୟୀ, ଅତ୍ୟାଚାରୀ କବଳରୁ ମଣିଷ ରକ୍ଷା ନ ହେଲାଯାଏ, ମୁଁ ଏଇଭଳି ଥିବି । ଏ ଗାଁ ସ୍କୁଲ ନାଁ ତପନବାବୁ ନାଁରେ, ଏ ମନ୍ଦିର ଠାକୁରାଣୀ ନାଁରେ, ହୋମିଓପ୍ୟାଥି ଚିକିତ୍ସାଳୟ ଗାଁ ନାଁରେ ହବା କ'ଣ ଉଚିତ୍ ନୁହେଁ ? ଠିକ୍ ନ୍ୟାୟ କଥା ନୁହେଁ ?" ଏତକ କହି ପଦନାବୁଢ଼ା କାହାକୁ ଅପେକ୍ଷା ନ କରି ଡେରା ଭୋଗ ଖାଇ ଖାଇ ସିଧା ଚାଲିଲା ଠାକୁରାଣୀ ପିଣ୍ଡାକୁ । ଗାମୁଛା ପାରି ଶୋଇପଡ଼ିଲା ।

ସକାଳୁ ସକାଳୁ ପଦନା ଉଠିଲାବେଳକୁ ସାରା ଗାଁ ଲୋକେ ତା' ପାଖରେ ଭିଡ଼ । ରାତାରାତି ସ୍କୁଲରୁ ବିପିନ ସିଂ ଫଳକ, ମନ୍ଦିରରୁ ଶରଧା ସିଂ ଫଳକକୁ କାଢ଼ି ନିଆଯାଇଛି । ମୁଖିଆ ଲୋକେ ତା' ପାଖକୁ ଆସି ମୁଣ୍ଡିଆମାରି ଗୁହାରି କଲେ- "ମାଆ, ତୋଅରି କଥା ହବ ମାଆ । ତୁ ଏବେ ପଦନାବୁଢ଼ାର କାନ୍ଧରୁ ଓହ୍ଲାଇଯାଆ । ଏ ଅଞ୍ଚଳ ସାରା ତୋତେ ଭୟ ପାଇଯାଇଛି ।" ବଜରା ଆସି ପାଦତଳେ ପଡ଼ି କହିଲା- " ବା, ମୋର ଭୁଲ୍ ହୋଇଯାଇଛି, ଦୋଷ ହେଇଛି । ଘରକୁ ଚାଲ ବା ।" ଗାଁ ବାଲାଏ କହିଉଠିଲେ- " ହଁ,ହଁ ପଦନା, ପୁଅର ଭୁଲକୁ, ଅନ୍ୟ ସମସ୍ତଙ୍କର ଦୋଷକୁ କ୍ଷମା କରିଦେ ! ଯା' ଘରକୁ ଯା ।" ବଜରାର ଆଖି ମୁହଁ କାନ୍ଦୁଣ୍ଣ ମାନ୍ଦୁଣ୍ଣ ହେଇ ଆସୁଥିଲା ।

ପଦନା କହିଲା : " ନା ତ, କୌଣସି ଦେବଦେବୀ ମୋ' ଉପରେ ସବାର୍ ହୋଇ ନାହାନ୍ତି । ମୁଁ ଠିକ୍ ଅଛି ।"

ଏଇ କଥାପଦକ ଶୁଣି ଉପସ୍ଥିତ ସବୁ ଗାଁ ଲୋକଙ୍କ ମୁହଁରୁ ଭୟ ଅପସରି ଗଲା । ବୁଢ଼ାଲୋକେ କୁହାକୁହି ହେଲେ - " ଯା' ହେଉ ରକ୍ଷା ! ପଦନା କାନ୍ଧରୁ ଶ୍ମଶାନକାଳୀ ଓହ୍ଲେଇ ଗଲେଣି ! ରକ୍ଷା !"

ବଜରା ସହ ଘରକୁ ଯିବାବେଳେ ପଦନା ମୁଣ୍ଡରେ ପ୍ରଶ୍ନଟିଏ ଉବୁଟୁବୁ ହେଉଥିଲା- ସରପଞ୍ଚ ଗୌର ସିଂର କ୍ଷମତା, ତା'ର ଅର୍ଥକୁ ଗାଁ ଲୋକଙ୍କର ଥିଲା ଅଯଥା ଭୟ, ଅଯଥା ଆଶଙ୍କା, ଆଉ ଏବେ ଠିକ୍ ସେହି ଭୟ, ସେଇ ଆଶଙ୍କା ଗୋଟେ ଅଦୃଶ୍ୟ ଶକ୍ତିକୁ ! କାହିଁକି ? ମଣିଷର ଆତ୍ମସାହସ, ଆତ୍ମବିଶ୍ୱାସ, ଆତ୍ମ-ଶକ୍ତିର ପରିଚୟ କାହିଁ ? କାହିଁକି ମଣିଷ ଏତେ ପର-ନିର୍ଭର ? କାହିଁକି ଅନ୍ୟ ଛାଇର ଆଶ୍ରାକୁ ସେ ନିରାପଦ ମଣୁଛି ?

ସୂର୍ଯ୍ୟ ଠିକ୍ ଉଇଁ ଆସୁଚି । ପଦନା ବଜରାକୁ କହିଲା-" ଦେଖ୍, ମୁଁ ସେଇମିତି ମାଲଆଟିକା, ଡେରା ଖାଇବାକୁ ଯିବି ।"

ଢେଗା ଢେଗା ଆଖିରେ ବଜରା ଛିଡ଼ା ହୋଇପଡ଼ିଲା ଥମ୍ । ସେ ପଦନାର ପାଦରୁ ମୁଣ୍ଡଯାଏ ନିରେଖି ନିରେଖି କହିଲା- " ତା'ହେଲେ ତୋ' ଉପରେ କୌଣସି ଦେବଦେବୀ କାଳିସୀ ଲାଗି ନ ଥିଲା ବା ?"



(ଝଙ୍କାର- ଜାନୁୟାରୀ ୧୯୯୦)

# ନଅଙ୍କ

ହିଡ଼ମୂଳେ ବସିଛି ବସୁଦେବ । ମୁଣ୍ଡବାଳ ଫୁରୁଫୁରୁ । ଆଖି ଦି'ଟା କାଚ ଆଖି ଭଳି ନିସ୍ପନ୍ଦ । ହାତ ପାଦ ଶିରାଳ । ଉଠିବା, ଚାଲିବାର ଯୁ ପାଉନାହିଁ । ଆଣ୍ଠୁ, ଗଣ୍ଠି ସବୁ ଫୁଲିଗଲାଣି । ବୟସ କେତେ କି ? ବତିଶ୍ । ଦେଖାଯାଉଚି କିନ୍ତୁ ବୁଢ଼ାଟା । ସାମ୍ନା ବିଲଟା ତାଆରି । ଫାଟି ଆଁ କରିଚି । ଦିଗବିସ୍ତାରୀ ଶୁଷ୍କତା, ରୁକ୍ଷତାର ରେଖାଙ୍କନ । ବିଲରେ ଯାହା କିଛି ଧାନ ଗଛ ଉଠିଥିଲା ସବୁ ଗଜାମରୁଡ଼ି । ରଡ଼ରଡ଼ ଶୁଖି ଯାଇଥିବା ଧାନଗଛ ସବୁ ଠିଆ ନୁଖୁରା ଟାଆଁସା ମୁଣ୍ଡବାଳ ଭଳି । କେଉଁଠି ପୁଞ୍ଜେ'ତ କେଉଁଠି ଗୋଟେ ଅଧେ । ବାବରଖାନିଆ କୁକୁରର ଚମଛଡ଼ା ରୁମ ଭଳି ! ପାଖ ନଈଟା ବି ଶୂନଶାନ । ଶିଉଳି ଟିକିଏ ବି ନାହିଁ କଡ଼ରେ । ଗଛଲଟା ସବୁ ନଣ୍ଡା ଯେ ପକ୍ଷୀଙ୍କର ରାବ ଶୁଭୁନାହିଁ କେତେଦିନ ହେଲା । ବସା ଭାଙ୍ଗି କେ କୁଆଡ଼େ ଗଲେ ! ନଈଆଡ଼ି, କିଆବୁଦା, ଛୋଟ ଛୋଟ ପୋଲ ତଳେ କଦବା କେମିତି ଦେଖାଯାଉଥିବା ଗୋଧି, ନେଉଳ, ବିଲୁଆ, ମୂଷାଙ୍କର ମୁହଁ ଦିଶୁନି ଆଉ । ନଈକୂଳ, ବାଲିପଠା, କୁଦମାନଙ୍କରେ ଲହରଉଥିବା କାଶତଣ୍ଡି ଫୁଲ ଆଉ ନାହିଁ । ବସୁଦେବ ସେମିତି ବସିଥିଲା । ଗାଁ ମଶାଣି ପାଖରୁ ହରେରାମ, ହରେରାମ ରାମ ରାମ' ଶବ୍ଦ ସବୁ ଅସ୍ଥିର, ଉଦାସ କଣ୍ଠରୁ ଶୁଣି ପଛକୁ ବୁଲି ଚାହିଁଲା ସେ । ଚାରି ପାଞ୍ଚ ଦିନ ଧରି ଭୋକ ଉପାସରେ ଥିବା ଗୋବରୀ ବୁଢ଼ୀ ଚାଲିଗଲା ଭାବି ପୁଣି ମୁହଁ ଫେରେଇ ନେଲା ସେ । ଏଭଳି ମୃତ୍ୟୁ ତାକୁ ଆଉ ଆଚମ୍ବିତ ଲାଗୁନି କି ଦହଗଞ୍ଜ କରୁନି । ମୃତ୍ୟୁ ତା'ର ପଡ଼ୋଶୀ ନୁହେଁ, ବନ୍ଧୁ ହେଇଗଲାଣି । ଦେହ ଘଷରା । ଉପାସରେ ମରିବା, ଓଷଦ ନପାଇ ମରିବା, ସାପକାମୁଡ଼ାରେ ମରିବା, ଝାଡ଼ାବାନ୍ତିରେ ମରିବା, ଭୋକ ବିକଳରେ ଯାଡୁ ସ୍ୟାଡୁ ଖାଇ ପକାଇ ପେଟରୋଗରେ ମରିବା ପ୍ରଭୃତି 'ନିତିପ୍ରତି ଅକାଳ ମରଣ ସହ ତା'ର ଘନିଷ୍ଠ ସମ୍ପର୍କ ହୋଇଯାଇଥିବା ଯୋଗୁ ଗୋବରୀ ବୁଢ଼ୀର ମଲା ଖବରରେ ସେ ଆଚମ୍ବିତ

ହେଲାନି । ତେବେ ତାହାକା ନିଃଶ୍ୱାସ ତା'ର କଙ୍କାଳସାର ଛାତିରୁ ନିଗିଡ଼ି ଆସିଲା । ଏ ପାଞ୍ଚ ଗାଁର ସେ ଥିଲା ଶୁଳିଆଣୀ, ଧାଈ । ସମସ୍ତଙ୍କର ଦରକାରର ବୁଢ଼ୀ । ପୋଇତି ମାଇପିଙ୍କର ଭରସା । ତା'ର କିନ୍ତୁ କେହି ନଥିଲେ । ପଇଁତିରିଶ ବର୍ଷରେ ସେ ରାଣ୍ଡ ହେଲା । ଏଇ କାମକୁ ଆଦରି ନେଲା । ପାଖ ଡାକ୍ତରଖାନାର ଡାକ୍ତର, ଧାଈ, ନର୍ସଙ୍କର ସାହାଯ୍ୟ ସେ ନଉଥିଲା । କିଏ ଯେ ଉପକାର ନ ପାଇଚି, ନାହିଁ । ବୁଢ଼ୀ ହେଲାରୁ ନିପାରିଲା ହୋଇଗଲା । କେହି ତା'ର ଦାୟିତ୍ୱ ନେଲେନି । ଆପଣାର କିଏ ଯେ ! ଅଚଳ ହୋଇପଡ଼ିଲା । ଅଖିଆ-ଅପିଆ, ଅଦେଖାରେ ଉପାସ ରହି ରହି ଆଖି ବୁଜିଦେଲା । ସତରେ ସେ ମଲାବେଳେ ଏ ସାରା ମଣିଷ ଜାତିକୁ ଅଭିଶାପ ଦେଇ ଯାଇ ନଥିବ ? ଏ ମରୁଡ଼ିଆମାନଙ୍କ ଭାଗ୍ୟରେ ମରୁଡ଼ି ପଡ଼ିବନି ତ ଆଉ କ'ଣ ? ବସୁଦେବ ଏମିତି ଭାବୁଥିବାବେଳେ ତା ସ୍ତ୍ରୀ ସୁମିତ୍ରା ଗାଈଟେ ଅଡ଼େଇ ଅଡ଼େଇ ନେଇ ଆସିଲା । ବସୁଦେବ ସୁମିତ୍ରା ଉପରେ ପାଟି କଲା । କାହିଁକି ଗାଈଟାକୁ ଏଠିକି ଆଣିଲୁ ? କେଉଁଠି ଘାସ ଅଛି ନା ଦୁବ ଅଛି ? ଗାଈ ଛୁଆଟା ତ ଖାଇତେ ନ ପାଇ ମରିଗଲା । ଇଏ ବି ସିମିତି ମରିବ !

- ମରୁ ! କିନ୍ତୁ ପଘା ନଗେଇ ଗୁହାଳରେ ମରିଯିବ ତ ପଘାନଗା ଦୋଷ ଲାଗିବ ଯେ ! କହିଲା ସୁମିତ୍ରା ।

ଚୁପ୍ ରହିଲା ବସୁଦେବ ।

: ଏବେ ଘରକୁ ଆସୁନ ! ଡାକିଲା ସୁମିତ୍ରା ।

: ଘରେ କ'ଣ ଅଛି କି ? କୋକେଇ ବନ୍ଧା ହବା ପାଇଁ ଛିଡ଼ା ସପ, ପୁରୁଣା ଉଷୁମୁଳିଆ କନ୍ଥା, ଖାଲି ପଡ଼ିଥିବା ଚାଉଳ ହାଣ୍ଡି ଛଡ଼ା ଆଉ କ'ଣ ଅଛି ଯେ ଡାକୁଚୁ ? ରସ ତାଟିଆଟା ଯାହା ଥିଲା, କାଲି ଦେଇକରି ମୁଢ଼ି ଆଣିଥିଲି । ସେ ବି ଶେଷ । ଆଉ କାହିଁକି ଡାକୁଚୁ ?

କାନ୍ଦି ପକାଇଲା ସୁମିତ୍ରା । ଏତେ ଶୀଘ୍ର ଜୀବନର ସ୍ୱପ୍ନ ଶେଷ ହୋଇଗଲା ? ଗୋଟେ ହେଲେ ସ୍ୱପ୍ନ ଫଳିଲାନି । କେଡ଼େ ଦଗାଦିଆ ଏ ଜୀବନ !

: ଅପର୍ତ୍ତିଦାଦା ଭିକମାଗି ଗଣ୍ଡେ ଚାଉଳ ଆଣିଥିଲେ । ମୋତେ ପୋଷେ ଦେଇଛନ୍ତି । ଆସ, ତାକୁ ବସେଇ ଦେଇ ଜାଉ ପେଜ କରି ପିଇଦେବା, ଆସ ! ସେ ଭୂଇଁକି ଆଉ କାହିଁକି ଚାହିଁଚ ? ଦିନରାତି ସବୁ ତ ଅନ୍ଧାର । ପାଣି, ପବନ ବି ଆମକୁ ଠକିଦେଲେ ।

: ହଉ, ତୁ ଚାଲ । ମୁଁ ଯାଉଛି । କହିଲା ବସୁଦେବ । ସୁମିତ୍ରା ଚାଲିଗଲା । ବସୁଦେବ ତା'ର ଯିବା ବାଟକୁ ଚାହିଁ ରହିଲା । ଆହା, କେମିତିଆ କଣ୍ଢା ହେଇଗଲାଣି ସୁମିତ୍ରା ! ବୟସର ଟିକିଟିକି ନାଲିବୁଞ୍ଜ ଶୁଖି ପାଉଁଶିଆ । କେଡ଼େ ଆଗ୍ରହରେ ସୁମିତ୍ରାର

ବାପ ମାଆ ଟେକି ଦେଇଥିଲେ ତାଙ୍କର ଏଇ ବଡ଼ ଝିଅକୁ । ବାପଛେଉଣ୍ଡ ବସୁଦେବ, ଗରିବ ହେଲେ ବି ପିଲାଭଳି ପିଲାଟେ । ବି.ଏ ପାଶ କରିଚି । ଟିଉସନ କରି ଦି ପଇସା କମଉଚି । ଜମି ଏକରେ କାନ୍ତୁରୁ ଅଛି । ବର୍ଷକ ଭାତ ଯିବ । ଗାଈଟେ ଅଛି । କ୍ଷୀର ପାଇବ ଦିନକୁ କିଲେ । ବିକିଲେ ଅବିକା ଆଠ ଟଙ୍କା । ପାଖ ଗାଁ ପ୍ରାଇଭେଟ୍ ମାଇନର ସ୍କୁଲରେ ମାଷ୍ଟ୍ର ଅଛି । ସରକାରଙ୍କଠୁଁ ଦରମା ମିଳିନି । ଦିନେ ମିଳିବ । ରୋଗୀକୁ ଦେଖିଲେ ବସୁଦେବ ଚୋ' କରେ । ଦୁଃଖୀକୁ ଦେଖିଲେ ଆହା ! ମଣିଷପଣିଆ ତ ତା'ର ସମ୍ପତ୍ତି । ଯେତେ ଖର୍ଚ୍ଚ ହେଲେ ବି ସେ ସମ୍ପତ୍ତି ବଢ଼ିବ ସିନା, କମିବ ନାହିଁ । ସେ ସମ୍ପତ୍ତିର ମହତ୍ତ୍ୱ ଏତିକି !

ତିନିବର୍ଷ ତଳେ ମାଆ ଚାଲିଗଲା ଯେ ଦଶାହ କାମକୁ ଗାଁଯାକ ସମସ୍ତେ ଅଡ଼ିଲେ । ମାଆଟେ, ପୁଅଟେ । ମାଷ୍ଟ୍ର ଚାକିରି । ଆଜି ନ ହେଲେ କାଲି ସରକାରୀ ଦରମା ପାଇବ । ମାଆ ବୋଲି ଗଣ୍ଡେ ନା ଛଅଟା ? ଭଲ କାମଟେ କରିବନି ? ସ୍କୁଲର ମାଷ୍ଟର ସାଙ୍ଗଙ୍କ ସମେତ ସମସ୍ତେ ଟାକିଲେ ! ବସୁଦେବ ଏଡ଼ି ନପାରି କିଛି ଜମି ବିକିଦେଲା ଓ ମାଆର ଶ୍ରାଦ୍ଧ କାମ କଲା । ଜମିରୁ କିଛି କରଛଡ଼ା ହେଇଗଲା ତା'ର । ମାଇନର ସ୍କୁଲ୍‌ର ଶିକ୍ଷକମାନେ ସରକାରଙ୍କ ପାଖରୁ ଦରମା ପାଇବା ଲାଗି ମଞ୍ଜୁରୀ ଆସିଗଲାରୁ ଶିକ୍ଷକମାନେ ଆଖିରୁ ଉଦାସର ପରଦା କାଢ଼ି ଦେଇ ଖୋଲା ଚାହିଁବାକୁ ଆରମ୍ଭ କଲାବେଳେ ବସୁଦେବର ଆଖିରେ କିନ୍ତୁ ପରଳ ପଡ଼ିଗଲା ଭଳି ହେଲା । ତା' ଅନ୍ତ ସୁକ୍ରୁସୁକ୍ରୁ ହେଲା । ବିନା ପଇସାରେ ବର୍ଷ ବର୍ଷ କାଳ ସେ ସ୍କୁଲରେ ଖଟିଥିଲା । ମାସକୁ ମାସ ଦେଢ଼ ହଜାର ଟଙ୍କା ନେଇଛି ବୋଲି ରେଭିନ୍ୟୁ ଷ୍ଟାମ୍ପରେ ଦସ୍ତଖତ କରିଥିଲା ମିଛରେ । ସ୍କୁଲ ଚାରିପାଖେ ବାଡ଼ଘେରା ପାଇଁ ସେ ବାଉଁଶ, କଣ୍ଟା ମାଗଣାରେ ଦେଇଥିଲା । ହତା ଭିତରେ କିସମ କିସମର ଫୁଲଗଛ, ନଡ଼ିଆ ଗଛ, ପେଡ଼ା, ଆମ୍ବ ପ୍ରଭୃତି ଗଛ ସବୁ ଲଗାଇ ଏଡ଼ିକିରୁ ଏଡୁଟିଏ କଲା । କିନ୍ତୁ ସରକାରଙ୍କ ଠାରୁ ଦରମା ପାଇବା ପାଇଁ ହକ୍‌ଦାର ଶିକ୍ଷକଙ୍କ ତାଲିକାରେ ତା ନାଆଁ ରହିଲାନି । ତା ବଦଳରେ ସ୍କୁଲ ପରିଚାଳନା କମିଟି ସଭାପତିଙ୍କର ଭଣଜା ମୁରଲୀର ନାଆଁକୁ ରଖାଗଲା । ସ୍କୁଲର ସମସ୍ତ ନଥିପତ୍ରରେ ମୁରଲୀର ନାଆଁକୁ ପିଛିଲା ତାରିଖ ଠାରୁ ଭର୍ତ୍ତି କରିଦିଆଗଲା । ନଗଦ କୋଡ଼ିଏ ହଜାର ଟଙ୍କା ସେ ସ୍କୁଲର ଉନ୍ନୟନ ପାଣ୍ଠିକୁ ଦାନ କରୁଛି ବୋଲି କୁହାଗଲା । ପ୍ରକୃତରେ ପରିଚାଳନା କମିଟିର ସଭାପତି ଅଜୟ ଅନ୍ୟସବୁ ସଦସ୍ୟମାନଙ୍କୁ ବିଭିନ୍ନ ଲୋଭରେ କରଗତ କରି ନେଇଥିଲେ । ବସୁଦେବ ପ୍ରତିବାଦ କଲାରୁ ତାକୁ ଉତ୍ତର ମିଳିଥିଲା-ପରବର୍ତ୍ତୀ ପର୍ଯ୍ୟାୟରେ ତାଙ୍କୁ ନିଆଯିବ ଏବଂ ସେ ସେଇମିତି ପଢ଼ାଉଥାନ୍ତୁ । ବସୁଦେବ ଏ ଅନ୍ୟାୟକୁ ବିରୋଧ କରି ନ୍ୟାୟ ଆଶାରେ କେତେଥର ଉଚ୍ଚ ଅଧିକାରୀମାନଙ୍କ ପାଖକୁ ଦଉଡ଼ା ଧାପଡ଼ କଲା, କିନ୍ତୁ ଫଳ କିଛି ହେଲାନି ।

ଶିକ୍ଷାନୁଷ୍ଠାନ ଆଜି କେତେଜଣଙ୍କର ଲୋଭର ସନ୍ତାନ ହୋଇ ପଡ଼ିଛି ଭାବି ସେ ଚୁପ୍ ରହିଲା ଏବଂ 'ଫଳକୁ ଆଶା ନ ରଖି କର୍ମ କରିଯାଅ' ଆପ୍ତ ବାକ୍ୟକୁ ଧୂସର ଆଖିରେ ଚାହିଁଲା । ସ୍କୁଲ ଚାକିରି ଛାଡ଼ିଦେଲା ବାଧହୋଇ । ଟିଉସନକୁ କେବଳ ଆଶ୍ରା କରିଗଲା । ଆଉ କିଛି ହୋଇପାରିବାର ସ୍ୱପ୍ନ ତା'ର ଛିଟିକି ପଡ଼ିଲା ଏବଂ ଯେନତେନ ପ୍ରକାରେ ବଞ୍ଚି ଯିବାର ଆରତ ଆଗ୍ରହରେ ଠହରିଗଲା ସେ । ସବୁ ଭଲ ମଣିଷମାନେ ଏବେ ନିପାରିଲା ମଣିଷରେ ଗଣା ବୋଲି ତା' ସ୍ତ୍ରୀ ସୁମିତ୍ରା ତାକୁ ଦାଇକା ଦିଏ । ହସେ ବସୁଦେବ । ବାହା ହବାର ଏତେ ବର୍ଷ ବିତିଗଲେ ବି ବସୁଦେବ ତା ସ୍ତ୍ରୀକୁ ଏ ଯାଏ ମାଆ କରିପାରିନି କି ଏଥିପାଇଁ କୌଣସି ଡାକ୍ତରଙ୍କ ପରାମର୍ଶ କରିପାରିନି । ଏବକୁ ସନ୍ତାନ ନଥିବାଟା ସେମାନଙ୍କ ପାଇଁ ଆଶୀର୍ବାଦ ବୋଲି ଗ୍ରହଣ କରି ନେଇଛି ସେ । ବେଳେବେଳେ ସନ୍ତାନ କଥା ପଡ଼ିଲେ ସୁମିତ୍ରାର ମୁହଁ ଉଲୁସି ଉଠେ । ଏବଂ ବସୁଦେବ ସାମ୍ନାରେ କିନ୍ତୁ ସେ ସନ୍ତାନର ଶେଷ ନିଃଶ୍ୱାସ ଛାଡ଼ିବାର ଦୃଶ୍ୟଟି ହିଁ ଉଭା ହୁଏ । ବସୁଦେବର ପଛୁଆ ଚହକା ସ୍ମୃତି ସବୁ ତାକୁ ଘେରାଫେରା କରୁଥାଏ । ତା' ପଛରେ ଅନ୍ଧାର ତ ଆଗକୁ ବି ଅନ୍ଧାର । ବାସ୍ତବ ଜୀବନରେ ଯୁଆଡ଼େ ଚାହିଁଲେ, ସେଆଡ଼େ ଖାଁ ଖାଁ । ସେଠୁ ଆଖି, ଚିନ୍ତା, ଅନୁଭବକୁ ଫେରେଇ ଆଣିବା ଲାଗି ତତ୍ପର ହୁଏ ବସୁଦେବ । କିନ୍ତୁ ସେ ସବୁରୁ ଫେରେଇ ଆଣିବ କେଉଁଠିକୁ ? ଆଉ କେଉଁ ବାସ୍ତବତାକୁ ? ଚାରିଆଡ଼ ଧୂ ଧୂ ମରୁଭୂମି, ନୁଖୁରା, ଟାଆଁସା । ଉତ୍ପୀଡ଼ନର ଚକ୍ରବାଳ ଲାଲ ଲାଲ । ମୁଣ୍ଡବାଳକୁ ଝିଙ୍କି ଧରୁଥିଲା ବସୁଦେବ । ମରୁଡ଼ି ଗୋଟେ ରାକ୍ଷସ ଭଳି ମାଡ଼ି ଆସିବା ସମୟକୁ ତା'ର ଆଣ୍ଠୁଗଣ୍ଠି ବାତ ବାହାରି ପଡ଼ିଲା । ପାଦ ହାତ ଫୁଲିଗଲା । ଦେହର ଗଣ୍ଠି ସବୁ ଏମିତି ବିନ୍ଧିଲା, ଏମିତି ବଥା ହୋଇଗଲା ଯେ, ସେ ଉଠିବସି ପାରିଲାନି । ଖଟିଆରେ ଥରେ ସେ ଡାକ୍ତରଖାନାକୁ ବୁହାହୋଇ ଗଲା । ଏ ରୋଗ ସହ ହୃଦରୋଗର ସମ୍ପର୍କ ରହିଛି । ଶୀଘ୍ର ଯା'ର ପ୍ରତିକାର କରାଯିବା ଦରକାର ବୋଲି ଡାକ୍ତର ପରାମର୍ଶ ଦେଲାରୁ ବସୁଦେବ ପାଞ୍ଚ ଡିସିମିଲ୍‌ର ବିଲ ଖଣ୍ଡେ ବହୁକଷ୍ଟରେ ଜଣକୁ ବିକିଲା ଏବଂ ଚିକିତ୍ସା ହେଲା । ରୋଗରୁ ସମ୍ପୂର୍ଣ୍ଣ ଆରୋଗ୍ୟ ନ ହେଉଣୁ ପଇସା ସରିଗଲା । ଜୀବନକୁ ତା' ହାତରେ ଛାଡ଼ି ଦେଇ, ଯାଉଛି ତ ଯାଉ, ରହୁଚି ତ ରହୁ, ତା' ଇଚ୍ଛା ! ଏଇଆ ଭାବି ବେପରବାୟ ରହିଲା । ତା'ଛଡ଼ା ଆଉ ଉପାୟ ବା କ'ଣ ଥିଲା ? ଆଣ୍ଠୁ ଗଣ୍ଠି ବାତ ଏମିତି ତାକୁ କାବୁ କଲା ଯେ ସେ ବାଡ଼ିଟିଏ ଧରି ଚଲାବୁଲା କଲା । ବେଳେବେଳେ ଏତେ କଷ୍ଟଦାୟକ ହେଲା ଯେ, ସେ ଉଠୁ ଉଠୁ ପଡ଼ିଯାଉଥିଲା ।

ନୁଖୁରା ମୁହୂର୍ତ୍ତ ସବୁ ଗଣୁଥିଲା ବସୁଦେବ ସେଇ ହିଡ଼ମୂଳରେ । ସାଇକେଲରେ ସହର ଆଡୁ ଆସି ପହଞ୍ଚିଲା ସଦାଶିବ । ତା'ର ସ୍କୁଲ ଜୀବନର ସାଙ୍ଗ । କୁରୁଳି ଉଠିବା ଭାଷାରେ କହିଲା : ବୁଝିଲୁ ବସୁ ! ଆମ ଅଞ୍ଚଳଟା ମରୁଡ଼ି ବୋଲି ସରକାରୀ ଘୋଷଣା ହୋଇଗଲା ।

: କ'ଣ ହେଲା ସେଇଠୁ ? ମରୁଡ଼ି ବୋଲି ଘୋଷଣା ହେଇଗଲେ ବିଲରେ ତ ଧାନ ଫଳିବନି,। କହିଲା ବସୁଦେବ ।

: ତା' ସତ । କିନ୍ତୁ ଲୋକଙ୍କୁ କାମଧନ୍ଦା ମିଳିବ । ଶସ୍ତାରେ ଚାଉଳ, ଅଟା ଦିଆଯିବ । ସରକାରୀ ସାହାଯ୍ୟ ବି ମିଳିବ । ଉତ୍ସାହିତ ହୋଇ କହିଲା ସଦାଶିବ ।

: ହଁ, ସ୍କୁଲ ସରକାରୀ ସାହାଯ୍ୟ ପାଇଲା ପରେ ମୋର ଅବସ୍ଥା କ'ଣ ହେଲା, ଦେଖିଲୁ ତ ! ସେଇମିତି ମରୁଡ଼ି ସରକାରୀ ହୋଇଗଲା ପରେ ମରୁଡ଼ିର ରୂପ କ'ଣ ହେବ, ଦେଖିବୁ । ଏଠି ତ ହରଘଡ଼ି ନଅଙ୍କ ଚାଲିଛି । ବସେଇ ବସେଇ ରୁଦ୍ଧ କଣ୍ଠରେ କହିଲା ବସୁଦେବ ।

: ସତରେ ବସୁ ! ଆମ ଏଇ ଅଞ୍ଚଳଟା ମରୁଡ଼ି ଘୋଷିତ ହୋଇଗଲା ପରେ ମୁଁ ଦେଖିଲି କେତେକ ସରକାରୀ କର୍ମଚାରୀ ସବୁଠୁଁ ବେଶି ଖୁସି । ଆନନ୍ଦରେ ବେଶ୍ ହାଇ ମାରୁଛନ୍ତି, ସତେ ଯେମିତି ସେମାନେ ଏ ସରକାରୀ ଘୋଷଣାରେ ମରୁଡ଼ିରୁ ମୁକ୍ତି ପାଇଯିବେ । କେତେ ଜଣ ଅଫିସର ଏତେ ଆନନ୍ଦିତ ହେଇଯାଇଛନ୍ତି ଯେ, ସେମାନଙ୍କ ଭିତରୁ ଏବର୍ଷ, କିଏ ତା' ଝିଅ ବାହା କରିବ ତ ଆଉ କିଏ ତା' ଘରର ଛାତ ପକେଇବ ବୋଲି ଟାକି ବସିଚି ! କହିଲା ସଦାଶିବ ।

: କେଉଁଠି ମରୁଡ଼ି ନାହିଁ କହ ? ତଣ୍ଟିକୁ ଦୁହିଁ ଚିତ୍କାର କଲାଭଳି ପ୍ରଶ୍ନକଲା ବସୁଦେବ ।

ସଦାଶିବ ବସୁଦେବକୁ, ତା'ର ଚାରିପାଖକୁ, ଆକାଶକୁ, ବିଲ ମଝିକୁ ଅନେଇଲା । ସତରେ ବସୁଦେବ କ'ଣ ପାଇବ ? 'କ' ଶ୍ରେଣୀ କଣ୍ଟ୍ରାକ୍ଟର ସବୁଜବାବୁ ଏ ଘୋଷଣାରେ ଭୁବନେଶ୍ୱରର ଏକ ଫାଇଭ ଷ୍ଟାର ହୋଟେଲରେ ତା ବନ୍ଧୁମାନଙ୍କୁ, ବରିଷ୍ଠ ସରକାରୀ କର୍ମକର୍ତ୍ତାମାନଙ୍କୁ ପାର୍ଟି ଦେଇଦେଲା । 'ଖ' ଶ୍ରେଣୀ କଣ୍ଟ୍ରାକ୍ଟର ବିନନ୍ଦ ବେହେରା ଆନନ୍ଦ ଗଦଗଦ୍‌ରେ ଏଥର କାର୍‌ଟେ କିଣିପାରିବ ବୋଲି ଆଖି ଲାଲୁଆ କରି ମୋଟର ସାଇକେଲ୍‌ରେ ଏମ୍.ଏଲ୍.ଏ.ଙ୍କ ଆଶୀର୍ବାଦ ପାଇବାକୁ ଧାଇଁଲା । ଛୋଟ ପେଟି କଣ୍ଟ୍ରାକ୍ଟର ପୁରୁଷୋତ୍ତମ ଜେନା ଛକ ଜାଗାରେ ଠିଆ ହୋଇ ଟା ଖାଉ ଖାଉ ସିଗାରେଟ୍‌ରୁ କସିକିନା ପୁଳାଏ ନେଇ ଆକାଶକୁ ଧୂଆଁ ଛାଡ଼ିଲା ଫୂର୍ତ୍ତିରେ । ଗାଁ ଲୋକେ ଚାଉଳ, ଅଟା ପାଇଯିବାର ସ୍ୱାଦୁଯୁକ୍ତ ଆଶାରେ ଦଇବ ଆଡ଼କୁ ହାତ ଠାରିଲେ । ରାଇଜ ଛାଡ଼ି ବାହାରକୁ ପଳାଇଯିବାକୁ ସଜିଲ ହେଉଥିବା ଯୁବକମାନେ ଏ ଘୋଷଣାରେ ଦୋଦୋପାଞ୍ଚ ହେଲେ ।

ସୁମିତ୍ରା ପୁଣି ଥରେ ଆସିଲା । ବସୁଦେବ ପାଖରେ ସଦାଶିବ ବସିଥିବାର ଦେଖି ଆଡ଼ଆଡ଼ ହେଲା । ସଦାଶିବ ସୁମିତ୍ରାକୁ ଦେଖି 'ଭାଉଜ ! ନମସ୍କାର' ବୋଲି କହିଲାରୁ ସୁମିତ୍ରା କହିଲା, 'ଆଉ ତୁମର ତ ଦେଖା ନାହିଁ ! ତୁମ ବନ୍ଧୁ ଆସି କେତେ ସରି

ହେଲେଣି । କେହି ଜଣେ ନାହିଁ, ଯାହାକୁ ଦୁଃଖ କହି ହବ । ମରୁଡ଼ି ପଡ଼ିଛି ବୋଲି ଟିଉସନ ପିଲାମାନେ ବନ୍ଦ ହୋଇଗଲେ । ସେମାନଙ୍କ ଘରେ ତ ଦିନକୁ ଥରେ ଚୁଲି ଜଳିବା କଷ୍ଟ, ପାଠ କ'ଣ ପଢ଼ିବେ ! ଦି ପରାଣୀ ସଂସାର ବି ଆଉ ଚାଲିବ ନାହିଁ ଆମର !' କହୁ କହୁ କାନ୍ଦି ପକେଇଲା ସୁମିତ୍ରା । କାନିରେ ଆଖି ପୋଛିଲା । ସଦାଶିବ କ'ଣ କହିବ, କିଛି ବୁଝିପାରିଲାନି । ବସୁଦେବର ଏ ଅସମୟରେ ସେ କ'ଣ ବା ସାହାଯ୍ୟ କରିପାରିବ ? କିନ୍ତୁ ଚୁପ ରହିବାକୁ ବି ସେ ଚାହିଁଲାନି । ଚୁପ୍ ରହିଗଲେ ବସୁଦେବ ଆଉ ସୁମିତ୍ରା ଭାଉଜ ଆହୁରି ଅସହାୟ ହେଇଯିବେ, ଆହୁରି ନିଃସ୍ୱ ହେଇଯିବେ । ଭରସା ଦେବା ଢଙ୍ଗରେ କହିଲା ସେ- ବ୍ୟସ୍ତ ହୁଅନି ଭାଉଜ, ବସୁଦେବକୁ ଆମେ ଆଉଥରେ ଡାକ୍ତରଖାନା ନେଇଯିବା । ତା'ର କହିବାରେ ଝୁନ୍ଦି ହେଇଥିଲା ଅସହାୟତା ଓ ତାକୁ ଘୋଡ଼ାଇବାର ଆପ୍ରାଣ ଚେଷ୍ଟା । ସୁମିତ୍ରା ନୀରବ ରହିଲା ଏବଂ ବସୁଦେବ ଏକ ପ୍ରଶ୍ନିଳ ଆଖିରେ ସଦାଶିବକୁ ଚାହିଁଲା, ସତେ କି ସେ ପ୍ରଶ୍ନ କରୁଛି- 'କାହିଁକି ମିଛ ଆଶ୍ୱାସନାରେ ଭୁଲେଇବାକୁ ଚେଷ୍ଟା କରୁଛୁ ?' ବସୁଦେବର ଶକ୍ତି ନଥିବା ଆଖିରେ ବି ଯେଉଁ ବିନ୍ଦୁ ଝଲକି ଉଠୁଥିଲା, ତାକୁ ସାମ୍ନା କରିବା ସଦାଶିବ ପକ୍ଷେ ସହଜ ହେଲା ନାହିଁ । ସେ ମୁହଁ ତଳକୁ କଲା । କ୍ଷଣିକ ପରେ କ'ଣ ଭାବିଲା କେଜାଣି, ହଠାତ୍ ବେକ ଉପରକୁ ଟେକିଲା । ମୁହଁଟା ଉଜ୍ଜ୍ୱଳ ଗୁଲୁ ଗୁଲୁ । ଆଖି ତରାଟିଆ । ଭୁଷ୍‌କିନା କହିଲା- ବସୁଦେବ ! ଆଦୌ ମନା କରିବୁନି, କହୁଛି । ପଞ୍ଚାୟତ ନିର୍ବାଚନ ଘୋଷଣା ହେଇଯାଇଛି । ତୁ ସରପଞ୍ଚ ପାଇଁ ଛିଡ଼ା ହେଇପଡ଼ । ସ୍କୁଲ ଚେୟାରମ୍ୟାନ ଅଜୟ ତୋତେ ଧୋକା ଦେଇଚି । ତୁ ତା'ରି ବିରୁଦ୍ଧରେ ଛିଡ଼ା ହଅ । ଆମେ ତୋ ପାଇଁ ଲଢ଼ିବୁ । କୌଣସି ଗୋଟେ ପାର୍ଟିରୁ ଟିକେଟ୍ ପାଇଯିବୁ । ସେ ବ୍ୟବସ୍ଥା ଆମେ କରିବୁ । ଅଜୟ ବିରୁଦ୍ଧରେ ତୋର ଲଢ଼େଇଟା ଠିକ୍ ହବ । ପାର୍ଟି ବି ଆଗଭର ହେଇ ଆସିବ ତୋ ପାଇଁ । କାହିଁକି ନା ପାର୍ଟି ଜାଣେ, ବ୍ୟକ୍ତିଗତ ଶତ୍ରୁତା ହିଁ ରାଜନୀତିରେ ବେଶ୍ ମୁକାବିଲା କରିପାରିବ । ଗୋଟେ ଗୁଳିରେ ତୋର ଦି'ଟା ଶିକାର । ଅଜୟର ପ୍ରତିରୋଧ ସାଙ୍ଗକୁ ପାର୍ଟି ଲୋକ ଭାବରେ ସମସ୍ତ ଚିକିତ୍ସାର ତୋର ଆଶୁ ସୁବିଧା ।

ସଦାଶିବର ଏ ପ୍ରସ୍ତାବରେ ସୁମିତ୍ରା ଆଖିରେ ଜହକି ଆସିଲା ମେଞ୍ଚେ ଭରସା । ସେ ବସି ପଡ଼ିଲା । ବସୁଦେବର ହଁକୁ ଅପେକ୍ଷା କଲା । ମାତ୍ର କୌଣସି ଉତ୍ତର ବା ପ୍ରତିକ୍ରିୟା ନ ଶୁଣି ଗୁରୁତ୍ୱ ଦେବା କଣ୍ଠରେ ସଦାଶିବ ପୁଣି କହିଲା- କହୁନୁ କିଛି ମୋ ପ୍ରସ୍ତାବରେ ତୋର ମତାମତ ? ବସୁଦେବ କିଛି କହିଲାନି । ଥରେ ତା'ର ଶୁଭାକାଂକ୍ଷୀ ସାଙ୍ଗ ସଦାଶିବ, ଥରେ ତା' ସ୍ତ୍ରୀ ସୁମିତ୍ରାକୁ ଚାହିଁଲା । ସୁମିତ୍ରାର ମୁହଁରେ ଟହକୁଥିବା ଆଶା, ସ୍ୱପ୍ନ ଜୁଳୁଜୁଳୁ ଆଖିରେ ସେ ମୋହିଗଲା । ସତରେ, ଏବେ ସୁମିତ୍ରା କେଡ଼େ ସୁନ୍ଦର, କେଡ଼େ ପୂରିଲା ପୂରିଲା ଦିଶୁଚି !

: କହୁନ ! ତମ ସାଙ୍ଗ ପରା ପଚାରୁଛନ୍ତି । ସେ ଯାହା କହୁଚନ୍ତି, ସେଇଟା ଠିକ୍ । ତମେ କ'ଣ ସରପଞ୍ଚ ହେବା ଲାଗି ଯୋଗ୍ୟ ନୁହଁ କି ? କହିଲା ସୁମିତ୍ରା ।

ବସୁଦେବ ତଳକୁ ଚାହିଁଲା । ଏକପ୍ରକାର ଉତ୍ତେଜନାରେ ତା' ଶରୀର ଥରି ଉଠୁଥିଲା । ଶ୍ୱାସପ୍ରଶ୍ୱାସ ଦୀର୍ଘ ହେଉଥିଲା । ଏତେ ଉତ୍ତେଜନାକୁ ସମ୍ଭାଳିବା ପାଇଁ ତା'ର ଏ ପୀଡ଼ିତ ଶରୀର ଯେମିତି ପ୍ରସ୍ତୁତ ନଥିଲା !

ବସୁଦେବର ନୀରବତାକୁ ସହି ନପାରି ସଦାଶିବ ଚଢ଼ାଗଳାରେ କହିଲା, କ'ଣ ପାଇଁ ତୁ ନୀରବ ବସୁଦେବ ? ଆରେ, ଆପେ ବଞ୍ଚିଲେ ସିନା ଜଗତ ! ତୁ ପା' ଆଖିରେ ଦେଖିଲୁ, ପଞ୍ଚାବନ ବର୍ଷର ବିଧବା ବୁଢ଼ୀ ଟଙ୍କା ତିନି ହଜାର ପାଇଁ ଅନ୍ତର୍ଜାତି ବିବାହ କଲା ! ତୁ କାହାକୁ ଅପେକ୍ଷା କରୁଛୁ ? କ'ଣ ପାଇଁ ମୋ ପ୍ରସ୍ତାବକୁ ଏଡ଼ଉଚୁ ?

ଅଜୟ ଉପରେ ପ୍ରତିଶୋଧ ନେବା ପାଇଁ, ନିଜର ଚିକିତ୍ସା ପାଇଁ ମୁଁ ସରପଞ୍ଚ ଭଳି ଜନସେବକ ଆସନଟିକୁ ବଳି ଦେବି, ରାଜନୀତିରେ ସାମାନ୍ୟତମ ଆଗ୍ରହ, ସାମାନ୍ୟତମ ପ୍ରବେଶ ନଥାଇ ? ବସୁଦେବର ମନ ଭିତରେ ତୁହାକୁ ତୁହା ଖଟ୍‌କା ଲାଗୁଥିଲା ଏ ସବୁ ପ୍ରଶ୍ନରେ । ସେ କିଛି କହିପାରିଲା ନାହିଁ । ବିଡ଼ିବିଡ଼ିଆ ମୁହଁ ଉଠାଇ ଉପରକୁ ଚାହିଁଲା । ଦେଖିଲା ତା ଗାଈଟି ଧୀରେ ଧୀରେ ଆସି ତା' ନିଜ ବିଲର ଶେଷକୋଣରେ ଥିବା ଅଳ୍ପ କେଇପୁଞ୍ଜି ଧାନଗଛ ପାଖରେ ଚୁପ୍ କରି ଠିଆ ହେଲା ଏବଂ ବସୁଦେବ ଆଡ଼କୁ ଅନାଇଲା । ବସୁଦେବ ଏସବୁ ଗହୀରେଇ ନିରେଖୁ ଥିଲା । ଗାଈଟି ଏମିତି ନୀରବ ରହିବା ଦେଖି ସେ ଆଉ ସମ୍ଭାଳି ପାରିଲାନି । ହୁରି ଛାଡ଼ିଲା, 'ଆଉ କେଉଁଠି କିଛି ପାଇଲୁନି ? ଶେଷକୁ ନିଜ ବିଲକୁ ଆସିଲୁ ? କାହିଁକି ଛିଡ଼ା ହେଇଚୁ ? ସେତକ ଟୁଙ୍କି ଦେ' ଡେରି କରନା । ସବୁ ଭୁଲିଯା, ଟୁଙ୍କିଦେ ! ଆମର ନିଜର ଧାନଗଛ ଭାବି ଅଟକି ଯାଉଛୁ କି ? ମୁଲାଝା କରନା, ସେଥିରେ ଧାନ ନାହିଁ, ଟୁଙ୍କିନେ !'

ବସୁଦେବ ଏ କଥାରେ ସଦାଶିବ, ସୁମିତ୍ରା ଗାଈ ଆଡ଼କୁ ଚାହିଁଲେ । ଗାଈଟି ତଥାପି ସେମିତି ନୀରବ ରହିଥିଲା । ଚୁପ୍‌ଚାପ ଉଦାସ । ଭୋକର ଦାଉ ସହି ନପାରି ଯନ୍ତ୍ରଣାର ଲୁହ ପିଚିକି ଆସୁଚି ତା ଆଖିରୁ । ଆଉ ସମ୍ଭାଳିଲାନି ବସୁଦେବ । ସେ ଉହୁଁକି ପଡ଼ି ଚିତ୍କାର କଲା- କାହିଁକି ଅନେଇଚୁ, ଟୁଙ୍କିନେ, ଖାଇ ଯା, ଭୋକ ହେଉଚି' ପେଟ ଭର୍ତ୍ତି କର ? ଏତକ କହି ଏକ ତୀବ୍ର ଆବେଗରେ ଉଠିପଡ଼ି ଗାଈ ଆଡ଼କୁ ଧାଇଁଯିବାକୁ ଉଦ୍ୟତ ହେଲାବେଳକୁ ଧସ୍‌କିନା ପଡ଼ିଗଲା ହିଡ଼ ଉପରେ !



(ଝଙ୍କାର : ଜୁଲାଇ ୧୯୯୭)

# ଶିଶୁ

ଫୋନ୍‌ଟା ଥୋଇଦେଇ ସାରିଲାବେଳକୁ ରମାନାଥଙ୍କର ମୁହଁ ଝାଳେଇ ସାରିଥିଲା । ନାକ ପୁଡ଼ାରୁ ଠାଏ ଠାଏ ବାହାରି ଆସୁଥିଲା ଦୀର୍ଘଶ୍ୱାସ । ବଂଶ ବୁଡ଼ିଲା ବେଳକୁ ଘୋଡ଼ାମୁହାଁ ପୁଅ ଜନ୍ମ ! ଗୋଟେ ବୋଲି ପୁଅ । ବାପାର ନାଁ ତଳେ କଚାଡ଼ି ଦେଲା । ମୁହଁ ଓହଳି ପଡୁଛି ତଳକୁ ତଳକୁ ।

ରମାନାଥ ଫୋନରେ ଶୁଣିଥିଲେ : ଆଜ୍ଞା ! ସଂଗ୍ରାମ କେବଳ ଆପଣଙ୍କ ପୁଅ ବୋଲି କଲମ ମୁନ ଠକ୍ କରି ଅଟକି ଯାଉଛି, ନହେଲେ ଯାଆନ୍ତା ତିନିପାଞ୍ଚିରୁ । ମେଳାରେ ଆଉ ଦି' ତିନି ଜଣ ସାଙ୍ଗଙ୍କ ସହ ଗୋଟେ ଝିଅକୁ ନଇ ତଳକୁ ଝିଙ୍କୁଥିଲେ । ଏମିତି ଘଟଣା ଏଥର ମିଶାଇ ଦଶ, ସମ୍ଭାଳନ୍ତୁ, ପସ୍ତେଇବେ, ଏବଠୁଁ ସତର୍କ କରନ୍ତୁ । ଏବେ କଲେଜ ପିଲା, ପୋଲିସ କେଶ୍ ପ୍ରମାଣିତ ହେଲେ ବୁଝୁଛନ୍ତି ତ ! ଏବେ ବି ରମାନାଥଙ୍କ କାନରେ ବାଜୁଛି ଟାଏଁ ଟାଏଁ । ମନକୁ ମନ ଟହକୁଥିଲେ ରମାନାଥ : ଆରେ ତୋରି ଏକା ଏ ବୟସରେ ଝିଅ ଦର୍କାର, ନା ଆମକୁ ବି ଦର୍କାର ହୁଏ ଏବେ ! ଝିଅ ସମ୍ଭୋଗିବାଟା କ'ଣ ତୋର ଏକ୍‌ଚାଟିଆ । ଏବେ ବି ପରା ନିତି ନୂଆ ଦେହଟେ ପାଖରେ ନଥିଲେ ରାତିରେ ମୋତେ ନିଦ ହୁଏନା । କିନ୍ତୁ କେହି ତ କେବେ ଏମିତି ମୋତେ ସତର୍କ କରି ଦେଇନାହିଁ । ବାପା ଥିଲା ବେଳେ କେହି ତ ତାଙ୍କୁ ଡାକି କହିନାହିଁ ତମ ପୁଅ ଲଫଙ୍ଗା, ବାଜୁଙ୍ଗା ହେଇଗଲା ବୋଲି । କିହୋ ! ପକେଟ୍‌ରେ ଟଙ୍କା ଅଛି, ଦେହ ଅଜାଡ଼ିଦେବା ପାଇଁ ଲାଇନ୍ ଲଗା ଝିଅ ଅଛନ୍ତି, ନିର୍ଜନ ଘର ଅଛି, ଅନ୍ଧାର ଅନ୍ଧାର ନିଛାଟିଆ ରାତି ଅଛି ! ମେଳାରେ ଗୋଟେ ଝିଅକୁ ନଇ ତଳକୁ ଝିଙ୍କୁଥିଲ କାହିଁକି ? ଛି'ଛି' । ରମାନାଥଙ୍କର ନାକପୁଡ଼ା ଫୁଲି ଉଠୁଥିଲା । ଦି'ଦିନ ତଳେ ଗୋଟେ କଲେଜ ଛାତ୍ର ଉପରେ ରାଗରେ ସ୍କୁଟର ଚଢ଼େଇ ଦେଇଥିଲା ସଂଗ୍ରାମ ବିଚ୍ ବଜାରରେ । ଛାତ୍ରଟି ଗତ କଲେଜ ୟୁନିଅନ ନିର୍ବାଚନରେ ସଂଗ୍ରାମକୁ ଭୋଟ୍ ଦେଇ ନଥିଲା ଏବଂ

ନିର୍ବାଚନ ପୂର୍ବରୁ ସଂଗ୍ରାମ ସହ କିଛି ଉତ୍ତେଜନାପୂର୍ଣ୍ଣ ଯୁକ୍ତିତର୍କ ହେଇଥିଲା । ନିର୍ବାଚନ ଜିଣିଗଲା ପରେ ସଂଗ୍ରାମ ଏମିତି ଭାବରେ ସେ ଛାତ୍ରଟି ଉପରେ ପ୍ରତିଶୋଧ ନେଇଥିଲା । ଏବଂ ସେହି ଅତ୍ୟାଚାରର ପ୍ରତିବାଦ କରି ପ୍ରାୟ କୋଡ଼ିଏ ପାଖାପାଖି ଛାତ୍ର ଉତ୍ତ୍ୟକ୍ତ ହେଇ ପହଞ୍ଚି ଥିଲେ ତାଙ୍କ ପାଖରେ । ସେଦିନ ରମାନାଥଙ୍କୁ ମୁଣ୍ଡ ନୋଇଁବାକୁ ପଡ଼ିଥିଲା ପିଲାମାନଙ୍କଠାରେ ଏବଂ ସଂଗ୍ରାମ ସେଇମାନଙ୍କର ଗୋଟେ ଭାଇ ବୋଲି ସେମାନଙ୍କୁ ବୁଝାଇବାକୁ ପଡ଼ିଥିଲା ରାମାୟଣ, ମହାଭାରତରୁ ବହୁ ଉଦାହରଣର ଦ୍ୱାହି ଦେଇ । ସେଦିନ ବି ଏମିତି ଏକ ଫୋନ୍ ପାଇଥିଲେ ରମାନାଥ । ଜଣକ ଉପରେ ରାଗ ସୁଝିବା, ଦାଉ ଦାଧିବା ପାଇଁ କେତେ ନା ହଡ଼ିକାଠ ଅଛି, ନିଜ ମୁହଁ ଆଦୌ ଚିହ୍ନା ପଡ଼ିବ ନି, ସିଧାସଳଖ ସ୍କୁଟର ମଡ଼ାଇବା କ'ଣ ଦରକାର ! ଛି'ଛି' ଏତେ ବଡ଼ ବ୍ୟବସାୟୀ, ସମାଜସେବୀ ରମାନାଥର ପୁଅ ଏଯାଏ ଶତ୍ରୁ ସାଧିବାଟାକୁ ଶିଖି ପାରିଲାନି !

ରାତି ବଢ଼େଇ ଯାଇଥାଏ । ସଂଗ୍ରାମ ଆହୁରି ଫେରି ନ ଥାଏ । ରମାନାଥ ସେମିତି ଏପାଖ ସେପାଖ ଟହଲୁ ଥା'ନ୍ତି । ବାହାରେ କାର୍ ରହିବାର ଶବ୍ଦ ହେଲା । ଏବଂ ଶୁଭିଲା ସଂଗ୍ରାମର 'ନାଇଟ୍ ବାୟ'ର ଶବ୍ଦ । ରମାନାଥ ଗମ୍ଭୀର ହେଇ ଉଠିଲେ । ଟଳମଳ ପାଦ ଓ ରଙ୍ଗ ରଙ୍ଗ ଚକ୍ଷୁରେ ଉପରକୁ ଉଠୁଥିଲା ସଂଗ୍ରାମ । ଆଗତ ବଂଶଧରର ଏ ଅସୂର୍ଯ୍ୟ ପଦପାତରେ ଉତ୍କ୍ଷିପ୍ତ ହେଇ ଉଠିଲେ ରମାନାଥ । ଚିତ୍କାର କରି ଉଠିଲେ : ଏସବୁ କ'ଣ ହଉଚି ସଂଗ୍ରାମ ? ସଂଗ୍ରାମ ସିଧା ଉପରକୁ, ଉପରକୁ ଉପରକୁ । ବିନା ଉତ୍ତରରେ । ପ୍ରତିକ୍ରିୟାହୀନ ଭାବରେ । ରମାନାଥଙ୍କର ଚିତ୍କାର ଅବହେଳିତ ହେଇଯିବା ଯୋଗୁଁ ସେ ରାଗରେ ରକ୍ତ ଚାଉଳ ଚୋବାଇବାରେ ଲାଗିଲେ । ଏଇ କଲେଜ ସ୍ତରରୁ ତୁ ମଦୁଆ, ରାଣ୍ଡୁଆ, ଯୁଆଡ଼ି ହିସାବରେ ଗଣନା ହେଇଗଲୁ ସଂଗ୍ରାମ ? ଜାଣୁ ପୋଲିସ ପାଖରେ ତୋ' ନାଁରେ ଦଶଟା ଅଭିଯୋଗ ଅଛି । ମୋ' ଅନ୍ତେ ତୋର ଅବସ୍ଥା କ'ଣ ହବ ଜାଣୁ ? ଆମେ ବି ମଦ ପିଇଚୁ, ପିଉଚୁ, କିନ୍ତୁ ରାସ୍ତାରେ ଟଳ ଟଳ ହେଇନୁ । ଆମକୁ କେହି ଆଣି ଆମ ଘରର ରାସ୍ତା ଦେଖେଇ ଯାଇନି ।

: ସେଥିପାଇଁ ତ ବାପା ତମେ ନିତି ପିଅ, ରାସ୍ତାରେ ଟଳ ଟଳ ହୁଅନା । ଦୁନିଆର ହାଜିରା ଖାତାରେ ତମ ନାଁ ଲେଖାଯାଇନି । ମୁଁ କେତେବେଳେ ପିଇ ଦିଏ, ଟଳ ଟଳ ହୁଏ, ମୋ' ନାଁଟା ପବନରେ ଦସ୍ତଖତ କରିଦିଏ ! ସଂଗ୍ରାମ ରମାନାଥଙ୍କର ମୁହଁକୁ ମୋଟେ ଚାହିଁ ନ ଥିଲା । ଏବଂ କହିଲା : କାଲି ସକାଳୁ ପାଞ୍ଚଶହ ଟଙ୍କା ଦରକାର ବାପା ! ଗୋଦାମକୁ ଯିବା ପୂର୍ବରୁ ଦେଇ ଯାଇଥିବ ।

: ଟଙ୍କା ମୁଁ ଖଣି ପକେଇନି ଯେ ତୁ ଯେତେବେଳେ ମନଇଚ୍ଛା ନେଇ ଉଡ଼େଇବୁ ! ରମାନାଥଙ୍କର ସ୍ୱର ଥିଲା ଦୃଢ଼ ।

: ତମ ଅଟା ଗହମ, ଚାଉଳ, ଡାଲି, ତେଲ ବିକ୍ରିର ଲାଭ ପଇସାରୁ ମୁଁ ମୋଟେ ଏଯାଏ ତ ନେଇନି । ତମେ ଯେଉଁ ବସ୍ତା ବସ୍ତା ଗୋଡ଼ି, ବାଲି, ତେନ୍ତୁଳି

ମଞ୍ଜି, ଚୋକଡ଼ ବିକିଚ, ସେଇ ଲାଭର ବ୍ୟାଙ୍କ ଇଣ୍ଟେରେଷ୍ଟରୁ ସାମାନ୍ୟ ଖର୍ଚ୍ଚ କରୁଚି ମାତ୍ର !

: ଭଲ ହେଲା, ବାପ ଗୋଡ଼ି, ବାଲି, ଚୋକଡ଼ ବିକ୍ରି କରି ଟଙ୍କା କମାଉଚି, ପୁଅ ସେଇ ପଇସାରେ ଅୟସ କରି ସମାଜରେ ବଦ୍‌ନାମ ଅର୍ଜୁଚି, ଏଇଟା ତ ପୁଅର ପାରିବାର ପଣ ! ଗୋଡ଼ି, ବାଲି, ଚୋକଡ଼ ପଇସାର ତୁ କ୍ରୀତଦାସ ନୁହେଁ ତ ଆଉ ଅଧିକାଟା କ'ଣ ? ମୁଁ ସିନା ଭେଜାଲ କାରବାର କରୁଚି, ତୁ ତ ଭେଜାଲ ମଣିଷ ହେଇଗଲୁ ।

ଥମ୍ କରି ଛିଡ଼ା ହେଇ ଯାଇଥିଲା ସଂଗ୍ରାମ । ଏକ ଭିନ୍ନ ଚମକ ଖେଳିଗଲା ସାରା ଆଖି । ସେତେବେଳକୁ ସହରର କୌଣସି ଏକ ଛକରୁ ଶୁଭିଥିଲା ଏକ ସତର୍କକାରୀ ହୁଇସିଲର ଲମ୍ୱା ରଡ଼ି । ସଂଗ୍ରାମ ଆସ୍ତେ ଆସ୍ତେ ଚାଲିଗଲା ନିଜ ରୁମକୁ । ଦୀର୍ଘ ଶ୍ୱାସର ଲହରି ଖେଳୁଥିଲା ରମାନାଥଙ୍କ ଦୁଇ ନାକପୁଡ଼ାରିରେ ।

x x x x x x x x x

କାହାଣୀର ଫର୍ଦ୍ଦ ଲେଉଟିଲା ବେଳକୁ ଶବ୍ଦ ଧାଉଁଥାଏ, ବୁଲି ଯାଇଥାଏ ତା'ର ବେଙ୍ଗଳା । ରମାନାଥଙ୍କର ମୁଣ୍ଡ ଏଣିକି ଭାରି ଭାରି, ଚିଡ଼ିଚିଡ଼ା ହେଇ ଉଠୁଥାଏ । ବେଳେବେଳେ ଭୟଭୀତ ଛାତି ହେଇ ଉଠୁଥାଏ ଦାଉଁ ଦାଉଁ । ଏଣିକି ସଂଗ୍ରାମ ତାଙ୍କ ସହ ଆଉ ସେମିତି କଥାବାର୍ତ୍ତା ହେଉ ନାହିଁ, ଭାରି ଚୁପ୍‌ଚାପ୍ । ଗମ୍ଭୀର ! ଆଉ ସାଙ୍ଗମାନଙ୍କ ମେଳରେ ଯାଉ ନାହିଁ ପାର୍ଟି, ପିକ୍‌ନିକ୍ । ସିନେମା ହଲ୍ ଛକରେ ସ୍କୁଟର ଛିଡ଼ା କରି ଝିଅମାନଙ୍କୁ ଖା'ଖା' ଆଖିରେ ଚାହୁଁ ନାହିଁ । ଏଣିକି ଦାଢ଼ି କାଟିବା, ନିଶ ବାଗେଇବା ପ୍ରତି ତା'ର ଆଉ ଯତ୍ନ ନାହିଁ । ଖାଇଲାବେଳେ ଚିକେନ୍ ରୋଷ୍ଟ କାହିଁକି ହେଇ ନାହିଁ ବୋଲି ଡିସ୍ ଫୋପାଡୁ ନାହିଁ । ଏଣିକି ବାର, ନାଇଟ୍ କ୍ଲବ୍ ଆଟେଣ୍ଡ କରିବାକୁ ଯାଉ ନାହିଁ କି ତା'ଗାଲରେ ଲିପଷ୍ଟିକ୍ ଦାଗ ଆଉ ଦେଖିବାକୁ ମିଳୁନି । ନୂଆ ନୂଆ ଡିଜାଇନ୍‌ର ସାର୍ଟି ସୁଟିଂ କ'ଣ ମାର୍କେଟକୁ ଆସିଲା ସେ ସମ୍ପର୍କରେ ସେ ଆଉ ଖବର ରଖୁନି । କ'ଣ ହେଇଚି ସଂଗ୍ରାମର ? ଏଣିକି ଇଉନିଭରସିଟିକୁ ବି ଯାଉ ନାହିଁ ରୀତିମତ୍, ରାତି ରାତି ମୋଟା ମୋଟା ବହି ସବୁ କ'ଣ ପଢ଼ିବାରେ ଲାଗି ରହିଚି । ଏଣିକି ତା' ମୁହଁରୁ ବିଅର ବା ରମ୍‌ର ଗନ୍ଧ ଆଉ ବାହାରୁନି । କ'ଣ ହେଇଚି ସଂଗ୍ରାମର ? ମୁହଁରେ ହତାଶା କି ବିବ୍ରତର ମୁଖବନ୍ଧ ତ ନାହିଁ, ବରଂ ଆଖି ଯୋଡ଼ିକରୁ ଦାମ୍ଭିକତା ଛିଟିକି ପଡୁଛି ! ଏଣିକି ତାକୁ ଫୁଟ୍‌ପାଥର ଚା' ଦୋକାନରେ ଦେଖିବାକୁ ମିଳୁଛି । ଦେଖିବାକୁ ମିଳୁଛି ରାତି ରାତି ସହରତଳି ଆବର୍ଜନାପୂର୍ଣ୍ଣ ବସତିରେ କେତେଜଣଙ୍କ ସହ ଗୁରୁତ୍ୱପୂର୍ଣ୍ଣ କଥାଭାଷାରେ ମଗ୍ନ ରହିବାରେ । ସାଙ୍ଗ ସାଥୀମାନଙ୍କ ସହ ଗପିବାଟାକୁ କହିଲାଣି ଲାଂଗୁଡ଼ିଆ ସମୟ ! କ'ଣ ହେଇଚି ସଂଗ୍ରାମର ? ରମାନାଥଙ୍କ ଚିନ୍ତାର କୁଣ୍ଟ ଆଉ ପାଉନାହିଁ । ଯେଉଁ ସଂଗ୍ରାମର ରୁମ୍ ଭିତରକୁ ପଶିଗଲେ ଏକ ଅଭିଜାତ ସ୍ୱପ୍ନପୁରକୁ

ଭେଟିଲା ଭଳି ଲାଗେ, ଯେଉଁ ରୁମ୍‌ରେ, ଡେନିସ୍ମ, ପ୍ୟାରିସ୍ ତରୁଣୀମାନଙ୍କର ରତିରଙ୍ଗା ମୁଖ, ଉଚ୍ଛଳ ଛାତିର ପ୍ରୋଟ୍ରେଟ୍ ସବୁ ଝୁଲୁଥିଲା, ସେ ରୁମ୍ ସାରା ଆଜି ଭର୍ତ୍ତି ଗଦା ଗଦା ବହି ! କିନ୍ତୁ ଦିନେ ସଂଗ୍ରାମ କହୁଥିଲା ବହି ପଢ଼ିବାଟା ଗୋଟେ ଫାଜିଲ୍ ଅଳସୁଆମୀ, ବହି ପଢ଼ିବା ଅପେକ୍ଷା ସୋ-ରୁମ୍‌ମାନଙ୍କରେ କପଡ଼ା, କସ୍‌ମେଟିକ୍‌ସ ଦେଖିବାରେ ମୂଲ୍ୟ ଅଛି, ମୂଲ୍ୟ ଅଛି କ୍ରିକେଟିୟର୍‌ସଙ୍କ ରନ୍ ଘୋଷିବାରେ ! ଦି ଦିନ ତଳେ ରମାନାଥ ସଂଗ୍ରାମର ରୁମ୍‌କୁ ପଶିଯାଇଥିଲେ । ସଂଗ୍ରାମ ଗୋଟେ ବହିରୁ କଣ ନୋଟ୍ କରିବାରେ ବ୍ୟସ୍ତ ଥାଏ । ସେହି ରୁମ୍‌ର ଚାରିକାନ୍ଥରେ ଝୁଲୁଥିଲା ଚାରିଟି ଚିତ୍ର ।

ପୂର୍ବ କାନ୍ଥ : ଗୋଟେ କୁକୁର ଦାନ୍ତରେ ରୁଟି ଖଣ୍ଡେ ଧରି ଧାଉଁଚି, ଧାଉଁଚି । ପଛେ ପଛେ ଧାଉଁଛି ଦେହରେ ବାକି ରହି ଯାଇଥିବା କଙ୍କାଳସାର ସାତ ଆଠବର୍ଷର ଲଙ୍ଗଳା ଶିଶୁ !

ଠିକ୍ ସେହି ସମୟରେ ରମାନାଥ ଦେଖୁଥିଲେ ଝିଟିପିଟିଟାଏ ସେଇ ଚିତ୍ର ଉପରକୁ ଧାଇଁ ଯାଇ କୁକୁର ପାଟିରେ ଥିବା ରୁଟି ଖଣ୍ଡ ଉପରେ ପାଟି ଆଁ କରି ଟାକ୍ ଟାକ୍ କରୁଛି । ଯେମିତି ସେ ସେଇ ଚିତ୍ରର ରୁଟିକୁ ପ୍ରକୃତ ରୁଟି ବୋଲି ଗ୍ରହଣ କରି ନେଇଛି ।

ପଶ୍ଚିମ କାନ୍ଥ : ଏକ ଭୟଙ୍କର ଝଡ଼ିବର୍ଷା । ଗଛ ସବୁ ଭାଙ୍ଗି ପଡ଼ି ଲୋଟୁଚି ଭୂଇଁରେ । ନଦୀ ବନ୍ଧରେ ଶହ ଶହ ଲୋକ, ହାଉ ଯାଉ । ବନ୍ଧ ଭାଙ୍ଗିବାର ଆସନ୍ନ ବିପଦରୁ ରକ୍ଷା କରିବା ଲାଗି ପ୍ରାଣପଣେ ଅଣ୍ଟା ଭିଡ଼ିଛନ୍ତି ସେମାନେ । କିଛି ଦୂର ଏକ ପାଞ୍ଚମହଲା କୋଠା ଉପରୁ ଗୋଟେ ପେଟୁଆ ଲୋକ ବାଇନାକୁଲାରରେ ନିରେଖୁଛି ସେଇ ଆସନ୍ନ ଆଶଙ୍କାର ନଦୀବନ୍ଧକୁ । ମୁହଁରେ ଏକ ଲାଳୁଆ ହସ ବୁଲି ଆସୁଚି ପାଟିର ଏ କଳରୁ ସେ କଳ ।

ଠିକ୍ ସେଇ ସମୟରେ ରମାନାଥ ଦେଖୁଥିଲେ ଗୋଟେ ବୁଢ଼ୀ ବୁଢ଼ିଆଣୀ ବାଇନାକୁଲାର୍ ନଳୀର ବାହାର ପାଖ ମୁହଁରେ ଥିର୍ କରି ବସିଚି ।

ଉତ୍ତର କାନ୍ଥ : ସୂର୍ଯ୍ୟ ଉଇଁଚି । କିରଣ ଛାଇ ଦେଲାଣି ଚାରିଆଡ଼ । ଗୋଟେ ସତୁରି, ଅଶୀବର୍ଷର ବୁଢ଼ୀ ହସି ହସି ଦାଣ୍ଡର ଅରମା ପହଁରୁଚି ଏବଂ ଗୋଟେ ଯୁବକ ଶୋଇଚି ଖଟରେ । ଖଟ ପାଖରେ ଗୋଟେ ଆସ୍‌ଟ୍ରେ । ଆସ୍‌ଟ୍ରେ ଉପରେ ଧୂମ୍ରପାତ କରି ଚାଲିଚି ଜଳନ୍ତା ସିଗ୍ରେଟ୍‌ଟେ !

ଠିକ୍ ସେହି ସମୟରେ ରମାନାଥ ଦେଖୁଥିଲେ ମାଛିଟିଏ ସେଇ ଯୁବକର କାନ ପାଖରେ ଗୁଣୁ ଗୁଣୁ ହଉଚି । ମାଛିଟାଏ !

ଦକ୍ଷିଣକାନ୍ଥ : ଆକାଶ ମେଘବର୍ଣ୍ଣ । ଏକ ଘନ କଳା ଛାଇ ବ୍ୟାପ୍ତ ହେଇ ଯାଇଚି ସାରା ଆକାଶ । ଆକାଶ ତଳେ ସମଗ୍ର ପୃଥିବୀର ମଣିଷମାନେ ଭୟଭୀତ, ଶିହରିତ ହେଇ ଉଠୁଛନ୍ତି । ଆଖିଗୁଡ଼ିକ ଅସ୍ୱାଭାବିକ ଭାବେ ଡିମା ଡିମା ହେଇ ଯାଇଛି । କିନ୍ତୁ ଆକାଶରେ ଏମିତି ଘନ କୃଷ୍ଣ ଛାଇ ଦେଖି ଛୋଟ ଛୋଟ ଶିଶୁମାନେ ତାଳିମାରି ହସି ନାଚୁଛନ୍ତି । କୁରୁଳୁଛନ୍ତି । ସେଇ ଘନଛାୟା ପାଖେ ଏକ ବୃହତ୍‌କାୟ ମଣିଷ ଛିଡ଼ା

ହେଇଚି । ମୁଣ୍ଡ ଲାଗିଚି ଆକାଶରେ । ପାଦ ଭୂଇଁରେ । ତା' ମୁହଁରେ ଏକ ଦିଗ୍‌ବିଜୟୀ ହସ । ଅଥଚ ପାଦରୁଁ ଛାତି ଡେଇଁ ବେକଯାଏ ହେଇ ଉଠିଛି ପାଉଁଶ ବର୍ଣ୍ଣ । ମୁଣ୍ଡକୁ ଛାଡ଼ି । ଯେମିତି ସେଇ ମଣିଷଟିର ପାଦରୁଁ ବେକଯାଏ ସବୁ ଅଂଶ ଆନାସ୍‌ଥେଟିକ୍, ସ୍ପର୍ଶ ଶକ୍ତି ରହିତ ।

ହୁଏତ ସେଇ ଲୋକଟି ଗାମାରେବମ୍ ଶକ୍ତି ସଂପନ୍ନ ଏକ ରାଷ୍ଟ୍ରର ନାୟକ ଯେ କି ବିଶ୍ୱର ସର୍ବଶ୍ରେଷ୍ଠ କର୍ତ୍ତା ବୋଲି ନିଜକୁ ଜାହିର କରିପାରୁଥିବାର ଅହଂକାରରେ ସ୍ଫୀତ । ଅଥଚ ଛାତି ସମେତ ସମଗ୍ର ଦେହ ପାଉଁଶରେ ପରିଣତ ହେଇ ଆସୁଛି, ସେ ସମ୍ପର୍କରେ ସେ ନିଶ୍ଚେତନ !

ରମାନାଥବାବୁ ଦେଖିଲେ, ସେଇ ଚିତ୍ରର ତଳେ ସଂଗ୍ରାମର ହାତ ଅକ୍ଷରରେ ଲେଖା ଯାଇଚି; ଗୋଟେ ଗୁଳି, ଗୋଟେ ରାଜନୈତିକ ନାକମୀ !

ରମାନାଥ ହଡ଼ବଡ଼େଇ ଯାଇଥିଲେ । ସଂଗ୍ରାମ ସେମିତି ନିମଜ୍ଜିତ ଥିଲା ନୋଟ୍ କରିବାରେ । ହଠାତ୍ ଏକ ଅମୋଘ ଚିନ୍ତାରେ ମୁହଁ ଉପରକୁ ଉଠାଇଲାବେଳେ ରମାନାଥଙ୍କୁ ଦେଖି ଚମକି ଉଠିଥିଲା । ତତ୍‌କ୍ଷଣାତ୍ ରମାନାଥ କହି ଉଠିଥିଲେ : ସଂଗ୍ରାମ : ଏ ଛବିଗୁଡ଼ାକ ଭାରି ସୁନ୍ଦର ହେଇଚି ।

ସଂଗ୍ରାମର ମୁହଁ ବଦଳି ଯାଇଥିଲା, ପ୍ରଜାପତିର ରଙ୍ଗ ବଦଳିଲା ଭଳି ! ଆଖିର ଦ୍ୱାର ଖୋଲି ଯାଇଥିଲା । ସେ ପ୍ରଶ୍ନକଲା : ଯା' ପୂର୍ବର ଚିତ୍ରଗୁଡ଼ାକ କ'ଣ ଅସୁନ୍ଦର ଦିଶୁଥିଲା ?

:ନା, ସେଗୁଡ଼ିକ ବି ସୁନ୍ଦର ଦିଶୁଥିଲା । ରମାନାଥ ଉତ୍ତର ଦେଇଥିଲେ । ସଂଗ୍ରାମ ମାପି ନେଇଥିଲା ତା' ବାପାର ସୌନ୍ଦର୍ଯ୍ୟବୋଧର ଓଜନ । ଏମାନଙ୍କୁ ସବୁ ସୁନ୍ଦର ଦିଶେ । ଜୀବନବୋଧ ସମ୍ପର୍କରେ ଯେଉଁମାନେ ବଳଦ, ସବୁ ଛବି ସେମାନଙ୍କ ପାଇଁ ସୁନ୍ଦର । ତଥାପି ସଂଗ୍ରାମ ପଚାରିଲା : ଆଗର ସେ ଛବି, ଏବର ଏ ଛବି ସବୁ ଭିତରେ କ'ଣ କିଛି ତଫାତ୍ ନାହିଁ ବାପା ?

:ଆରେ, ଛବି ଆଖିକୁ ଭଲ ଦେଖା ହେଲେ ହେଲା ! ଭଲ ଦେଖା ହଉଥିବା ଛବି ସବୁ ଭିତରେ ଫରକ୍ କ'ଣ ଅଛି ? ରମାନାଥ ଉତ୍ତର କଲେ ।

ଜୀବନ ଉପରେ ପାଦଦେଇ ତୁଳାଉଥିବା ମଣିଷର ଏହା ହିଁ ଅବସ୍ଥା । ତା' ବାପାକୁ ଆଉ କିଛି କହିପାରି ନଥିଲା ସଂଗ୍ରାମ । ରମାନାଥ ଏକ ଗଭୀର ସନ୍ତୋଷର ନିଃଶ୍ୱାସ ଭିତରକୁ ଟାଣିନେଲେ, ସାଇକଲରେ ପମ୍ପ ଦେଲା ଭଳି । ଯା' ହଉ, ପୁଅ ଏଥର ବାଟକୁ ଆସୁଚି । ଗୋଟେ ବଡ଼ ପରୀକ୍ଷା ଦବା ପାଇଁ ସେ ବୋଧେ ପ୍ରିପେୟାର ହଉଚି, ଯେଉଁଥିରେ ଉତ୍ତୀର୍ଣ୍ଣ ହେଇଗଲେ ସେ ନିଶ୍ଚେ ଗୋଟେ ବଡ଼ ସରକାରୀ ଅଫିସର ହବ ! ସେ ନିଜେ ବି କମ୍ କାମ କରିଚନ୍ତି ! ସାମାନ୍ୟ ଭୁଷାମାଲ୍ ଦୋକାନରୁ ଏବେ ଦଶଟି ଗୋଦାମ୍‌ର ମାଲିକ !

x x x x x x x x x

ଆଜି କିନ୍ତୁ ରମାନାଥଙ୍କ ଛାତିରେ କିଏ ଯେମିତି ଛୁରି ଭୁସି ଦେଇଚି । ସେ ଖାଲି ଡହଳ ବିକଳ । ହାଇଁ ପାଇଁ ! ନିଜକୁ ନିଜେ ନାଡ ମାରି ହେଉଚନ୍ତି । ସେଲସ୍‌ଟେକ୍‌ସ ଅଫିସର ମିଃ ସାହୁ ଆସି ପହଞ୍ଚିଲା ପରେ ରମାନାଥ ଯେତେବେଳେ ନିଜର ଧର୍ମକୋଠିଟି ଖୋଲିଥିଲେ ସେତେବେଳେ ସେ ରୁମ୍‌ରେ ଅଭିରାମ ପରମହଂସଙ୍କର ଷ୍ଟାଚ୍ୟୁ ପରିବର୍ତ୍ତେ ସେ ଆସ୍ଥାନରେ ଗୋଟେ ଲଙ୍ଗଳାସାର ଶିଶୁର ଷ୍ଟାଚ୍ୟୁ ରହିଚି । ଅଭିରାମ ପରମହଂସଙ୍କର ଭକ୍ତ ମିଃ ସାହୁ ଏହା ଦେଖି କିଛି କହି ନ ଥିଲେ ସୁଦ୍ଧା ତାଙ୍କ ମୁହଁରେ କେମିତି ଏକ ବିରକ୍ତି, ଏକ ଅସନ୍ତୋଷର ଛାଇ ଚହଟୁଥିଲା, ଯାହାକୁ ସେ ବାରି ପାରୁଥିଲେ ।

ମିଃ ସାହୁ ଚାଲିଗଲା ପରେ ରମାନାଥ ଘରର ସମସ୍ତଙ୍କୁ ଡାକି ପଚାରିଥିଲେ ଏ କାଣ୍ଡର ନାୟକର ନାଁ । ପୁରୁଣା ଚାକର ହରିଚରଣ କହିଥିଲା ଯେ, ସାନବାବୁ ହିଁ ସକାଳୁ ସେ ରୁମ୍ ଖୋଲିଥିଲେ । ରମାନାଥଙ୍କ ମୁହଁ ରଙ୍ଗା ପଡ଼ିଯାଇଥିଲେ ସୁଦ୍ଧା ଦାନ୍ତକୁ ଦାନ୍ତ ଦାବି ଧରିଥିଲେ ।

ଉଚ୍ଚ ସରକାରୀ କର୍ମଚାରୀଙ୍କୁ ସନ୍ତୁଷ୍ଟ, ନିଜର କରି ରଖିବାର ଏ କୌଶଳଟି ଆଜି ଶରାହତ । ରମାନାଥ ଜାଣନ୍ତି ଆଜିର ଅନେକ ପଦସ୍ଥ ସରକାରୀ କର୍ମଚାରୀ କୌଣସି ନା କୌଣସି ବାବାଙ୍କ ଭକ୍ତ । ଏବଂ ସେମାନଙ୍କୁ ନିଜର କରିବାର ସବୁଠୁଁ ଭଲ ଉପାୟ : ସେ ବାବାଙ୍କର ପରମ ଭକ୍ତ ବୋଲି ପ୍ରଚାର କର, ପ୍ରଚାର ! ବାବାଙ୍କ ଅନୁଷ୍ଠାନ ଆନୁକୂଲ୍ୟରେ ଗୋଟେ ଦି'ଟା ଉତ୍ସବର ଆୟୋଜନ କର, ଆୟୋଜନ ! ପଦସ୍ଥ ଅଫିସରଙ୍କୁ ମୁଖ୍ୟଅତିଥି ଆସନ ଯୋଗାଇଦିଅ, ଯୋଗାଇଦିଅ ! ବିଶେଷ କରି ଜଣେ ନୂଆ ସେଲ୍‌ସଟେକ୍ସ ଅଫିସର ଆସିଲାମାତ୍ରେ ସେ ଖବର ସଂଗ୍ରହ କରନ୍ତି ନୂଆ ଅଫିସର ଜଣକ କେଉଁ ବାବାଙ୍କ ଭକ୍ତ । ସେ' ଅନୁଯାୟୀ ଧର୍ମକୋଠିଟି ବଦଳିଯାଏ । ବେଳେବେଳେ ସତ୍ୟସାଇ ଧର୍ମକୋଠି ତ, କେତେବେଳେ ପ୍ରଜାପିତା ବ୍ରହ୍ମାକୁମାରୀ ଧର୍ମକୋଠି ତ, କେତେବେଳେ ଅନୁକୂଳଚନ୍ଦ୍ର ଧର୍ମକୋଠି ତ, କେତେବେଳେ ଅଭିରାମ ପରମହଂସ ଧର୍ମକୋଠି ତ କେତେବେଳେ ମହେଶଯୋଗୀ ଧର୍ମକୋଠି ତ, କେତେବେଳେ ଅରବିନ୍ଦ ଧର୍ମକୋଠି ! କୋଠିଟି ତେଣୁ ଫେଣ୍ଟାଫେଣ୍ଟି ଧର୍ମକୋଠି !

ସେଠି ଆଜି କିନ୍ତୁ ଗୋଟେ ଶିଶୁର ପ୍ରତିମୂର୍ତ୍ତି ! ଏହା କେଉଁ ଧର୍ମର ? ରମାନାଥ ବୁଝିପାରିଲେନି । ଯା' ଭିତରେ ପୁଣି ଗୋଟେ ନୂଆ ଧର୍ମ କେଉଁଠି ଚିରିକି ପଡ଼ିଲାଣି, ଯାହାକୁ ସେ ଏଯାବତ୍ ଜାଣି ନାହାନ୍ତି, ଏହା ତ ବଡ଼ ବିପଜ୍ଜନକ କଥା ! ଖବରକାଗଜବାଲା କ'ଣ ଏ ନୂଆଧର୍ମକୁ ଜାଣି ନାହାନ୍ତି ନା ଏ ଧର୍ମର ବିରୋଧୀ ଯେ ଖବରକାଗଜରୁ ଏ ଧର୍ମ ସମ୍ପର୍କରେ ଗୋଟେ ଲାଇନ ବି ପଢ଼ିନାହାନ୍ତି ! ସଂଗ୍ରାମ କ'ଣ ଏ ନୂଆଧର୍ମର ଭକ୍ତ ? ତାର ନାଁ କ'ଣ, ଗାଁ କ'ଣ, ସେ ବାବା କିଏ, ରମାନାଥଙ୍କ ବୁଝିବାର ବାହାରେ ରହିଗଲା ।

ସେଲ୍‌ସ୍‌ଟେକ୍‌ସ ଅଫିସରଙ୍କୁ ସନ୍ତୁଷ୍ଟ କରିବାର ଧର୍ମଟି ଆଜି ଆଖି ଆଗରୁ ଗେଟ୍ ଖୋଲି ଚାଲି ଯାଉଥିବାର ଦୃଶ୍ୟ ତାଙ୍କୁ ବିଚଳିତ କରୁଥିଲା । ତାଙ୍କ ଅସନ୍ତୁଷ୍ଟ ମୁଖ

ଭବିଷ୍ୟତରେ କ'ଣ ଯେ ଖାଇଯିବ, ସେଇ ତାଡ଼ନାରେ ସେ ଚିଡ଼ି ଉଠୁଥିଲେ ସଂଗ୍ରାମ ଉପରେ । କିନ୍ତୁ ଗୋଟେ ବୋଲି ପୁଅ, ବାହା କାମୁଡ଼ି ରହିଲେ । ଏଇ ସମୟରେ ଟେଲିଫୋନ ରିଂ ହେଲା । ତର ତର ହେଇ ରମାନାଥ ଫୋନ୍ ଧରିଲେ । ଆରପାଖରୁ ମେନେଜର ସଦାଶିବଙ୍କଠାରୁ ଯାହା ଶୁଣିଲେ ସେଥିରେ ତାଙ୍କ ଆଖିର ପୁଅଡ଼ୋଳା ଦି'ଟା ଖସିପଡୁଚି ଯେମିତି ! ସକାଳୁ ସକାଳୁ ସଂଗ୍ରାମ ଗୁପ୍ତ ମାଲଗୋଦାମରୁ ସବୁଗୋଡ଼ି, ଧଳା ସରୁବାଲି, ତେନ୍ତୁଳିମଞ୍ଜି ସବୁ ଟ୍ରକ୍‌ରେ ବୋହିନେଇଚି । ଗୋଡ଼ି ବାଲି ସବୁ ସହରତଳି କଚ୍ଚାରାସ୍ତାରେ ଢଳାଯାଇଚି । ତେନ୍ତୁଳି ମଞ୍ଜିସବୁ ପାଖ ଗାଁ ରାସ୍ତାକଡ଼ରେ ବିଞ୍ଚି ଦିଆଯାଇଚି । ରମାନାଥଙ୍କର ଛାତି ଶୁଖି ଆସୁଚି । ସେ ସଂଗ୍ରାମକୁ କୁଳାଙ୍ଗାର କହି ଗାଳି କରିବାରେ ଲାଗିଲେ । ହଉରେ ପୁଅ ! ଦୁଧଭାତ ପିତା ଲାଗୁଚି, ଛିଡ଼ା ଖଳିପତର୍‌ରେ ମାଗିଲେ ବି ପଛକୁ କେହି ଦେବେ ନାହିଁ ବରଂ କୁକୁରକୁ ମୁହାଁଇ ଦେବେ, ସେତେବେଳେ ଆଖି ଖୋଲିବୁ, କିନ୍ତୁ ଆଖି ଖୋଲିଲାବେଳକୁ ଜୀବନଟା ମରୁଭୂମି ହେଇଯାଇଥିବ । ଆକାଶର ଚାନ୍ଦକୁ ବାନ୍ଧିବାକୁ ହେଲେ ହାତରେ ଆଇନା ଧରିଥିବା ଦର୍କାର !

ଠିକ୍ ସେହି ସମୟକୁ ହାତରେ ଦୁଇ ତିନିଖଣ୍ଡ ବହି ଧରି ରୁମ୍ ଭିତରକୁ ପଶୁଥିଲା ସଂଗ୍ରାମ୍ । ଆଉ ସହି ନ ପାରି ଚଢ଼ାଗଳାରେ ଡାକିଲେ ରମାନାଥ : ସଂଗ୍ରାମ୍, ଏସବୁ କ'ଣ ହଉଚି !

ସଂଗ୍ରାମ ଆଦୌ ଉତ୍ତେଜିତ ହେଇ ନଥିଲା । ବରଂ ଶାନ୍ତ କଣ୍ଠରେ ଫୁଟନ୍ତା ଆଖିରେ କହିଲା : ଆପଣ ଆପଣଙ୍କ ଧର୍ମ ପାଳୁଛନ୍ତି, ମୁଁ ମୋ ଧର୍ମ ପାଳୁଚି ।

ଏଥର ଟିକେ ନରମି ପଡ଼ିଲେ ରମାନାଥ : ଧର୍ମ କରି ମୁଁ ସମ୍ପତ୍ତି ଅର୍ଜିଛି, କିନ୍ତୁ ତୋର ଏ କି ଧର୍ମ ଯେ ତୁ ସମ୍ପତ୍ତି ବରବାଦ୍ କରୁଚୁ ?

:ଆପଣଙ୍କ ଧର୍ମ ସମ୍ପତ୍ତି ଅର୍ଜେ, ମୋ ଧର୍ମ ମଣିଷ ଅର୍ଜେ ! ସଂଗ୍ରାମ କହିଥିଲା ଆସ୍ତେ, ହସରେ । ରମାନାଥଙ୍କ ଛାତିରୁ ଦୀର୍ଘଶ୍ୱାସ ଚାଲିଯାଉଥିଲା ସଅଳ ସଅଳ, ଚୋରା ବେପାର କରିସାରିଲା ପରେ ପକେଟ୍‌ରୁ ଟଙ୍କା ଚାଲିଯାଉଥିଲା ଭଳି !

x x x x x x x x x

ସଂଗ୍ରାମ୍ ଆହୁରି ଫେରି ନଥିଲା । କି ଧର୍ମର ଦୀକ୍ଷା ନେଲା ପୁଅଟା ଯେ ଦାଢ଼ି ନିଶ ଓହଳିଲାଣି ତଳକୁ ! ପିଲାଟା କ'ଣ ସଂସାରଛଡ଼ା ବାବାଜୀ ହେଇଗଲା ? ଧର୍ମକୋଠିରେ ଯୋଉ ଶିଶୁ ପ୍ରତିମୂର୍ତ୍ତି ଥାପିଚି, ତାହା କି ଧର୍ମର ଚିହ୍ନ ଯେତେ ହନ୍ତାଳିଲେ ବି ମିଳୁନି ! କିନ୍ତୁ ଏକ ଆବେଗଭରା କାତରତା ତାଙ୍କ ଛାତିରେ ଢେଉ ଟୋକିଲା, ସେଇ ମୂର୍ତ୍ତିଟିକୁ ଦେଖିବାକୁ । ରମାନାଥ ସେ ରୁମ୍ ଖୋଲିଲେ । ଲଙ୍ଗଳା କଙ୍କାଳସାର ମୂର୍ତ୍ତିଟି କେଉଁ ଗୁଣରେ ସଂଗ୍ରାମକୁ ଆକର୍ଷିଛି, ସେ ଖୋଜି ପାଇଲେନି । ନାଁତ, ଏ ରାମ ନୁହନ୍ତି, କୃଷ୍ଣ ନୁହନ୍ତି, ଯିଶୁ ବି ନୁହନ୍ତି, ମହମ୍ମଦ ବି ନୁହନ୍ତି ! ସେମିତି ମୂର୍ତ୍ତି

ହେଇଥିଲେ ମୁଣ୍ଡ ପଛ ପଟେ ଗୋଟେ ଚକିରି ଥାଆନ୍ତା । ଶିଶୁର ରଙ୍ଗ ପୁଣି ମାଟିଆ । କିଏ ଏ ମାଟିଆ ପୁଅ ! ରମାନାଥଙ୍କ ମନ ଉଙ୍କେଇ ଉଠୁଥିଲା ସେଇ ଶିଶୁଟିକୁ ଛୁଇଁବାକୁ । ଆସ୍ତେ ଆସ୍ତ ସେ ହାତ ବଢ଼ାଇ ମୂର୍ତ୍ତିଟିକୁ ଛୁଇଁଲେ । ହାତ ଲାଗିଲା ଚାଉଁ । ଏଥର ସେ ଦେଖିଲେ ଶିଶୁଟି ହସୁଚି, କୁଲୁରି ଉଠୁଚି । ରମାନାଥ ଭାବିଲେ : ରକ୍ତମାଂସର ଏମିତି ଲଙ୍ଗଳା କଙ୍କାଳସାର ଶିଶୁଟେ ଯଦି ତାଙ୍କ ପାଖକୁ ଆସନ୍ତା, ସେ ତାକୁ ଦୂର୍ ହ, ଦୂର୍ ହ ବୋଲି ଘୃଣାରେ ଛିଙ୍ଆଡ଼ି ହୁଅନ୍ତେ ନା ଏମିତି ଏକ ଆବେଗରେ, ଆନ୍ତରିକତାରେ ତା ଦିହକୁ ଆସ୍ତେକିନି ଛୁଇଁଦିଅନ୍ତେ ? କ'ଣ କରନ୍ତେ ସେ ? ଏ ପ୍ରଶ୍ନରେ ଆଚକା, ମାଚକା ହେଲେ । ଏଇମିତି ଲଙ୍ଗଳା ଭିକାରୀ ଛୁଆଟେ ଯେତେବେଳେ ତାଙ୍କ ଗୋଦାମର ଗଦି ଉପରକୁ ପଇସା ମାଗି ଉଠୁଥିଲା, ସେତେବେଳେ ପରା ସେ ଚିତ୍କାର କରି ଉଠିଥିଲେ : ଅପରିଛିନିଆ ଛୁଆ, ଓହ୍ଲା, ଓହ୍ଲା ତଳକୁ ! କାଇଁ ସେଦିନ ତ ରକ୍ତମାଂସଧାରୀ ଏଭଳି ଶିଶୁଟାକୁ ସେ ଆବେଗରେ ନିଜ କୋଳକୁ ଟାଣିଆଣି ପାରି ନଥିଲେ ! କିଏ ଅଟକଉଥିଲା ତାଙ୍କ ହାତକୁ !

ମନ ତାଙ୍କର ବିଷାଦରେ ଭରି ଉଠିଲା । ହାଏ, ପୁଅ ବି ସରକାରୀ ଅଫିସର ହବ କ'ଣ, ଶେଷକୁ ବାବାଜୀ ବନିଗଲା ? ସଂଗ୍ରାମର ରୁମ୍‌କୁ ଦେଖିଲେ । ନା, ଏ ଯାଏ ଫେରିନି । ଦୁଇ ହାତରେ ମୁଣ୍ଡକୁ ଚିପି ଧରିଲେ ରମାନାଥ । ରାତି ଆଗୁସାର । ଏକ ଦୂରନ୍ତ ପକ୍ଷୀର ଶେଷ ସ୍ୱର ତାଙ୍କ କାନରେ ବାଜି ଉଠୁଥିଲା । ସେ ଗୁମୁରିଲେ । ହଠାତ୍ ଟେଲିଫୋନ୍‌ର କ୍ରିଂ କ୍ରିଂ ଶବ୍ଦରେ ତାଙ୍କ ଆବେଗ ସବୁ କଟିଗଲା । ସେ ଧାଇଁଯାଇ ଫୋନ୍ ଧରିଲେ । ଆର ପାଖରୁ ଶୁଣାଗଲା : ରମାନାଥ ବାବୁ, ଆପଣ ଆପଣଙ୍କ ପୁଅକୁ ସୁଧାରିଲେ ନାହିଁ । ଅବସ୍ଥା ଅସମ୍ଭାଳ । ଆଉ ନୀରବ ରହିହେବ ନାହିଁ । ମନ୍ଦିରକୁ ପ୍ରବେଶ କରୁଥିବା କେତେକ ପୁରୁଷ ଓ ମହିଳାଙ୍କ ଠାରୁ କେତେଜଣ ଗୁଣ୍ଡାଙ୍କ ସହ ସେ ଟଙ୍କା ପଇସା, ଅଳଙ୍କାର ଜବରଦସ୍ତି ଛଡ଼ାଇ ନେଇଛି । ସେ ଏବେ ଆରେଷ୍ଟ ହେଉଚି । ରମାନାଥ ବାବୁଙ୍କ ହାତରୁ ରିସିଭରଟା ଖସିପଡ଼ିଲା । କାନମୁଣ୍ଡା ଝାଏଁ ଝାଏଁ । ସାରା ପୃଥିବୀରେ ଏକ ଭୟଙ୍କର ବିସ୍ଫୋରଣ ହେଇଗଲା ଯେମିତି ! ତତ୍‌କ୍ଷଣାତ୍ ସେ ଫୋନ୍‌ଟାକୁ ପୁଣି ମୁଠାଇ ଉତ୍ତର କଲେ : ନା, ନା ଆଜ୍ଞା, ଆପଣ ଭୁଲ୍ ବୁଝିଛନ୍ତି, ପୂର୍ବର ସେ ସଂଗ୍ରାମ ଆଉ ନାହିଁ, ପୂରା ବଦଳି ଯାଇଚି ଆଜ୍ଞା, ସଂଗ୍ରାମ ଡକାୟତ, ଚୋରମାନଙ୍କ ଭଳି ଏମିତି କର୍ମ କରି ନପାରେ, ସେ ତ ପୂରା ବାବାଜୀ ପାଲଟିଗଲାଣି ଆଜ୍ଞା ! ଆର ପାଖରେ ରିସିଭର ଥୋଇଦେବାର ଶବ୍ଦରେ ଚିହିଁକି ଉଠିଲେ ସେ । ତତ୍‌କ୍ଷଣାତ୍ ଡ୍ରାଇଭରକୁ ଡାକି ଗାଡ଼ି ବାହାର କରିବାକୁ ଆଦେଶ ଦେଲେ । ବିଶିଷ୍ଟ ବ୍ୟବସାୟୀ, ସମାଜସେବୀ ରମାନାଥର ଏକମାତ୍ର ପୁତ୍ର ଲୁଣ୍ଠନକାରୀ, ଡକାୟତ ଅଭିଯୋଗରେ ବିତ୍ ରାଜରାସ୍ତାରେ ପୋଲିସ୍ ଦ୍ୱାରା ଗିରଫ ହେବ, ଅସମ୍ଭବ ! ଯାଉ, ଚାଲିଯାଉ ସବୁ ସମ୍ପତ୍ତି, ନେତା ନେବେ ଦଶହଜାର, ନିଅ, ପାର୍ଟି ନବ କୋଡ଼ିଏ ହଜାର, ନିଅ, ସାକ୍ଷୀମାନେ ନେବେ କୋଡ଼ିଏ ହଜାର, ନିଅନ୍ତୁ !

ତରତର ହେଇ ବାହାରିଯିବା ବେଳକୁ ସାମ୍ନାରେ ପଡ଼ିଲା ତାଙ୍କର ଧର୍ମକୋଠି । ହଠାତ୍ ତାଙ୍କର ଆଖି ଜଳି ଉଠିଲା । କବାଟ ଠେଲି ଭିତରକୁ ପଶିଗଲେ । ସାମ୍ନାର ଶିଶୁ ମୂର୍ତ୍ତିକୁ ଚାହିଁ କହିଲେ : ତୁ ଗୋଟେ କି ଧର୍ମର ଠାକୁର ଯେ ମୋ ପୁଅକୁ ବାବାଜୀ କରେଇଲୁ, ମୋର ଯେତେ ଯାହା ସମ୍ପତ୍ତି ନଷ୍ଟ କରେଇଲୁ, ଶେଷରେ ଲୁଣ୍ଠନ କେଶ୍‌ରେ ତାକୁ ଗିରଫ୍ କରେଇଲୁ, ଚଣ୍ଡାଳ ! ଯା କହି ରମାନାଥ ଶିଶୁମୂର୍ତ୍ତିଟିକୁ ଉଠାଇ କଚାଡ଼ି ଦେଲେ ଏବଂ ଜୋର୍ ଜୋର୍ ପାଦରେ କାର ନିକଟକୁ ଚାଲିଗଲେ । ଶିଶୁ ମୂର୍ତ୍ତିଟି ଦୁଇଫାଳ ହେଇ ସେମିତି ପଡ଼ି ରହିଲା ।

ମନ୍ଦିର ନିକଟରେ ଶହ ଶହ ଲୋକର ଘେର । ହୁ ହୁ ଡାକୁଚି ସହରର ଛାତି । ଭିଡ଼ଠେଲି ରମାନାଥ ପଶିଲେ ଆଗକୁ । ଦେଖିଲେ କେତେକ ସାଙ୍ଗମାନଙ୍କ ମେଳରେ ଛିଡ଼ା ହେଇଚି ସଂଗ୍ରାମ । ଚାରିପଟେ ଘେରି ରହିଛି ପୋଲିସ । ନିକଟରେ ଏକ ପୋଲିସ ଭ୍ୟାନ । ଦମ୍ଭରେ ଛିଡ଼ା ହେଇଚି ସଂଗ୍ରାମ । ଆଖିରେ ନଇଁଯିବାର, ପାପବୋଧର ସାମାନ୍ୟତମ ଛିଟା ଲାଗିନି । ଚମକୁଚି, ଟହକୁଚି । ରମାନାଥ ଆଚମ୍ବିତ ହେଲେ । ସଂଗ୍ରାମର ଏତେବଡ଼ ଦମ୍ଭ ସେ ଆଗରୁ ଦେଖି ନଥିଲେ । ପୁଅର ଏଭଳି ଏକ ଆଖି ଦେଖି ବାପର ଆଖି ବି ଉଜ୍ଜ୍ୱଳ ହୋଇ ଉଠିଲା । ତାଙ୍କର ଛାତି ଯେମିତି ହସି ଉଠିଲା । ପୋଲିସ୍ ଇନ୍‌ସ୍‌ପେକ୍ଟର ରମାନାଥଙ୍କୁ କହିଲେ : ଦେଖନ୍ତୁ ରମାନାଥ ବାବୁ, ପୂର୍ବରୁ ଆପଣଙ୍କ ପୁଅର ଅପରାଧ ନିମନ୍ତେ ଆମେ ଆପଣଙ୍କୁ ସତର୍କ କରିଦେଇଥିଲୁ । କିନ୍ତୁ ଫଳ ଓଲଟା । ମନ୍ଦିରକୁ ପ୍ରବେଶୁଥିବା ଦର୍ଶନାର୍ଥୀଙ୍କଠୁ ଧନରତ୍ନ ଟଙ୍କା ପଇସା ଲୁଟ୍ କରିନେବାର ଉପକ୍ରମ କରୁଥିଲା ଆଉ କେତେ ଗୁଣ୍ଡାଙ୍କ ସହ । ଆଉ ଚାରା ନାହିଁ । ଆମେ ତାକୁ ଆଜି ଗିରଫ୍ କରୁଛୁ । ତା’ ଛଡ଼ା ପୂର୍ବ କେଶ୍ ସବୁ ତ ଅଛି !

କେହି ଜଣେ ସେତେବେଳେ ମନ୍ତବ୍ୟ ପ୍ରଦାନ କରିଥିଲେ : ବାବୁ କଲେଜରେ ଉପସଭାପତି ଅଛନ୍ତି ନା, ଏବିନୁ ଏସବୁ ନ ଶିଖିଲେ, ଭବିଷ୍ୟତରେ ଏମ୍. ଏଲ୍. ଏ. ମନ୍ତ୍ରୀ ହେବାର ଯୋଗ୍ୟତା ହାସଲ କରିବେ କେମିତି !

ଟିକେ ନମ୍ର ହେଇ ରମାନାଥ କହିଲେ : ମାନୁଚି ଇନିସ୍‌ପେକ୍ଟର, ସଂଗ୍ରାମ ପୂର୍ବରୁ କେତେକ ଅପରାଧ କରିବା ପାଇଁ ଆଟେମ୍ପଟ ନେଇଚି, କିନ୍ତୁ ମଣିଷର ପରିବର୍ତ୍ତନ ତ ଅଛି ! ତା’ର ମୁହଁକୁ ଏବେ ଚାହାନ୍ତୁ ଇନିସ୍‌ପେକ୍ଟର । ଏମିତି ଏକ ତେଜବନ୍ତ ମୁହଁ ଲୁଣ୍ଠନ କରିପାରେ ? ଅନ୍ୟ କେହି ଭଦ୍ରଲୋକ ଜଣେ ସେତେବେଳେ ଦୃଢ଼ ସ୍ୱରରେ କହିଲେ : ନା, ନା, ସଂଗ୍ରାମ ଠାକୁର ଦର୍ଶନାର୍ଥୀଙ୍କଠୁଁ କୌଣସି ଅଳଙ୍କାର, ଟଙ୍କା, ପଇସା ଛଡ଼େଇ ନାହିଁ, ଲୁଣ୍ଠନ କରିନାହିଁ । ବରଂ ପ୍ରବେଶ ପଥରେ ତାର ସହକର୍ମୀଙ୍କ ସହ ଛିଡ଼ାହୋଇ ପ୍ରବେଶାର୍ଥୀମାନଙ୍କୁ ମନ୍ଦିର ଯିବାକୁ ବାରଣ କରିଛି । କହିଚି, ମନ୍ଦିର ବାହାରେ ଶହ ଶହ ଶିଶୁ, ବିକଳାଙ୍ଗ, ଅନାହାରରେ ହର୍ ମୁହୂର୍ତ୍ତରେ ଆଖି ସାମ୍ନାରେ ମୃତ୍ୟୁକୁ ଭେଟି ଶିହରି ଉଠୁଥିଲା ବେଳେ ଆପଣମାନେ ସେମାନଙ୍କୁ ଉପେକ୍ଷା କରି,

ଠାକୁରଙ୍କୁ ସୁନା, ରୁପା, ଟଙ୍କା ଭେଟି ଦିଅନ୍ତୁ ନାହିଁ। ମଣିଷକୁ ଅବହେଳା କରି ଭଗବାନଙ୍କୁ

ଯା' କହି ରମାନାଥ ଖୋଲିଦେଲେ ଆଟାଚି, ଫୁଟି ପଡ଼ିଲା ପ୍ରାୟ ପଚାଶ ହଜାର ଟଙ୍କାର ବିଡ଼ା ସବୁ। ମାନଗୋବିନ୍ଦ ଈଷତ୍ ହସିଲେ : ଏ ଟଙ୍କା ଅପେକ୍ଷା ଆମର ବେଶି ଦର୍କାର ସଂଗ୍ରାମ। ସଂଗ୍ରାମକୁ ଆପଣ ବୁଝାଇ ଦିଅନ୍ତୁ। ସେ ଆମ ପାର୍ଟିରେ ଯୋଗ ଦେଉ, ନ ହେଲେ ପୂରା ନୀରବ ରହୁ !

ରମାନାଥଙ୍କର ଆଉ ଉପାୟ ନଥିଲା। ଦୀର୍ଘଶ୍ୱାସ ବାରମ୍ବାର ବାଟ କାଟି ଯାଉଛି। ସମଗ୍ର ଦେଶ ଓ ତା'ର ମଣିଷମାନଙ୍କୁ ବଞ୍ଚିବାର ପଟ୍ଟା ଦେଇଛନ୍ତି ବୋଲି ପେଁକାଳି ବଜାଉଥିବା ଏଇ ନେତାମାନଙ୍କର ବୁଭୁକ୍ଷା କେଉଁଠି ବା ମେଣ୍ଟିଚି, କାଇଁ ?

x x x x x x x x x

ଗହଳି ଆଡ଼କୁ ଆସୁ ଆସୁ ରମାନାଥ ନିଶ୍ଚୟ କଲେ ଯେ ସେ ସଂଗ୍ରାମକୁ ରୋକିବେ ତା' ପଥରୁ। ବରଂ ସେ ମାନଗୋବିନ୍ଦ ଚାହୁଁଥିବା ପାର୍ଟିରେ ଯୋଗ ନଦେଉ, କିନ୍ତୁ ନୀରବ ରହୁ। ତାହା ହିଁ ଶ୍ରେୟସ୍କର। ମୋର ବା କ'ଣ ଅଭାବ ଅଛି, କ'ଣ ବା ନାହିଁ ? ଚିନ୍ତୁ ଚିନ୍ତୁ ପହଞ୍ଚିଲେ ଗହଳିରେ। ପୋଲିସ ଘେରାରୁ ସଂଗ୍ରାମକୁ କିଛି ଦୂରକୁ ଡାକି ନେଇ କହିଲେ : ବାବୁରେ, ତୁ ଏଣିକି ବୋତଲେ କାହିଁକି ଦିନ୍ ଦି ବୋତଲ ପି ବରଂ, ମେଳାରେ ଝିଅମାନଙ୍କୁ ବେଣୀ ଝିଙ୍କିବୁ କାହିଁକି, ହରଦିନ ଗୋଟେ ଦି'ଟାକୁ ଲଜିଂରେ ନେଇ ଉପଭୋଗ୍ କର ବରଂ, ସାଙ୍ଗ, ପାର୍ଟି, ପିକ୍ନିକ୍‌ରେ ଯେତେ ଟଙ୍କା ଉଡ଼ାଉଛୁ ଉଡ଼ା ବରଂ, ମୁଁ ପାଟି ଫିଟାଇବିନି, କିନ୍ତୁ ଏ ରାସ୍ତା ଛାଡ଼ିଦେ, ଫେରିଆ ସେ ପଥରୁ, ଏମିତି ଦାଢ଼ି ଥୋଡ଼ି ବଢ଼େଇ ଆଉ ବାବାଜୀ ହଅନା, ପୂଜା କରନା ସେ ଶିଶୁ ମୂର୍ତ୍ତିକୁ, ମଣିଷର ଏଡ଼େ ବଡ଼ ସାହସକୁ ବେଳେବେଳେ ପୃଥିବୀ ସହିପାରେନି !

ସେତେବେଳକୁ ସଂଗ୍ରାମର ଆଖି ଢଳି ସାରିଥାଏ। ବହୁଥର ସଂଗ୍ରାମର ରଙ୍ଗ ଆଖି ଦେଖିଛନ୍ତି ରମାନାଥ, କିନ୍ତୁ ଏଭଳି ରଙ୍ଗ ସେ ଦେଖି ନଥିଲେ। ସଂଗ୍ରାମ ତାଙ୍କ ଆଡ଼କୁ ଅନାଇ ଚିତ୍କାର କଲା : ରାକ୍ଷସ !

ଚମକିଲେ ରମାନାଥ। ତାଙ୍କରି ପୁଅ ତାଙ୍କୁ କହୁଚି ରାକ୍ଷସ ବୋଲି। ତାଙ୍କ ମୁଣ୍ଡ ତଳେଇଗଲା। ଛାତିରେ ବିଧାଏ ଯେମିତି ! ସେତେବେଳକୁ ସଂଗ୍ରାମ ଧାଇଁ ଆସି ସାରିଥିଲା ପୁନର୍ବାର ସେ ଗହଳିକୁ। ଇନିସ୍‌ପେକ୍ଟରଙ୍କୁ କହିଲା : ଆପଣ ମୋତେ ଗିରଫ କରିଛନ୍ତି, ଚାଲନ୍ତୁ।

ପୋଲିସ୍‌ଭ୍ୟାନ୍ ଷ୍ଟାର୍ଟ। ରମାନାଥ ଧାଇଁଥିଲେ ସଂଗ୍ରାମଆଡ଼କୁ। ଭ୍ୟାନ୍ ତଳେ ଛିଡ଼ା ହେଇ ସଂଗ୍ରାମ ଆଡ଼କୁ ହାତ ବଢ଼ାଇଲାବେଳକୁ ଭ୍ୟାନ୍ ଛାଡ଼ି ଦେଇଥିଲା।

ରମାନାଥଙ୍କ ଆଖିରେ ଲୁହ ବନ୍ଧ ଡେଇଁ ସାରିଥିଲା । ଏବଂ ପିତାର ହାତ ଫେରି ଆସିଥିଲା, ଅପହଞ୍ଚ ।

ଗହଳିର ଛାତି କମ୍ପି ଉଠୁଥିଲା ଆହା, ଆହା । ମାନଗୋବିନ୍ଦ ବାବୁ ସେତେବେଳକୁ ଗହଳି ତ୍ୟାଗ କରି ସାରିଥିଲେ । ବ୍ୟସ୍ତ ବିବ୍ରତରେ ଝାଳନାଳ ହେଇ ଫେରିଲେ ରମାନାଥ । କାର୍‌ରେ ବସିବାଠାରୁ ଓହ୍ଲାଇବାଯାଏ ସେ ନିଜଠିଁ ନଥିଲେ । ପୁଅ ସାମ୍ନାରେ ସେ ରାକ୍ଷସ ? ସେଇ ଶବ୍ଦର ପ୍ରତିଧ୍ୱନି ତାଙ୍କୁ କାହିଁ କାହିଁ ବୁଲାଇ ଆଣୁଥିଲା । ବେଳେ ବେଳେ ସେ ମୁହଁକୁ ଦୁଇହାତରେ ଘଷି ଆଣୁଥିଲେ । ସେ ନିଜର ଅସ୍ତିତ୍ୱକୁ କିନ୍ତୁ ସ୍ପର୍ଶି ପାରୁ ନଥିଲେ । ମୁହଁ ଲାଲ ପଡ଼ି ଯାଉଥିଲା । ରାକ୍ଷାସ, ରାକ୍ଷସର ପ୍ରତିଧ୍ୱନି ଚାରିଆଡ଼ । ଅଥଚ ଗୋଟେ ବୋଲି ପୁଅ ତାଙ୍କର ପୋଲିସ ଦ୍ୱାରା ଗିରଫ ହେଇଚି । ଏକଥା ମୁଣ୍ଡକୁ ପଶୁ ନ ଥିଲା । ଚିନ୍ତାରେ, ଅନୁଭବରେ ସାମ୍ନାସାମ୍ନି ହେଉ ନଥିଲା । ପୋଲିସ୍ ଭ୍ୟାନ, ଗହଳି, ସଂଗ୍ରାମର ଗିରଫଦାରୀ । କେବଳ ରାକ୍ଷସ, ରାକ୍ଷସ ପ୍ରତିଧ୍ୱନି । ମଣିଷର ଆତ୍ମିକ ଓ ରକ୍ତଗତ ସମ୍ପର୍କର ଡେଉଁରିଆ କେଉଁ ସ୍ତରରେ ବୁଝି ହେଉ ନଥିଲା ।

ଥକା ଥକା ପାଦ ଶୁଖାଶୁଖା ମୁହଁରେ ପାହାଚ ଚଢ଼ିଲେ ରମାନାଥ । ଫ୍ଲୋରର ସୋଫା ଉପରେ ବସି ରହିଲେ ଘଣ୍ଟା ଘଣ୍ଟା । ରାତି ଆଗେଇଥିଲା । ଅନ୍ଧାରର ମେଘମାନ ସଢେଇ ବିଛେଇ । ଶେଷରେ ଉଦାର ଓ ଭୟଭୀତ ହୋଇ ନିଜ ରୁମ୍‌କୁ ଯାଉ ଯାଉ ସାମ୍ନା ହେଲା ଧର୍ମକୋଠି ଓ ଦୁଇଖଣ୍ଡ ହୋଇ ପଡ଼ିଥିବା ଶିଶୁମୂର୍ତ୍ତି । ଚଟ୍‌କରି ରମାନାଥ ଚିହିଁକି ଉଠିଲେ । ଶିଶୁମୂର୍ତ୍ତିର ଆଖି ଯୋଡ଼ିକ ଠିକ୍ ସଂଗ୍ରାମର ଦମ୍ଭ ଦମ୍ଭ ଆଖି ଭଳି । ରମାନାଥଙ୍କର ଆଖି ଥିର ହୋଇଗଲା । ଶିଶୁମୂର୍ତ୍ତିର ମୁହଁ ଯେମିତି ସଂଗ୍ରାମର ସେଇ ଦାଢ଼ିରଖା ମୁହଁ । ରମାନାଥଙ୍କ ଆଖି ଝଲସି ଉଠିଲା । ଲୁହ ଢକେଇ ଆସିଲା । ସେଇ ଶିଶୁମୂର୍ତ୍ତିଟିକୁ ଚାହିଁବାକୁ ସେ ଅଧିର ହୋଇ ଉଠିଲେ । କେମିତି ଏକ ଧର୍ମର ଦେବତା ତୁହି, ତୋ ଆଖିରେ ଏତେ ରଙ୍ଗ, ଏତେ ଜନ୍‌ନାହିଁ, ନାହିଁ ! ଏଠି କିଛି ନାହିଁର ସମାଧି ଉପରେ ଏଡ଼ିକି ଶିଶୁ, ତୋର ଏତେ ଜୀବନ ! ଆଖି ତରଙ୍ଗେଇ ଉଠୁଥିଲା ରମାନାଥଙ୍କର । ଏକ ଛୁଁ ଛୁଁ ଆବେଗରେ ଆଗେଇ ଯାଉଥିଲେ ରମାନାଥ । ଭଙ୍ଗା ଶିଶୁମୂର୍ତ୍ତି ଦୁଇଟି ପୁଣି ଯୋଡ଼ିହେଇ ଯାଉଥିଲା ଯେମିତି ।



# କାଳଫାଶ

ସୂର୍ଯ୍ୟ ଉଁଶୁ ଉଁଶୁ ସୁରୁଜୀ ପାଛିଆ ଦା’ ଧରି ବସିଚି ମାଜଣା ପୋଖରୀ ଆଡ଼ି କଇଁଥ ଗଛ ତଳେ । କାଳିଆ, ହୁରୁଷି, ବାଜ, ଅନାମ, ଦଇତାରୀ ନିଜ ନିଜ ଭାଗରୁ ପୋଇ, ବୋଇତାଳୁ ଫୁଲ, ସଲରା ତୋଳୁଛନ୍ତି ମାଜଣାରୁ । ନଇନ୍ଦ ବୋଇତାଳୁ ମୂଳ କୋଡୁ କୋଡୁ ତଣ୍ଟି ଖଙ୍କାରିଲା । କହିଲା : ଲୋ ସୁରୁଜୀ ନୂଆଉ ! ଏ ବୋଇତାଳୁ ଗଛଟା କି ହୃଷ୍ଟପୁଷ୍ଟ କହନି, ହୁ ହୁ ବଢୁଚି, ଫଳୁନାହିଁ ତ ! ଅଫଳନ୍ତିଆଗୁଡ଼ାକ ଇମିତି ଡଉଲ ଡାଉଲ ହୁଅନ୍ତି ନା କ’ଣ କହନି ! ସୁରୁଜୀ ନଇନ୍ଦ କଥାର ମଗଜ ବୁଝିଲା । ମୁହଁ ଛିଞ୍ଚାଡ଼ିଲା । ନଇନ୍ଦଟା ସବୁବେଳେ ସେଇଆ । ନକଲିଆଟେ । ଥାନ ଅଥାନ ନାହିଁ, ଯେଉଠି ପାରି ସେଇଠି ଟିକଲ କରି କହିବ ଯେ, ଛାତିକି ଲାଗିଯିବ ରକ୍‌କିନା । ଦଶବର୍ଷ ହେଲାଣି ସେ କଟିମର ଘରକୁ ଅଇଲାଣି ଯେ, ଏଯାଏ ଫଳିନାହିଁ । ସେଇଟାକୁ ନଟେଇ ପଟେଇ ନଇନ୍ଦ ଛିଗୁଲେଇ ହଉଚି । ସୁରୁଜୀଠୁଁ ନଇନ୍ଦ ବଅସରେ ବଡ଼, କିନ୍ତୁ ନେଖାରେ ସେ ହବ ନଇନ୍ଦର ଭାଉଜ । ସୁରୁଜୀ କିଛି କହିଲାନି । ମନକୁ ମନ ଗାଳିଦେଲା... ବାଡ଼ିପଡ଼ାଟା !

ମାଜଣା ପୋଖରୀଟା କୋଉ କାଳର ! କୁହାଯାଏ, ଏ ଗାଁର ସେଇଟା ପହିଲା ପୋଖରୀ । ଏବକୁ ଚଉତରା ହେଇଗଲାଣି । ଧାନକଟା, କଳେଇବୁହା ପରେ ପରେ ମାଜଣାର ଭାଗ ଚାଷୀମାନେ ମାଘ ମାସ ହାଡ଼ଭଙ୍ଗା ଜାଡ଼ରେ ଦିନରାତି କୁମ୍ଭୀ ଲଗାଇ ପାଣି ବୋହି ଦିଅନ୍ତି । ପଙ୍କ ଟିକେ ଶୁଖି ଆସିଲେ ପୋଖରୀଟା ଷୋହଳ ଭାଗରେ ଷୋହଳଜଣ ଚାଷୀଙ୍କୁ ବଣ୍ଟୁଆରା ହେଇଯାଏ । ଆରମ୍ଭ ହେଇଯାଏ ଫଳ, ଫୁଲୁରୀ, ଶାଗ ଚାଷ । ଶୁଖିଲା ପଙ୍କ, ଥଣ୍ଡା ମାଟିରେ ହୁହୁକିନା ବଢ଼ିଯାଏ ପୋଇ, ବୋଇତାଳୁ, କଲରା, ଚଲଣା ଗଛ ସବୁ । ଗଡ଼ିଆ ମାଲିକଙ୍କୁ ଚାଷର ଅଧା ଭାଗ ମିଳେ । ଆଷାଢ଼ର ଝଡ଼କିଆ ବର୍ଷାରେ ପୋଖରୀରେ ପାଣି ଭର୍ତ୍ତି ହେଲାଯାଏ ଚାଲିଥାଏ ଏ ପରିବା ଚାଷର

ପର୍ବ । ମାଘଠୁଁ ଆଷାଢ଼, ଦିନ୍ ସକାଳେ ପୋଇ, ବୋଇତାଳୁ ତୋଳାର ଉତ୍ସବ ଲାଗି ରହିଥାଏ । କଚଡ଼ା ବର୍ଷାରେ ପୋଇମୂଳ ଯେତେବେଳେ ବୁଡ଼ିଯାଏ, ଆରମ୍ଭ ହୁଏ ମୂଳ ଉପାଡ଼ି ଦାଣ୍ଡରେ ଗାଦି ଗାଦି କରି ଥୋଇବାର ଅପରୂପ ଦୃଶ୍ୟ । ଚାରିପାଞ୍ଚ ମାସ ସବୁଜ ପଟାଳି ମେଲିଥିବା ମାଢଣା ପୋଖରୀ ଆଷାଢ଼ରେ କାଂଶବାଂଶ ନଈଧାର ପାଣିରେ ବୁଡ଼ିଯାଇ ଏକାକାର ହୁଏ । ମାଛଙ୍କର କବ୍‌କାବ୍, ବେଙ୍ଗମାନଙ୍କ ରଡ଼ିରେ ଭିନ୍ନ ରୂପ, ଭିନ୍ନ ସୌନ୍ଦର୍ଯ୍ୟରେ ଚହଟେ ପୋଖରୀ । କଇଁ, ପଦ୍ମର ବୀଜ କଅଁଳି ଆସେ ପାଣି ଭିତରୁ । ସୁଆଁଳ, ସଁତରା ବି ନିଜକୁ ଜାହିର ରଖିଦିଅନ୍ତି ଆଡ଼ି ପାଖାପାଖି ପାଣିରେ ।

ସୁରୁଜୀ ଆଖି ଆଗରେ ଏ ଦୃଶ୍ୟ ସବୁ ନାଚିଯାଉଚି ଗୋଟି ଗୋଟି । ତିନି ବର୍ଷ ହେଲା ସେ ପୋଇ, ବୋଇତାଳୁ ବେପାର କରୁଛି । ନିତି ଭୋଅରୁ ଉଠିଆସି ମାଢଣା ଆଡ଼ିରେ ସେ ବସିଯାଏ । ଚାଷୀ ଆଉ ପୋଖରୀମାଲିକଙ୍କ ଠାରୁ ଫଳ ଶାଗ କିଣି ନେଇ ଗାଁ ଗାଁ ବୁଲି ବେପାର କରେ । ଆଉ ବା କ'ଣ କରନ୍ତା ? ଜୀବନ ଜୀଇଁବା ପାଇଁ ମଣିଷ ଯେତେ ଘିରି ଘିରି ବୁଲିବା କଥା, ସେଥିରୁ କାହାର ବା ରିଆତି ଅଛି ! ରିକ୍‌ସାବାଲା କଟିମ୍‌ର ହାତ ଧରିଥିଲା ସିନା, କିନ୍ତୁ ସେଇଟା ଭାରି ଗଞ୍ଜୋଡ଼୍ । ଭାରି ମଦୁଆ । ମଦ ଗଞ୍ଜା ଖାଇ ଖାଇ ତା'ର ଦିହ ଏମ୍ତି ହୋଇଗଲା ଯେ, ସେ ଆଉ ରିକ୍‌ସା ଚଳାଇପାରିଲାନି । ଯାହା ଖାଲି ଟହଲିଲା ଗାଁରେ । ଆଉ ମଦ ଗଞ୍ଜା ପାଇଁ ମାଇପକୁ ପିଟିଲା । ସୁରୁଜୀ ପଦାକୁ ଗୋଡ଼ କାଢ଼ିଲା ସାଇପଡ଼ିଶା, ଗାଁ ଲୋକଙ୍କର ଟାହି ଟାପରାକୁ ହଜମ କରି । କଟିମର ମା' ବୁଢ଼ୀ ବ୍ୟତୀତ ଆଉ ନିଜର କେହି ନ ଥିଲେ । ସୁରୁଜୀ ପଦାକୁ ଗୋଡ଼ ନ କାଢ଼ିବାର ଉପାୟ ବା କାହିଁ ? କୁଟାରେ ଧାନ ଆଣିବା, ଧାନ ଉଷେଁଇବା, ଗାଈ ଦୁହିଁବା, ମୁଢ଼ି ଭାଜିବା ଇତ୍ୟାଦି କାମ ସବୁ ଗାଁର, ପଡ଼ିଶା ଗାଁର ବୁଲି ବୁଲି କଲା । ଆଉ ଏ କେତେମାସ ଶାଗ ବେଉସା ! ଯାହା ଦି' ପଇସା ରୋଜଗାର ହୁଏ । ସେଥିରୁ କଟିମ କିଛି ନେଇଯାଏ ଅଭ୍ୟାସପାଣି ବାବଦକୁ । ସୁରୁଜୀର ଦବାକୁ ଯଦିଓ ଇଚ୍ଛା ନଥାଏ, ତଥାପି କଟିମର ଅସଭ୍ୟ ଗାଳି, ମାଡ଼ରୁ ରକ୍ଷା ପାଇବା ପାଇଁ କିଛି ଦେଇଦିଏ । ଦିନେ ଚାଉଳ, ତେଲ କିଣି ସାରିଲା ବେଳକୁ ଆଉ ପଇସାଟିଏ କଟିମ୍‌ର ମସଲାପାଣି ପାଇଁ ନ ଥିଲା ଯେ, କଟିମ ଝିଙ୍କାସିଲା "କିଲୋ ! ଘଇତା କରେଇ, ତୋ ଯୋଗୁ ତ ମୋର ଏ ଦଶା, ଅଲକ୍ଷଣୀଟା ଅଇଲୁ ଯେ, ମୋ ହାତରୁ ରିକ୍‌ସା ଛାଡ଼ିଗଲା । ଏତେ ବର୍ଷ ହେଲା ଆଇଲୁ ଯେ, ମୁଁ ବା' ଡାକ ଶୁଣିତେ ପାଇଲିନି । ଲୋକେ ତ କୁହାକୁହି ହଉଛନ୍ତି : କଟିମ ! ତୋ' ମାଇପ ଚରିବୁଲି ଖାଉଚି ! କ'ଣ୍ କରୁଚୁ ଏସବୁ ପଇସା ? ଆଗୁଆ ଘଇତା ପାଇଁ ସଂଚୁଛୁ ନା କ'ଣ ?" ସେଦିନ ସୁରୁଜୀ ଆଖିରୁ ତତଲା ଲୁହ ନିଗିଡ଼ି ଆସିଥିଲା । ଇଚ୍ଛା ହେଇଥିଲା,

କଚିମକୁ ଛାଡ଼ିଦେଇ ବାପ ଘରକୁ, ନ ହେଲେ ଆଉ କାହାକୁ ଦ୍ବିତୀୟ ହେଇ ପଳେଇଯିବାକୁ । କିନ୍ତୁ ମନ ହାଙ୍କିଲା, ଛି, ଆଜି ତୋର ଯଦି ସେମିତି କିଛି ହୋଇଥାଆନ୍ତା, ତୋ ଗିରସ୍ତ ଯଦି ତୋତେ ଛାଡ଼ି ଆଉ କାହାକୁ ଘିନି ଆସନ୍ତା, କ'ଣ ହଅନ୍ତା, ତୋ ମନ, ତୋ ଛାତି ? ସେଇଠୁ ମନ ଆଉ ପାଦେ ଘୁଞ୍ଚିଲାନି । ବିଶାଳ ପୁଅ ଛଚିଆଠୁଁ ଦି' ଟଙ୍କା ଧାର ଆଣି କଚିମକୁ ଦେଲା । କଚିମ କଳେ ହସ ଖାଞ୍ଚିଦେଇ ଧପାଲିଥିଲା ଖଟିକୁ । ଇମିତି କେତେ ଦହଗଞ୍ଜର ପସରା ତା' ଚାରିକଡ଼େ ମେଲି ହେଇଚି । କିନ୍ତୁ କୋଉ ସମ୍ପତ୍ତି ତାକୁ ଏଠି ଜାବୋଡ଼ି ଧରିଚି ସେ ବୁଝିପାରେନି । ମୁଣ୍ଡର ବୁଦ୍ଧି, ଯୁକ୍ତି ଖେଳାଇଲେ କଚିମ ପାଖରେ ପଡ଼ି ରହିବାର କୌଣସି ଲୁ' ଟାଣି ଧରେନି, କିନ୍ତୁ ତଥାପି କେଉଁ ଅବୁଝା ଖିଅ ବେଶ୍ ଜାବୋଡ଼ି ଧରିଚି ତାକୁ, ସେକଥା ସେ ବୁଝେନାହିଁ, ଛାତିରେ ଘେନେ । କଚିମ ଠାରୁ ଯେଉଁ ଗିରସ୍ତପଣିଆ ପାଇବା କଥା, ତା' ସେ ପାଏ ନାହିଁ । ବରଂ 'ତୁ ତ ବୁଲି ବୁଲି ତୋ ମନର, ତୋ ଦେହର ଓରିମାନ ମେଣ୍ଟେଇ ଦଉଚୁ, ତୁ ଭାରି ଖୁସିରେ ଅଛୁ' ବୋଲି କଚିମଠାରୁ ଶୁଣେ । କଚିମର ଆଖି ସବୁବେଳେ ସୁରୁଜୀର ରୋଜଗାର ଉପରେ । ଶାଶୁବୁଢ଼ୀର କିନ୍ତୁ ସୁରୁଜୀକୁ ଭାରି ଆଦର । ''ମାଇପିଟା, ପିଲାଛୁଆର ମାଆ ହେଇନାହିଁ, ଟାହିଟାପରାକୁ ଖାତିର୍ ନ କରି ଆମକୁ ପୋଷୁଛି । ସବାଖିଆ କଚିମଟା ଆଉ ମଣିଷ ହେଇନାହିଁ । ସେଁତିରେ ବି ବୋହୂ ପଡ଼ିରହିଚି ଏଠି । ଯାଠୁଁ ବଳି ଭଲ ମଣିଷ ଆଉ କି'ଏ ଅଛି ବା ?'' ଶାଶୁବୁଢ଼ୀ ତା'ର ସତୁରି ବର୍ଷର ଧୁଡୁଧୁଡୁ ଚମ, ପାକୁଆ ପାଟିରେ ଆଖି ଉଠାଇ ବୋହୂର ପ୍ରଶଂସା ଗାଁଯାକ କହିବୁଲେ । ସୁରୁଜୀ ବିରୁଦ୍ଧରେ କେହି ଯଦି ପଦେ ଉଖାରିଦିଏ, ବୁଢ଼ୀ ତା' ସାତପୁରୁଷ ଉଝାଳି ଦିଏ । ଜିଭ ଝିଙ୍କି ଆଣିବାକୁ ଦଉଡ଼ିଯାଏ, ''ମୋ ବୋହୂକୁ କିଆଁ କହିବ, କେହି ଦେଖିଛ ମୋ' ବୋହୂର ଅସତୀପଣିଆ, ଆଉ ତମେ ହଲପ ଦେଇ କହିପାରିବ, ତମ ଝିଅ ବୋହୂଙ୍କ ଦିହରେ ପାପ ପଶିନି, କହିପାରିବ ?''

ମାଜଣାରୁ ଚାଷୀ ସବୁ ପୋଇ, ବୋଇତାଳୁ ତୋଳି ଉପରକୁ ଆସିଲାରୁ ସୁରୁଜୀ ତା' ଭାବନା ସୁଅରେ ବନ୍ଧ ପକେଇ ପୋଇ ଭାଗ ହବା ଜାଗାକୁ ଆସିଲା । ଭାଗ ବଣ୍ଟୁରା ସରିଗଲା ପରେ ଗଡ଼ିଆ ମାଲିକ, ଚାଷୀଙ୍କଠାରୁ ପୋଇ କିଣି ବଜାରମୁହାଁ ହେଲା ସୁରୁଜୀ । ବଜାରର ପରିବା ମାର୍କେଟରେ ବସିବ, ଶାଗ ବିକିସାରିବା ପରେ କାଲିକା ପାଇଁ ମୂଳଧନ ପଇସା ରଖି ଲାଭ ପଇସାରେ ଚାଉଳ, ତେଲ କିଣି ଫେରିବ ଘରକୁ । କଚିମର ଗଞ୍ଜେଇ ବି । ତା' ପୋଇ ଶୀଘ୍ର ବିକ୍ରି ହେଇଯାଏ ବଜାରରେ । ଗରାଖମାନେ ତା' ପୋଇ ଅପେକ୍ଷା ତା ରୂପକୁ ଦେଖି ବେଶି ଆସନ୍ତି ପୋଇ କିଣି ! ଏକଥା ସୁରୁଜୀ ନିଜେ ବୁଝେ, ବେଳେବେଳେ ମନକୁ ମନ ହସେ । ''ହଁ, ପୁରୁଷ ପୁଅ ତ, ଯବାନ ସ୍ତ୍ରୀ ଦେଖି ଭୋକିଲା ହେଇଯାଉଛନ୍ତି । ମୋର କି ଦୋଷ ? ଗିରସ୍ତଟା

ଠିକ୍ ଗିରସ୍ତ ହେଇପାରିଲାନି ନା ! ଛଚିଆ ବିଶାଳଟା ତ ଏଇ ଚମ ଲୋଭରେ ଏ ଓଳି ସେ ଓଳି ନୂଆଉ ନୂଆଉ ହଉଚି । ମାଗିଦେଲା କ୍ଷଣି ଟଙ୍କା ପଇସା ଧାର ଉଧାର ଦେଇ ଦଉଚି । ନିଜ ପାଖରେ ନ ଥିଲେ ବି ଆଉ କାହାଠୁଁ ଧାର ଆଣି ଦଉଚି । ଏକଥା ବି ସୁରୁଜୀ ବୁଝେ । ମନହାଙ୍କେ, ନା, ଛଚିଆଠୁଁ ପଇସା ଧାର କରିବି ନାହିଁ । କିନ୍ତୁ ଉପାୟ ମିଳେ ନାହିଁ । ତା' ଛଡ଼ା, କିଏ ପୁରୁଷଟା ବା ଅଛି ଯେ ଏ ଗାଁରେ, ଯିଏ ତାକୁ ଚାହିଁବ ନାହିଁ ! ସେଦିନ ପା ଛଚିଆ 'ନୂଆଉ, ତୋ' ଗାଲରେ ଏଇଟା କ'ଣ ବୋଲି କହି ଗାଲ ଆଉଁସି ଦେଲା ହସି ହସି । ଯଦିଓ ସୁରୁଜୀ ଜାଣିଲା ଛଚିଆ କେବଳ ତାକୁ ଛୁଇଁବ ବୋଲି ଗୋଟେ ବାହାନା କରିଦେଲା, କିନ୍ତୁ କିଛି କହି ନ ଥିଲା । ସତରେ ବେଳେବେଳେ ରାତିରେ ସୁରୁଜୀ ନିଜକୁ ଆୟତ୍ତ ରଖିପାରେ ନାହିଁ । ମନ ଡେଇଁଯାଏ କୁଳ, ଧର୍ମ, ପୁଣ୍ୟ, ଜାତି, ସବୁକିଛି । ଇଚ୍ଛା, କାମନାର ପୁଣି ନିୟତି ଅଛି ତ ! କେତେଦିନ, କେତେ ମାସ ସେ ଏମିତି କଲବଲ ହେଇ ପଡ଼ିରହିବ ? କାହିଁକି ବା ପଡ଼ିରହିବ ? କାହାପାଇଁ ? ଶାଶୁ ବୁଢ଼ୀ ଆଉ ଦି'ଦିନକେ ନିଭିବ, ତା'ପରେ ଆଉ କିଏ ଅଛି ତା'ର ? କଟିମ ପ୍ରତି ତା'ର ଦୟା ହୁଏ, କିନ୍ତୁ ସେଇଟା ଦୟାର ପାତ୍ର ବି ନୁହେଁ । କାହାଠାରୁ ଗଞ୍ଜେଇ ଟିପେ ପାଇଗଲେ, ଯିଏ ନିଜ ସ୍ତ୍ରୀର ଚରିତ୍ର ବିରୁଦ୍ଧରେ କୁତ୍ସା ରଟିବାକୁ ପଛାଏ ନାହିଁ, ସେଟା କି ଘଇତା ? ଗିଲାସେ ଦେଶୀ ମାଲ କାହାଠୁ ପାଇଗଲେ ଯିଏ, ନିଜ ସ୍ତ୍ରୀର ଜାନୁ, ଯୌବନ, ଅଙ୍ଗ ସମ୍ପର୍କରେ ଟିକି ନିଖି ବିବରଣୀ କହିଯାଏ, ଆଉ ଶୁଣିବା ଲୋକେ କାମନାର ଆଖିରେ ଆହୁରି ମଜା ମାରିନବା ପାଇଁ ଯେତେବେଳେ କୁହନ୍ତି, ''ତୁ ମିଛ କହୁଚୁ'', ସେତେବେଳେ ସେ କହେ, ''ମିଛ କହୁଚି ଯଦି, ଯାଉନା ନିଜେ ଦେଖିଆସିବ,'' ସେଟା ଘଇତାଯୋଗ୍ୟ ? ତେଣୁ, କାହିଁକି ସୁରୁଜୀ ଏଠି ପଡ଼ି ରହିବ ? ବେଳେବେଳେ ରାତିରେ ତା' ମାଂସର ଢେଉ ଇମିତି ଗର୍ଜି ଆସେ ଯେ, ସୁରୁଜୀର ଇଚ୍ଛା ହୁଏ, ଏଇ ଅବିକା ସିଏ ଚାଲିଯିବ କି କାହାରି ପାଖକୁ । ସବୁବେଳେ ତା' ସାଙ୍ଗରେ ଲାଗୁଥିବା ସେଇ ଛଚିଆ ପାଖକୁ ? କିନ୍ତୁ ଛଚିଆର ଯେ ମାଇପ ଅଛି, ପିଲା ତିନିଟା ଅଛନ୍ତି ! ପୁଣି ତା'ର ମନ ତାକୁ ଚେତେଇ ଦିଏ- ଛି, ଛି !

ଜ୍ୟେଷ୍ଠିଆ ହୁତୁହୁତିଆ ଖରାବେଳ । ଗାଁ ଏକ୍ଣା ପଟ୍ନାଇକ କଣ୍ଟା ବାଉଁଶବଣ ଭିତରେ ବାଉଁଶ ପତିରି ଖରକୁଥିଲା ସୁରୁଜୀ । ବାଉଁଶବୁଦା ଛାଇରେ ବସିଥିଲା ଛଚିଆ ବିଶାଳ । ସେଆଡୁ ବର୍‌ର ବର୍‌ର ହେଇ ଆସୁଥିଲା କଟିମ । 'ବାରଆଡ଼େ ବାରଘଇତା କରି ଟଙ୍କା କମଉଚି, ମୁଁ ଗଞ୍ଜେଇ ପାଇଁ ଟଙ୍କାଟେ ମାଗିଲା ବେଳକୁ କହୁଚି-କାଲିଠୁଁ ଜର, ମୁଣ୍ଡ ବୁଲଉଚି, ପୋଇ ବିକି ଯାଇନି, ପଇସା ଆଣିବି କେଉଁଠୁ ? ମିଛେଇ

ତିର୍ଲା, ମୋତେ ଠକୁଚି, ଦଉଚି ଆଜି ପାନେ ଚଢ଼େଇ... ରହ...। ହଠାତ୍ ଦୂରରୁ ତା'ର ନଜରକୁ ଆସିଗଲେ ସୁରୁଜୀ ଆଉ ଛଚିଆ। ସେ ଚଟାକ୍‌କିନା ପାଟିରେ ହାତ ଦେଇଦେଲା। ଆଗକୁ ଯିବ ନା ପଛକୁ ଫେରିବ, ସେକ୍ଷଣି ସେ ଠିକ୍ କରିପାରିଲାନି। ଠିଆ ହେଇପଡ଼ିଲା, ଦୋ ଦୋ ପାଞ୍ଚ ହେଇ। କ'ଣ ଭାବିଲା କେଜାଣି ହସର ଚାକୁଳି ଖାଇଲା। ଆଗକୁ ଗଲେ ସେ ଦୁହିଁଙ୍କର ଫସର ଫାଟିଯିବ। 'ଖରାବେଳିଆ ଦିହେଁ ସଲାସୁତୁରା ହେଇ... ବେଶ୍... ବେଶ୍' ଏୟା ଭାବୁ ଭାବୁ ପୁଣି କେଉଁ ଗହୀର ମନରୁ ଉବୁକିଲା- ''ମୁଁ ପା ଗେରସ୍ତ। ମାଇପଟା କୁହୁକିଆ ଖରାବେଳରେ ନିଛାଟିଆ ବାଉଁଶବଣ ଭିତରେ ଆଉ ଜଣକ ସହ ଲୀଳା କରୁଥିବା ଦେଖି ମୁଁ ନୀରବରେ ଉଁ ଚୁଁ ନ କରି, ନ ଦେଖିଲା ଭଳି ପଛକୁ ଫେରିଯିବି ? ମୁଁ ଗେରସ୍ତଟି ? ହଁ ବା, କି ଗେରସ୍ତ ? କିଏ ହଲପ ଦେଇ କହିପାରିବ ମୁଁ ମୋ ତିର୍ଲାର ଏକମାତ୍ର ଗେରସ୍ତ ବୋଲି ? ନା, ନା, ମୁଁ କିଛି ଦେଖିନାହିଁ। ମୁଁ ମୂଳରୁ ଏ ବାଟେ ଆସିନାହିଁ। ଧର, ମୁଁ ଏ ବାଟେ ଏବେ ଆସି ନ ଥାନ୍ତି, ସେଇଠୁ... ? ସେଇଠୁ ଆଉ କ'ଣ ? ମୁଁ ତ ଆସିନି, ଆସିନି।'' ପଛକୁ ବୁଲିପଡ଼ି ଥିର ଥିର ପାଦରେ, ଖସ୍ ଖସ୍ ନ ହେଲା ଭଳି ଫେରିଗଲା କଟିମ। ବିଲ ମଝିରେ ଥିବା ଚେମାମଣି ବରଗଛ ମୂଳେ ଗାମୁଛାଟା ପକେଇ ଲମ୍ଭତମ୍ଭ ଶୋଇପଡ଼ିଲା। ବରଗଛ ଡାଳ ସନ୍ଧିରେ ଏଇ ଡହକିଆ ଖରାବେଳରେ ବଗୁଲା- ବଗୁଲୀ ଚଂଚୁ ଘଷାଘଷି ହେଉଥିଲେ। କଟିମ କ'ଣ ଭାବିଲା କେଜାଣି ପାଖରୁ ମାଟି ପୁଳାଏ ଉଠାଇ ପକ୍ଷୀ ଦୁଇଟିଙ୍କ ଉପରକୁ ଫିଙ୍ଗିଲା। ଫଡ଼୍ ଫଡ଼୍ କରି ସେ ଦି'ଟା ଉଡ଼ିଗଲେ। କଟିମ ତାଳିମାରି ହସିଦେଲା। କିଛି ସମୟ ବାଦେ ପୁଣି ସେଇ ରାସ୍ତାରେ ପଟ୍‌ନାଇକ ବାଉଁଶ ବଣକୁ ଥିର୍ ଥିର୍ ପାଦ ପକାଇ ଆସିଲା। ଛଚିଆ ବିଶାଳ ଯାଇ ସାରିବଣି ବୋଲି ଭାବିଥିଲା, କିନ୍ତୁ ଯଦି ଯାଇ ନଥାଏ ? ସୁରୁଜୀ ଆଉ ଛଚିଆ ତାକୁ ଯେମିତି ଦେଖି ନ ପାରନ୍ତୁ, ସେଥିଲାକି କଟିମ ଉହାଡ଼ ଉହାଡ଼ ହେଇ ଚାଲିଲା ଏବଂ ବାଉଁଶବଣଠିଁ ପହଞ୍ଚିବାକ୍ଷଣି ସେ ଗୋଟେ ବାଉଁଶବୁଦା ପଛପଟେ ଲୁଚି ରହି ଉହୁଁକି ଚାହିଁଲା। ଛଚିଆ ବିଶାଳ ତା' ନଜରକୁ ଆସିଲା ନାହିଁ। ସୁରୁଜୀ ବାଉଁଶ ପତିରି ଗୋଟେଇ ସାରି ବୁରାପଟରେ ସେ ସବୁକୁ ନାଉଥିଲା। କଟିମ ସ୍ୱସ୍ତିର ଦୀର୍ଘଶ୍ୱାସଟେ ଛାଡ଼ି ସୁରୁଜୀ ପାଖକୁ ଗଲା। ''ମୁଁ ତୋତେ ସାରା ଦୁନିଆଟା ଖୋଜିସାରିଲିଣି, ତୁ ଏଇଠି ? ତେଣେ ମାଆ ପୋଖରୀରୁ ଫେରୁ ଫେରୁ ପଡ଼ିଯାଇ ତା' ଦିହହାତ ବଥା !'' କଟିମ ଏକା ନିଃଶ୍ୱାସକେ କହିଗଲା। ଶାଶୁର ଦିହ ଖରାପ ହୋଇଯାଇଚି ଜାଣି ସୁରୁଜୀ ତରତରରେ ପଟ ବାନ୍ଧି ମୁଣ୍ଡ ଉପରକୁ ଉଠାଇଲାବେଳେ କଟିମ କହିଲା-''ଏଁ, ଏତେ ତରବର କାହିଁକି, ମାଆ କ'ଣ ମରିଯାଉଚି, ଦେଲୁ, ଦେ ଗୋଟେ ଟଙ୍କା !''

-''ସେଣେ ମାଆ ଅବସ୍ଥା ଖରାପ, ଏଣେ ପୁଅର ମଜଲିସ୍ ଚିନ୍ତା ! ଓଷଦପଥି ପାଇଁ ପଇସାଟେ ନାହିଁ, ପୁଅ ବାହାରିଚି ମଦ ଖଟିକୁ, ଛି... ଛି... ! ମୋ ପାଖରେ

ପଇସା କେଉଁଠୁ ଆସିବ, ଏ ବାଆଁଶ ଗଛରୁ ପଇସା ଝରୁଚି ନା କ'ଣ ?'' ସୁରୁଜୀ ରାଗିଯାଇ କଟିମକୁ ସଳଖେଇଲା ।

-''ଟିର୍ଲା, ପେଖନା କାଢୁଚି, ମୁଁ ଯିମିତି ଜାଣିନି କିଛି ? ଏଇ ଟିକେ ଆଗରୁ ଯେ...'' କହିବ ବୋଲି ହଙ୍କ ହଙ୍କ ହେଉଥିଲା କଟିମ । କିନ୍ତୁ ସୁରୁଜୀ ଯଦି କହିଦବ 'ମାଇପଟା ଆଉ ଜଣକ ସାଙ୍ଗରେ ଏଇଠି ନଟର ପଟର ହଉଥିବା ନିଜ ଆଖିରେ ଦେଖି ତମେ ନୀରବ ରହିଲ କେମିତି ? କ'ଣ ପଇସା ଲୋଭରେ କିଛି ନ କହି କୁଆଡ଼େ ଲୁଚିଗଲ ନ ଦେଖିଲା ଭଳି ! ଛି, ତମ ଗିରସ୍ତପଣିଆ !' ସେତେବେଳେ କଥା ସରିଯିବ । କିଛି କହିଲାନି କଟିମ । ତଳେ ଥିବା ପାଛିଆ ଆଉ ପହଁରା ଧରି ସୁରୁଜୀ ପଛେ ପଛେ ଘରକୁ ଗଲା । ନାଲିପାଣି ଟୋପେ ପାଇଁ ମନଟା ତା'ର ହାଇଁପାଇଁ ହଉଥିଲା । ସେ ମନେ ମନେ ଭାବିଲା, ଟିର୍ଲା ଜାତି ଭଳିଆ ଏ ମର୍ଦ କାହିଁକି ନ ହେଲା, କାନି ପତେଇଦେଲେ କିଛି ଟଙ୍କା ଦଶ ମିନିଟରେ ଅଣ୍ଟାକୁ ଆସନ୍ତା, ଆଉ ସେ ଏ ସୁରୁଜୀର ପଇସାକୁ କାଣି ଆଖିରେ ବି ଅନାନ୍ତା ନାହିଁ !

ଶାଶୁବୁଢ଼ୀ ମଲାପରଠାରୁ ସୁରୁଜୀ ଏକାଟିଆ ହେଇଗଲା । ତା'ର ଭଲ ମନ୍ଦ, ସୁଖଦୁଃଖରେ ଭାଗୀ ହବା ପାଇଁ କେହି ରହିଲେନି । କଟିମଟା ଖାଲି ତା' ମଥାର ସିନ୍ଦୂର ହେଇ ଦାଉ ଦାଉ ଜଳିଲା ସିନା, କିନ୍ତୁ ଘଇତା ହେଇପାରିଲାନି । ହଉ, ସେତକ ଗର୍ବ ହେଇ ଥାଉ, ସୁରୁଜୀ ଦୀର୍ଘଶ୍ୱାସରେ ଦିନ କାଟିଯାଏ । ଆଷାଢ଼ର ଲଗାଣ ବର୍ଷାରେ ମାଙ୍କଣା ପୋଖରୀ ବୁଡ଼ିଗଲା । ପୋଇ, ବୋଇତାଳୁ କାରବାର ସରିଗଲା । ତଥାପି ସୁରୁଜୀ ପେଟେ ପାଣିରେ ପଶି ପୋଇମୂଳ ଉପାଡ଼ି ଆଣି ବାଡ଼ିରେ ଲଗାଇଛି । ପୋଇ ବେଉସା ଗଲା ପରେ ଏ ବର୍ଷା ଦିନରେ ସୁରୁଜୀ ପରର ଧାନ ବେଉଷଣ କାମରେ ବିଲରେ ମୂଲ ଖଟୁଚି । କଟିମଟା ସେମିତି ମାତାଲ ହେଇ ବୁଲୁଚି ।

ଶାଶୁ ମଲା ପରଠାରୁ ସୁରୁଜୀ କେତେଥର ନିଜକୁ ନିଜେ କହିଚି 'ଆଉ କାହିଁକି ରହିବୁ ଏଠି ? ଦୁତୀୟ ହେଇ ପଳା । ଆପଣାର ବୋଲି ତ କେହି ରହିଲେ ନାହିଁ !' କିନ୍ତୁ ପରେ ପରେ ନିଜକୁ ବହଲେଇ ଦେଇଚି । ଯାହାହେଲେ ବି କଟିମ ତା'ର ଗେରସ୍ତ । ସେ ଚାଲିଗଲେ କଟିମ ଭୋକଉପାସରେ ବୁଲିବ, ହାଅନ୍ନ କାଙ୍ଗାଳ ହେଇ ଦୁଆର ଦୁଆର ଭିକ ମାଗିବ, ଶେଷରେ ରାସ୍ତାକଡ଼ରେ ମରିବ, ନା, ନା, ତାହା ହବାକୁ ସେ ଦବ ନାହିଁ । ସେ ଦୁତୀୟ ହବ ନାହିଁ । ଶାଶୁ ଗଲା ପରେ କଟିମର ମଦ ନିଶା, ଗଞ୍ଜେଇ ନିଶା ଛଡ଼ାଇବ ବୋଲି ସୁରୁଜୀ କଟିମକୁ ପ୍ରଥମେ ପ୍ରଥମେ ଗୋଟେ ହେଲେ ପଇସା ଦେଲା ନାହିଁ । କିନ୍ତୁ ସେ ଯେତେବେଳେ ଦେଖିଲା କଟିମ କିଣାଚାଉଳ, ଅଟା, ଘରର ଆସବାବପତ୍ର ସବୁକୁ ବିକ୍ରିକରି ମଦ ଗଞ୍ଜେଇରେ ଖର୍ଚ୍ଚ କଲା, ସେଇଠୁ ସୁରୁଜୀ ପୁଣି ତାକୁ ପଇସା ଦବା ଆରମ୍ଭ କଲା ।

ସେଦିନ ସିନ୍ଦୂର ପନ୍ତିଏ, ଛୋଟ ମାଛ ଦିଇଣ କିଣିସାରିଲା ପରେ ସୁରୁଜୀ ପାଖରେ ଆଉ ଜମା ଥାଏ ପଚାଶ ପଇସା । କଟିମକୁ ସେତିକି ଦେଲାରୁ ସେ ରାଗିମାଗି ଯାଚ୍ଛାତା କାଢ଼ି ଶେଷରେ ସେତିକିରେ ବାୟାଠାରୁ ତାଡ଼ି ପିଇଦେଲା ।

ଦି'ପହର ସମୟ । ବର୍ଷା କିନ୍ତୁ କାଟୁଚି । ବର୍ଷା ପାଣିରେ ବିଲମାଳ, ରାସ୍ତା, ଗୋହିରୀ ସବୁ ଏକାକାର ହୋଇ ସାଗର ଭଳି ଦେଖାଯାଉଛି । ତାଡ଼ି ପିଇଦେଲେ ବି କଟିମର ନିଶା ଓରିମାନ ତୁଟି ନ ଥିଲା । ସେ ସେଇ ବର୍ଷାରେ କୁଦି କୁଦି ଘରମୁହାଁ ହେଉଥିଲା, ମନରେ ସୁରୁଜୀ ପାଇଁ ବୁହେ ଗାଳିର ଫନ୍ଦି ବାନ୍ଧି ।

ଘର ଦାଣ୍ଡଦୁଆର ମୁହଁରେ ପହଞ୍ଚି ସେ ଶୁଣିଲା ସୁରୁଜୀର ମେଘନାଦିଆ କଣ୍ଠ- ''ତୁ ବିଶାଳ ପୁଅ ମୋତେ କ'ଣ ଭାବିଛୁ କି ? ପାଞ୍ଚ ଦଶ କରି ପଚାଶଟଙ୍କା ମୁଁ ତୋ'ଠାରୁ ଧାର ଆଣିଛି ସତ, କିନ୍ତୁ ମୋ ଇଜ୍ଜତ୍ ଦବାକୁ ନୁହେଁ ! ଦି'ପହର ଏ ବର୍ଷାରେ, ମୋ ଘଇତା ଘରେ ନାହିଁ ଦେଖି ପଳେଇଆଇଚୁ ମୋ ପାଖରେ ନାଂଗର ହବୁ ବୋଲି, ଛି,ଛି, ! ମୋର ଏଠି କେହି ନାଇଁ ସତ, ମୋ ଘଇତା ଗୋଟେ ମଦୁଆ ସତ, କିନ୍ତୁ ତା'ବୋଲି ମୋତେ ଇମିତି ସିମିତି ଭାବନା, ହଅଁ ! କ'ଣ ବୋଲି ଭାବି ଏ ଅପର୍ଚ୍ଛନିଆ କଥା କହିଲୁ । କ'ଣ ମୁଁ ବେଶ୍ୟା କି ? ଖବର୍‌ଦାର୍ ! ଏ ଯାଏ ତୋତେ ମୁଁ ଏ ଗାଁର ଗୋଟେ ଉପକାରୀ ଲୋକ ଭାବିଥିଲି, କିନ୍ତୁ ତୁଟା...ଛି ! ଯା', ପଳା ଏଠୁ ଶୀଘ୍ର, ନଇଲେ ଛାଞ୍ଚୁଣି ପାହାରରେ...''

ଏସବୁ ଶୁଣୁଶୁଣୁ କଟିମର ମୁଣ୍ଡ ଝାଏଁ ଝାଏଁ କରିଯାଉଥିଲା । ଏ ଯାବତ୍ ସେ ସୁରୁଜୀକୁ ଦୋଚାରୁଣୀଟେ ବୋଲି ଭାବିଥିଲା ସିନା ! ସତରେ ସୁରୁଜୀ... ! ଆଖିରେ ତା'ର ଲୁହ ଭରିଆସିଲା । ଆହା, ଏଭଳି ସତୀଆ ମାଇପଟେ ତା'ର । କଟିମର ଛାତି ଗର୍ବରେ ଫୁଲିଉଠିଲା । ନିଜେ ମୂଲ ଖଟି ତା'ର ଗେରସ୍ତକୁ ଖାଇବାକୁ ଦଉଚି, ମଦପାଣି ପାଇଁ ପଇସା ଦଉଚି, ପୁଣି ନିଜ ମାନ ବଞ୍ଚାଇବାକୁ ଯାଇ ଛଚିଆ ବିଶାଳ ଭଳି ଗାଁ ମାମଲତକାରକୁ ବୁହେ ଶୋଧୁଛି... ।

କଟିମ ଦେଖିଲା ଛଚିଆ ବିଶାଳ ଭୟ ଫର୍ ଫର୍ ମୁହଁରେ ଯାଡ଼କୁ ସ୍ୟାଡ଼କୁ ଅନାଇ ତା' ଘରୁ ବାହାରି ସପ୍‌ଟିଛି । କଟିମ ମୁହଁରୁ ଫେଁ କିନା ହସ ବାହାରିପଡ଼ିଲା । ସେ ଘର ଭିତରକୁ ପଶିଗଲା । ସୁରୁଜୀକୁ ପଚାରିଲା, ''ଆଲୋ, ଆଜି ଏ କି ଅଘଟଣ, ଛଚିଆ ବିଶାଳ ଏଠୁ ଡରିମରି ଦଉଡ଼ିଚି କାହିଁକି ?''

''ଏଠିକି ଆସିଥିଲା ? କାଇଁ, ନା ତ !'' ଆଖି ଲୁହକୁ ଲୁଗା କାନିରେ ଚଟକରି ପୋଛି ଉତ୍ତର କଲା ସୁରୁଜୀ । କଟିମ ପାଖରେ ଏ ଘଟଣା ବଖାଣିବାରେ ଲାଭ କ'ଣ ? ବରଂ ସେ ତାକୁ ଗାଁ ସାରା ଡିବିଡ଼ିବି ବଜେଇବ ଲଗେଇଲୁଚେଇ । ତେଣୁ ସୁରୁଜୀ ତାକୁ ବାଆଁରେଇଲା । ସୁରୁଜୀଠୁଁ ଏ କଥା ଶୁଣି କଟିମ ଆକ୍‌କା ହେଇଗଲା । ଆଖି ଦି'ଟା ତା'ର ଢିମେଇ ଗଲା ।

. ରାତି ଦଶଟା ପାଖାପାଖି କଟିମ ଭାଙ୍ଗ, କଦଳୀ, ଗୁଡ଼ଧରି ପହଞ୍ଚିଲା । ଗାଁଟା ଆସ୍ତେ ଆସ୍ତେ ନିଃଶବ୍ଦ ହେଇଆସୁଥାଏ । ସୁରୁଜ୍ଜୀକୁ କହିଲା : "ନା, ଏଣିକି ସେ ମଦ,ଗଞ୍ଜା ଆଉ ଖାଇବିନି । ବରଂ ଏଇ ଭାଙ୍ଗପଣା ଟିକେ ଟିକେ ପିଇବି । ତୁ ଟିକେ ଭାଙ୍ଗ ବାଟିଦେଲୁ ।"

ସୁରୁଜ୍ଜୀ କଟିମର ଏ ହଠାତ୍ ପରିବର୍ତ୍ତନରେ ଖୁସି ହେଲା । ଭାଙ୍ଗ ବାଟି ପଣା କରିଦେଲା । କଟିମ ଗୋଟେ ଗ୍ଲାସ୍ ପିଇ ସୁରୁଜ୍ଜୀକୁ ଗୋଟେ ଗ୍ଲାସ ଦେଲା । ପହିଲେ ସୁରୁଜ୍ଜୀ ମନା କରୁଥିଲା । କଟିମ ରାଣ ନିୟମ ପକାଇ ବାଧ କଲା । ସୁରୁଜ୍ଜୀ ଆଗରୁ ବି କେତେଥର ଭାଙ୍ଗପଣା ପିଇଛି । କିନ୍ତୁ ତାକୁ ବେଶି ନିଶା ଘାରେ ବୋଲି ସେ ପିଏ ନାହିଁ । ଆଜି ପିଇଲେ କାଲି ଦିନଟାଯାକ କୌଣସି କାମ କରିପାରିବ ନାହିଁ । ସେଥିପାଇଁ ମନା କରୁଥିଲା । କଟିମ ବାଧ କଲାରୁ ସେ ପିଇଦେଲା ।

ରାତି ବଢ଼ିଚାଲିଲା । ନିଶା ଘାରିଚାଲିଲା । ଘର ଅନ୍ଧାର ହେଇ ଆସିଲା ।

ସୁରୁଜ୍ଜୀର ନିଶା ନିଦ ଭାଙ୍ଗିଲାବେଳକୁ ସୂର୍ଯ୍ୟ ଉଇଁ ସାରିଲେଣି । ସୁରୁଜ୍ଜୀ ଉଠିପଡ଼ିଲା ପରେ ତାକୁ ଅଲଗା ଅଲଗା ଲାଗିଲା । ପାଦ, ଛାତି, ଅଣ୍ଟାରେ ସବୁ ଯନ୍ତ୍ରଣା ବାରି ହେଉଛି । ପ୍ରତୀକ୍ଷିତ ନାରୀତ୍ୱର ବାସନା ପୂର୍ଣ୍ଣ ହେଇଯାଇଚି । କ୍ଲାନ୍ତିର ମଧୁର ଆନନ୍ଦରେ ସେ ଧୀରେ ହସିଦେଲା । କଟିମକୁ ଚାହିଁଲା, ଏକ ନାହିଁ ନଥିବା ସନ୍ତୋଷରେ । ସେ ଦେଖିଲା ପାଖରେ ବସି କଟିମ ଢୁଳାଉଛି । ସେ କଟିମକୁ ନିଜ ଆଡ଼କୁ ଟାଣିଆଣିଲା ଏବଂ କାନରେ କହିଲା : ଦେଖ, ଏଣିକି ତମେ ମଦ ନ ପିଇ ବରଂ ଏଇ ଭାଙ୍ଗ ପିଅ !

ସେମିତି ଢୁଳଉ ଢୁଳଉ କଟିମ କିନ୍ତୁ ନିଜ ଅଣ୍ଟିରେ ହାତ ମାରୁଥିଲା, ଯେଉଁଥିରେ ମାଛି ଅନ୍ଧାରବେଳେ ସୁରୁଜ୍ଜୀଠୁଁ ଚାଲିଯିବା ପୂର୍ବରୁ ଛଟିଆ ବିଶାଳ ଦେଇଯାଇଥିଲା ତାକୁ ଦଶ ଟଙ୍କାର ନୋଟ୍‌ଟିଏ, ସୁରୁଜ୍ଜୀର ଅଜାଣତ୍‌ରେ !



(ଝଙ୍କାର : ଜୁଲାଇ ୧୯୮୯)

# ମା

କୁଆ ବସାରୁ ଖଣ୍ଡିଉଡ଼ା ଦଉଥିବା କୋଇଲି ଶିଶୁ କୁ କୁ କରି ଉଡ଼ିଯାଉଛି । ଆଶ୍ଚର୍ଯ୍ୟର ପହଡ଼ ଭିତରେ କୁଆଟି ଆମ୍ବଗଛର ବସାରେ ନିଜ ଥଣ୍ଟକୁ ପିଟି ଯାଉଚି ତ ଅପୂର୍ବା ବି ଚୋ' ଚୋ' ଢଙ୍ଗର ମୁହଁରେ ବଲ ବଲ ଅନାଇଚି ଆଶା ଓ ଆନନ୍ଦର ଛାତିକୁ ଭାଙ୍ଗିରୁଜି ଉଡ଼ିଯାଉଥିବା କୋଇଲିକୁ । ତା ପୁଣି କୁ' କୁ'ର ସର୍ବାଧିକ ତାରୁଣ୍ୟ ଓ କୋମଳ ସଙ୍ଗୀତର ବୀଣା ଫୁଙ୍କି । ଅପୂର୍ବା ମନରେ ବିଦ୍ରୋହ ଓ ଅଭିଯୋଗର ପୃଷ୍ଠା ଲେଖିହୋଇ ଯାଉଥିଲା । ଏ ପ୍ରକୃତି ଏତେ ସାଂଘାତିକ ଭାବରେ ବିଚିତ୍ର ଯେ ଅନ୍ୟର ଆକାଂକ୍ଷା, ବାତ୍ସଲ୍ୟ ମମତାକୁ ଦୋହଲାଇ ସ୍ୱାଧୀନତା ଅର୍ଜୁଥିବା କୋଇଲି ହୋଇଛି ପକ୍ଷୀ ଜଗତର ସର୍ବ-ସୁକଣ୍ଠି !

ଅପୂର୍ବାର ଦୃଷ୍ଟି ଘୁରିଆସି ସାମ୍ନାଗେଟ୍ ପାଖରେ ଗୋଟେ ଭଙ୍ଗା ଇଟାକୁ ଚାମଚ୍‌ରେ ପିଟୁଥିବା ପଡ଼ିଶାଘରର ଦେଢ଼ ବର୍ଷର ପୁଅଠି ଲାଖିଗଲା । ଆଖି ଦି'ଟା ତାର ସକାଳ ସୂର୍ଯ୍ୟରେ ପଦ୍ମକଢ଼ ମେଲେଇଲା ଭଳି ଫୁଟି ଉଠିଲା । ଏଇ ପୁଅଟି ମୋର ହୋଇ ଥାଆନ୍ତା କି ବା' ମୋର ଏମିତି ପୁଅଟିଏ ହୁଅନ୍ତା କି ! ମୁହଁ ଓ ଆଖି ତା'ର କେତେ ବିସ୍ତୃତ ଓ ପ୍ରଜ୍ଜ୍ୱଳିତ ସତେ ! ଶିଶୁଟିର ଆଠ ନଅ ବର୍ଷର ବଡ଼ ଭଉଣୀ ସାମ୍ନାଗେଟ୍ ଉପରକୁ ଚଢ଼ିବା ଓ ଓହ୍ଲେଇବା ଖେଳରେ ମାତିଥିଲା । ସେମାନଙ୍କର ମାଆ ସରୋଜା ଟେପ୍ ପାଖରେ ବାସନ ସବୁ ଧୋଉଥିଲା । ଅପୂର୍ବା କ୍ଷଣିକ ପାଇଁ ସରୋଜା ଉପରେ ଈର୍ଷାବିନ୍ଦୁ ଢାଳିଲା । ମୋଠୁ ସାନ ସରୋଜା ଦି ଦି'ଟି ଛୁଆଙ୍କ ସ୍ନେହ ଓ ଅର୍ଦ୍ଧଳିରେ ଫାଟି ପଡୁଛି, ଅଥଚ ଗୋଟେ ହେଲେ ଛୁଆ ମୋର ଗର୍ଭଚିରି ମାଟି ଉପରେ ଖେଳିଲାନି । ବାହାଘରର ଦଶ ବର୍ଷପରେ ବି ! ଅଥଚ ଏ ମନ ଏମିତି, ଏ ଆଖି ଏମିତି ଯେ ସରୋଜାର ସାନ ପୁଅକୁ ଦେଖିଲା ମାତ୍ରେ ବିମୁଗ୍ଧ ହେଇ ଉଠୁଚି । ଏତିକି ଚିନ୍ତା କଲାବେଳକୁ ଅପୂର୍ବା ନିଜକୁ ଆବିଷ୍କାର କଲା ଯେ ସେ ଛାଞ୍ଚୁଣି ଧରି ଦାଣ୍ଡ ବାରଣ୍ଡାରେ

ଛିଡ଼ା ହେଇଚି । କେତେ ସମୟ ହେଲା ସେ ଏମିତି ଛିଡ଼ା ହେଇଛି ? ଘଣ୍ଟେ ନା ଦୁଇ ଘଣ୍ଟା ? କେହି ଦେଖିନି ତ ! ଏତେ ସମୟ ଧରି ଏଭଳି ଛିଡ଼ା ହେବାକୁ କେହି ପାଗଳପଣିଆ ବୋଲି ଭାବି ନେଇନି ତ ! ସରୋଜାର ସାନ ପୁଅକୁ ବଲ ବଲ କରି ମୁଁ ଚାହିଁଥିଲି ଏତେ ସମୟଧରି, ଏକଥା ସରୋଜାର ଆଖିରେ ପଡ଼ିନି ତ, ରକ୍ଷା ! ସରୋଜା ଟେପ୍ ମୂଳରେ ବାସନ ମାଜିବାରେ ବ୍ୟସ୍ତ । ନ ହେଲେ ଛୁଆ ଡାଙ୍କୁଣି ବୋଲି ଭାବି ନେଇଥାନ୍ତା । ଅପୂର୍ବା ତରତର ହେଇ ଘର ଭିତରକୁ ପଶିଗଲା । ଘର ଭିତରେ କାମ ବି କ'ଣ ? ସୁଧୀର ଚାଲିଗଲେଣି ଡିଉଟିକୁ । ଫେରିଲାବେଳକୁ ସଞ୍ଜ ଛଅ । ଏତେ ଗୁଡ଼ାଏ ସମୟ ସେ କରିବ କ'ଣ ? କରେ ବା କ'ଣ ? ଆଠଟା ବେଳକୁ ସୁଧୀରକୁ ଖାଇବାକୁ ଦେଇସାରି ସେ ବିଦା ହୋଇ ସାରିଲା ପରେ ଅପୂର୍ବା ଶୋଇପଡ଼େ । ଉଠେ ଗୋଟେ ଦେଢ଼ଟା ବେଳକୁ । ଖାଇନିଏ । ସାରା ଦ୍ୱିପହର ଆଉ ନିଦ ହୁଏନା ! ଘର ଝାଟେଇବା, ଚଟାଣ ପୋଛିବା, ଲୁଗା ସଫା କରିବା କାମରେ ଲାଗିପଡ଼େ । କାମ ବି କାହିଁ ? ପରିବାର ମାନେ ସେ ଓ ତା'ର ସେ ସୁଧୀର । ଏଣୁ ବେଳେବେଳେ ଗୋଟେ କାମକୁ- ଡବଲ ଥର କରେ । ଟେପ୍‌ରୁ ପାଣି ଆଣିବା ଏବଂ ଆଣିସାରି ହେ' ଏଇଟା ଭଲ ପାଣି ହେଇ ନଥିବ ଭାବି ସେ ପାଣିକୁ ନାଳୁଆରେ ଢାଳି ପୁଣି ଥରେ ପାଣି ଆଣିବା, ଦାଣ୍ଡ ବାହାରଟାକୁ ଥରେ ଝାଡୁ ମାରି ସାରି ପୁଣି ଥରେ ଝାଡୁ ମାରିବା, ଗତକାଲି ସଫା କରିଥିବା ରୁମାଲକୁ ପୁଣିଥରେ ସଫା କରିବା କାମରେ ସମୟଟାକୁ ଯନ୍ତ୍ରଣାହୀନ ଭାବରେ ଗଡ଼ାଇ ଚାଲିବାକୁ ଚେଷ୍ଟା କରେ । କିନ୍ତୁ ଆଜି ଅପୂର୍ବା ଝାଡୁଟା ଧରି ଘର ଭିତରକୁ ଯାଇ ସେଇ ଝାଡୁଧରା ଅବସ୍ଥାରେ ବିଛଣାରେ ଚିତ୍‌ହେଇ ପଡ଼ିଲା । ବାହାରେ ଖରାଦିନର ଝାଞ୍ଜି ଢୋ ଢୋ । ଫ୍ୟାନଟାକୁ ଫୁଲସ୍ପିଡ୍ ଦେଇ ଦେଲା । ସରୋଜାର ସ୍ୱାମୀ ବିକାଶର ହସନ୍ତା ମୁହଁ ଓ ଲୋଭିଲା ଆଖିକୁ ନିଜ ଆଡ଼କୁ ଛାତି ଭିତରେ ଟାଣି ନେବାକୁ ଚେଷ୍ଟା କଲା, ବିକାଶ ଏବେ ରୁମ୍‌ରେ ଶୋଇଥିବ । ତା'ର ସବୁବେଳେ ସକାଳ ଡିଉଟି । ଯାଏ ଛଅଟାରୁ, ଫେରେ ଗୋଟାଏ ବେଳକୁ । ଏଇଟା କ'ଣ ତା ପାଇଁ ସୁବର୍ଣ୍ଣ ସୁଯୋଗ ନୁହେଁ ? ଥରେ ଯଦି ବିକାଶ ସରୋଜାର ଆଖିଠୁ ଲୁଚି ଆସି ଗୋଟେ ଦ୍ୱିପହର ଏଇ ବିଛଣାରେ ମୋ ସହ... କେବଳ ମୋର ପିଲାଟେ ପାଇଁ, ନା, ନା, ରୁମ୍‌ଟା ଠିକ୍ ହେବନି । ଦ୍ୱିପହରେ ପଡ଼ିଶା ଘର ଝିଅ ସୁମିତ୍ରା, ବନ୍ଦିତା ଆସି ଆଡ୍‌ଡ଼ା ଜମାନ୍ତି । ଏ ରୁମ୍ ନହେଲା, କମନ୍ ବାଥ୍ ରୁମ୍ ତ ଅଛି ! ବିକାଶକୁ ଦେଖିଲେ ଦୁଇଟି ପିଲାର ବାପ ବୋଲି କେହି କହିବନି । ଆଉ ଆମର ଇଏ ବାହାଘରର ଦଶ ବର୍ଷ ଭିତରେ ଗୋଟେ ହେଲେ ପିଲାର ବାପ ନହେଇ ପଇଁଚାଳିଶ ଅଡ୍‌ଚାଳିଶ୍ ବର୍ଷ ଲୋକ ଭଳି ଦେଖା ଯାଉଛନ୍ତି । ପିଲାଟେ ପାଇଁ ସାରାରାତି ବିଛଣା ଉପରେ ଦେହଶୋଷା, ଏକ ପ୍ରକାର ଜବରଦସ୍ତି ଦାହ, ଏବେ ସେଥିରେ ଆବେଗ ନା ଆନନ୍ଦ । ପୁଣି ଉଭୟ ନିଜ ନିଜକୁ ଦୋଷୀ କରି ଦେଇଥିବାର ଗ୍ଲାନି ବିଛଣା ଉପରେ ଉଭୟଙ୍କୁ ଅସହାୟ ଓ ଦୁର୍ବଳ କରିଦିଏ । ଅପୂର୍ବା ଭାବେ ମୁଁ ବନ୍ଧ୍ୟା ।

ତେଣୁ ମୁଁ ମାଆ ହେଇପାରୁନି । ତା'ର ସ୍ୱାମୀ ସୁଧୀର ଭାବେ, ମୁଁ ନପୁଂସକ ବୋଧେ । ତେଣୁ ମୁଁ ବାପ ହେଇ ପାରୁନି । ଭାଗ୍ୟର ଅପରାଧକୁ ସଜେଇ ଧରି ଦୁହେଁ ଆହା ଆହା ଛାତିରେ ସମୟ ମୁନରେ ବିଦ୍ଧ ହେଇ ଚାଲିଛନ୍ତି । ଚିନ୍ତା ଓ କଳ୍ପନାର ଫଗୁଣି ହାଓ୍ୱାରେ ଆଖିପତା ମୁଦିହେଇ ଆସୁଥିଲା ଅପୂର୍ବାର । ହାତରେ ଧରିଥିବା ଝାଡୁଟି ତା ଛାତି ଉପରେ ଆଶ୍ରୟ ନେଇ ସାରିଥିଲା । ସେ ସଂପର୍କରେ ଅପୂର୍ବା ସଂପୂର୍ଣ୍ଣ ଅଜ୍ଞ ହେଇ ଯାଇଥିଲା । କି ସମ୍ମୋହନ, କି ବିଚିତ୍ର ଯେ ଦୁଃଖର କଡ଼େଇରେ ବି ମଣିଷ ଆତ୍ମମଗ୍ନ ହୋଇପାରେ ।

ଧର, କୌଣସି ଏକ ବେପରୁଆ ଦ୍ୱିପହରେ ବିକାଶ ସହ ମୁଁ ରତିମଗ୍ନ ହେଲି । ସଞ୍ଜ ଛଅରେ ସୁଧୀର ଆସିଲା ବେଳକୁ ମୁଁ କେମିତି ହେଉଥିବି ? ନା, ମୁଁ କିଛି ହେଉ ନଥିବି । ସ୍ୱାଭାବିକ୍ ଭାବରେ ହିଁ ଥିବି । କିନ୍ତୁ ସେଇ ସ୍ୱାଭାବିକତା ଗୋଟେ ଛଳନା ହୋଇ ଯାଇଥିବ, ନୁହେଁ ? ଆଖି ଛକ୍ ପକ୍, ଛାତି ଅଠା ଅଠା, କଥାବାର୍ତ୍ତା ଖୁବ୍ ଧୀର ଓ ସଂଯତ, ପ୍ରତି ମୁହୂର୍ତ୍ତରେ ସୁଧୀର ପ୍ରତି ବିଶ୍ୱସ୍ତ ଓ ଅଧୀନସ୍ଥ ହେଉଥିବାର ହାବଭାବ । ସେ ପା...ଉଚ୍ଚାରଣ କରୁ କରୁ, 'ଦଉଚି ବାବା' ବୋଲି କହି ତରତରରେ ପାଣି ଗ୍ଲାସେ ଆଣି ବଢ଼ାଇ ଦେଉଥିବି । ହୁଏତ ସେ କହିବ ପାଣି ନୁହଁ ପାନ । ମୁଁ ଇଚ୍ଛାକୃତ ହସରୁ ଖିଲିଏ କଳରେ ଯାକି' ଦଉଚି ବୋଲି କହିବି । ପାନ ଆଣି ଦେବି । ସୁଧୀର ତାପରେ ମାର୍କେଟ୍ ଯିବ । ସେ ଫେରିଲା ବେଳକୁ ମୁଁ ମୁଣ୍ଡ କୁଣ୍ଡାଇ ଖୋସା କରିଥିବି । ପାଦରେ ଅଳତା ଲଗାଇ ସାରିଥିବି । ଆକର୍ଷିଲା ଭଳି ଶାଢ଼ି, ବ୍ଲାଉଜ ପିନ୍ଧି ସାରିଥିବି । ଆଖିରେ କଜ୍ଜଳ ନାଇ ସାରିଥିବି । ମୁଁ ପରା ମାଆ ହେବାକୁ ଯାଉଚି ! ସୁଧୀର ମୋତେ ଦେଖି ଧାଏଁ କିନା ଚମକିଯିବ । ଆଖିରେ ତୁହାକୁ ତୁହା ଇଚ୍ଛାର ଆଗ୍ନେୟଗିରି ଉଦ୍‌ଗୀରଣ ହେଇ ଉଠୁଥିବ । ସେ କହିବ ଜଲ୍‌ଦି ବାଢ଼, ଭୋକ ।

ହଠାତ୍ ଅପୂର୍ବାର ସ୍ୱପ୍ନ ଓ କାମନାର ଗ୍ଲାସ ଝଣ ଝଣ ଭାଂଗିଗଲା । ଝାଡୁଟାକୁ ତା ଛାତି ଉପରେ ଦେଖି ସେ ଅପ୍ରସ୍ତୁତ ହୋଇ ପଡ଼ିଲା । ବାହାରେ ପାଣି ଟେପ୍ ନିକଟରେ ଛୋଟପୁଅଟି ଚିହିଡ଼ା ଛାଡ଼ି କାନ୍ଦି ଉଠିବାରୁ ସେ ସ୍ୱପ୍ନମୁକ୍ତ ହେଇପଡ଼ିଲା । ଝାଡୁଟାକୁ ଫୋପାଡ଼ି ଦେଇ ଅପୂର୍ବା ଉଠିଆସିଲା ବାହାରକୁ । ସରୋଜା ସାନପୁଅର ପେଣ୍ଟଟାକୁ ଧରିଛି ଏବଂ ପୁଅଟି କାନ୍ଦି ଚାଲିଛି । ଅପୂର୍ବାର ଆଖି କରୁଣ ହେଇ ଆସିଲା । ସେ ପଚାରିଲା : କ'ଣ ହେଲା ଯେ !

ଦେଖୁନାହାନ୍ତି; ପେଣ୍ଟ ପିନ୍ଧିବାକୁ ଆକୁ ଭାରି କଷ୍ଟ ! ପେଣ୍ଟ ପିନ୍ଧାଇ ଦେଇଥିଲି । ଏବେ କହିଲା ବୋଉ ଗଗ ଗଗ (ଝାଡ଼ା) ! ମଇଳା କରିଦେବ ବୋଲି ମୁଁ ପେଣ୍ଟଟାକୁ କାଢ଼ିଦେଲି । ଏତେ ଚାଲାକ୍, ଝାଡ଼ା ନା ଫାଡ଼ା ! ସବୁ ଦିନ ଏମିତି ବାହ୍ଗୁରୁସି କାଢୁଛି । ପେଣ୍ଟ ନ ପିନ୍ଧିବାର ଫନ୍ଦି ! ସରୋଜା ଉତ୍ତର ଦେଲା । ବିରକ୍ତି ଗହ ଗହ ମୁହଁରେ ।

ଅପୂର୍ବା ପୁଅ ଆଡ଼କୁ ଅନାଇ ଏକପ୍ରକାର ବିହ୍ୱଳ ହେଇ ଉଠିଲା । ଏବଂ ସବୁ ମୁସ୍କାନ୍‌ଟେ ଦେଇ ଘର ଭିତରକୁ ଚାଲିଗଲା । ବିଛଣା ଉପରେ ଚିତ୍ ହେଇ ପଡ଼ିଗଲା । ସେ ମାଆ ହେଇପାରିନି । ପାରୁନି । ଖାଲି ସେତିକି ନୁହେଁ । ନିଜକୁ ନାରୀ, ଜଣଙ୍କର ସ୍ତ୍ରୀ ବୋଲି ଭାବିବା ସଙ୍ଗେ ସଙ୍ଗେ ମୁଁ ଗୋଟେ ବାଂଝ, ମୁଁ ଗୋଟେ ଅପୁତ୍ରିକ, ଏଭଳି ଭାବିବାକୁ ପଡୁଛି ତାକୁ ବିଭିନ୍ନ କାର୍ଯ୍ୟରେ, ବିଭିନ୍ନ ପରିବେଶରେ । ନହେଲେ କାଳେ କିଏ ଭାବିଦବ । କିଏ କ'ଣ କହିଦବ ! ତିନିଦିନ ତଳେ ସେପାଖ ଘର ପାତ୍ର ବାବୁଙ୍କ ଘରକୁ ଯାଉଯାଉ ସେ ଦମ୍‌କିନା ଛିଡ଼ା ହେଇଗଲା । ପାତ୍ରବାବୁ କହୁଛନ୍ତି : ଅନୁକୂଳ କରି ବାହାରିଛି ତ ସୁଧୀର ବାବୁଙ୍କ ସ୍ତ୍ରୀ... ! ସେଠୁ ପାତ୍ରବାବୁଙ୍କ ସ୍ତ୍ରୀ ଯାହାଙ୍କୁ ଅପୂର୍ବା ସବୁଠୁ ନିଜର, ଆପଣାର ବୋଲି ଭାବେ, ସେ କହୁଛନ୍ତି- ଯାହାହେଲେ ଅପୁତ୍ରିକ ପା'- । ଅପୂର୍ବା ପଛେଇ ପଛେଇ ସେଦିନ ଫେରିଆସିଥିଲା । ସେ ଦିନଠୁ କାହାରିକୁ ଲୁଗାପଟା ପିନ୍ଧି ବାହାରକୁ ବାହାରିବା ଦେଖିଲେ ଅପୂର୍ବା ଘର ଭିତରକୁ, ନହେଲେ ଗାଧୁଆ ଘର ଭିତରକୁ ପଶିଯାଏ । ଗତକାଲି ଉପର ଓଳି ଅପୂର୍ବା, ସରୋଜା, ବନ୍ଦିତା ଦାଣ୍ଡପିଣ୍ଡା ଉପରେ ବସି ହାଓ୍ୱା ଖାଉଥିଲେ ଏବଂ ବିଭିନ୍ନ ଗପରୋଳରେ ଭାସିଯାଇଥିଲାବେଳେ କୁନିପୁଅ ଘରଆଡୁ ଧାଇଁ ଧାଇଁ ଗଲା ଏବଂ ସିଧା ଅପୂର୍ବା ପାଖରେ ହାଜର ହେଇ ତା କୋଳରେ ବସିବା ପୂର୍ବରୁ ଅପୂର୍ବା କୁନିପୁଅ ଦେହରେ ହାତ ବି ନ ଲଗାଇ ସରୋଜା ଆଡ଼କୁ ଆଙ୍ଗୁଠି ଦେଖାଇ କହିଲା ହେଇ ବୋଉ ହେଇ, ଯା ! ଯଦିଓ କୁନିପୁଅକୁ କୋଳେଇ ନବାର ଆବେଗ ପାଖୁଡ଼ା ମେଲି ହେଇଯାଇଥିଲା । କାଳେ ସରୋଜ ଭାବିବ, ଅପୂର୍ବା ଛୁଆଙ୍କର ଡାଆଣୀ ବୋଲି, ଅନ୍ତତଃ ସରୋଜା ସେତକ ଭାବିବାକୁ ସୁଯୋଗ ହିଁ ନପାଉ ।

ସରୋଜା ପାଖରୁ କୁନିପୁଅ ଯେତେବେଳେ ମାଡ଼ଖାଇ କାନ୍ଦିଉଠେ ସେତେବେଳେ ଅପୂର୍ବା ଛାତି ଭିତରେ ଆବେଗଟି ପହ୍ନେଇପଡ଼େ । ଦୂରରୁ ନିଜ ବାଛୁରୀର ହଂବାରଡ଼ି ଶୁଣି ଗୋଠରେ ଥିବା ଗାଈ ଚଙ୍ଗ୍ ଚଙ୍ଗ୍ ହେଲାଭଳି ଅପୂର୍ବାର ପାଦ ମୁହଁ ଚଙ୍ଗ୍ ଚଙ୍ଗ୍ ହେଇଉଠେ । କିନ୍ତୁ ଅସ୍ଥିରତାର ହାବଭାବ ନିମିଷେ ଉଭେଇ ଯାଏ ଯେତେବେଳେ ସେଇ ମୁହୂର୍ତ୍ତରେ ସେ ଆବିଷ୍କାର କରେ ସୁଧୀର ତାକୁ ପ୍ରଶ୍ନିଳ ଆଖିରେ ଚାହିଁ ରହିଛି । ପିତା ହେବାର ଶକ୍ତି ମୋର ନାହିଁ ବୋଲି ତୁମର କ'ଣ ଦୃଢ଼ ଧାରଣା ହୋଇଯାଇଛି ଯେ ପଡ଼ିଶାଘରର ପୁଅକୁ ନିଜ ଜନ୍ମକଲା ପୁଅ ଭଳି ସ୍ନେହୁଛ ! ଏଭଳି ପ୍ରଶ୍ନ ଓ ଛଳ ଆଖି ସାମ୍ନାରେ ଅପୂର୍ବା କାକୁସ୍ଥ ହୋଇପଡ଼େ !

ଗତ ଗୁରୁବାର ଦିନ ଅପୂର୍ବା ସୁଧୀର ସହ ମାର୍କେଟିଂ କରିବାକୁ ଯାଇଥିଲା । ଫ୍ୟାନ୍‌ସି କର୍ଣ୍ଣରରେ କିଛି କସ୍‌ମେଟିକ୍‌ସ କିଣି ସାରିଲା ପରେ ଅପୂର୍ବାର ଆଖି ଯେତେବେଳେ ଗୋଟେ ରବର ଖେଳନା ଉପରେ ପଡ଼ିଲା, ସେ ଚଟାଙ୍ଗ୍‌କିନା କହିଉଠିଲା-ଆମ କୁନିପୁଅ ପାଇଁ ଏ ଖେଳନାଟି ନେବା, ଭାରି ଭଲ ହେଇଚି । ସୁଧୀର ଅପୂର୍ବାର କଥାରେ ଏକବାରେ ବୋକା ପାଲଟି ଯାଇଥିଲା । ପରେ ପରେ ପରିବେଶ

ଓ ପରିସ୍ଥିତିକୁ ସଜାଡ଼ି ନେବାକୁ ଯାଇ ଅପୂର୍ବା କହିଲା : ନା' ଥାଉ ! କିନ୍ତୁ ଗୋଟେ ଦୀର୍ଘଶ୍ୱାସର ଲମ୍ବା ସୁଅରେ ସୁଧୀର ଦଶ ଟଙ୍କିଆ ନୋଟ୍‌ଟେ ସେଲ୍‌ସମ୍ୟାନ୍ ଆଡ଼କୁ ବଢ଼ାଇ ଦେଇ କହିଲା କଣ୍ଢେଇ ପଇସାଟା ନିଅ !

ବଜାର କରିସାରି ଅପୂର୍ବା ଓ ସୁଧୀର ଗୋଟେ ରିକ୍‌ସାରେ ଘରକୁ ଫେରୁଥିଲେ । ରିକ୍‌ସା ଉପରେ ଉଭୟ ଚୁପ୍ ଚାପ୍ । ନୀରବତାର ବାମ୍ପରେ ଦି ଜଣଯାକ ସିଝୁଛନ୍ତି । ଖେଳନାଟି ହାତରେ ଧରିଥିଲା ଅପୂର୍ବା । କ'ଣ ମନେ ମନେ ସ୍ଥିର କଲା କେଜାଣି ସୁଧୀର ଯେତେବେଳେ ବାହାର ଆଡ଼କୁ ଚାହିଁଲା ଅନ୍ୟ ମନସ୍କରେ, ସେହି ସୁଯୋଗରେ ଅପୂର୍ବା କଣ୍ଢେଇଟିକୁ ହାତରୁ ରିକ୍‌ସା ତଳକୁ ଖସାଇଦେଲା । ସେ ଆଶ୍ୱସ୍ତ ହେଲା ଯେ ତା ମନରୁ, ସୁଧୀରର ମୁଣ୍ଡରୁ ଏକ ବଡ଼ ବୋଝ ଓହ୍ଲେଇ ଗଲା, ଯା ! ସୁଧୀର ସାମ୍ନାରେ ଯେତେ ଯାଏ କଣ୍ଢେଇଟି ପଡୁଥିବ, ସେ ଯାଏ ଏକ ମାନସ ଝଡ଼ ଓ ଦ୍ୱନ୍ଦ୍ୱରେ ଉଭୟଙ୍କର ମୁହୂର୍ତ୍ତ ସବୁ ବଳି ପଡୁଥିବ ! କିନ୍ତୁ କୁନି ପୁଅ ଅପୂର୍ବାର ଛାତି ଭିତରେ ଏଭଳି ଏକ କୋଠରିରେ ସ୍ଥାନ ପାତିଛି, ଯାହା ଅବଚେତନର ପର୍ଦ୍ଦାକୁ ବି ଫୁଟି ଦିଶୁଚି । ଏଭଳି ଧାରଣାରୁ କ'ଣ ସୁଧୀର ମୁକ୍ତି ପାଇଗଲା ? ସୁଧୀର କ'ଣ ଏଡ଼େ ବୋକା ? ବସାଠି ରିକ୍‌ସାରୁ ଦୁହେଁ ଓହ୍ଲେଇରେ । ଅପୂର୍ବା ହାତରେ, କି ରିକ୍‌ସା ଉପରେ ଖେଳନାଟି ଦେଖିବାକୁ ନପାଇ ବି ସୁଧୀର ଅପୂର୍ବାକୁ ଖେଳନାଟି ସମ୍ପର୍କରେ କିଛି ପ୍ରଶ୍ନ କରି ନଥିଲା କି ଅପୂର୍ବା ବି ସେ ସମ୍ପର୍କରେ କୌଣସି ଆଗତୁରା କୈଫିୟତ୍ ଦେଇ ନଥିଲା । ଖେଳନାଟି କୁଆଡ଼େ ଗଲା, କ'ଣ ହେଲା, ଏ ପ୍ରଶ୍ନ, ଏ ପ୍ରସଙ୍ଗଟି ରହସ୍ୟମୟ ହୋଇ ରହିଗଲା । କାରଣ ସୁଧୀର ସେ ସମ୍ପର୍କରେ କିଛି ଜାଣିବାର ଆଗ୍ରହ ପ୍ରକାଶ କରିନାହିଁ ଯଦିଓ ମନ ଭିତରେ ତା'ର ସେ ପ୍ରସଙ୍ଗଟି ସବୁବେଳେ ଗୁଡ଼େଇ ତୁଡ଼େଇ ହେଉଚି । ସେଦିନ ସତୁରି ପଇସାର କ୍ଲିପ୍ ଦୁଇଟି ହଜିଗଲା ବୋଲି ସୁଧୀର ଅଧ ଘଣ୍ଟାଏ ଗୁରୁଗୁରୁ ହୋଇଥିଲା, ଅଥଚ ଦଶଟଙ୍କାର ଖେଳନାଟେ କୁଆଡ଼େ ଗଲା ବୋଲି ପଦେ ପ୍ରଶ୍ନ ହିଁ ନାହିଁ ! ହୁଏତ ଏ ପ୍ରସଙ୍ଗଟି ଏତେ ପ୍ରତିକ୍ରିୟା ସୃଷ୍ଟି କରିଛି ଯେ ସେ ସଂପର୍କରେ ପ୍ରଶ୍ନ କରିବା, ବା ବିରକ୍ତି ହେବାଠୁ ନୀରବ ରହିବା ଶ୍ରେୟସ୍କର ମନେ କରିଛନ୍ତି ଉଭୟ ।

ବିଛଣା ଉପରେ ଖାସ୍ ସେମିତି ପଡ଼ି ରହିଲା ଅପୂର୍ବା । କୁନିପୁଅ ସହ ତା'ର ସଂପର୍କ ଅନ୍ୟସବୁ ସଂପର୍କ ଗୁଡ଼ିକୁ କୁହେଳିକା କରି ରଖୁଚି, ଯାହାପାଇଁ ସେ ଏକମାତ୍ର ହିଁ ଉତ୍ତରଦାୟୀ । ଏଣୁ ଶୀଘ୍ର ଯେନତେନ ପ୍ରକାରେ ସେ ମାଆ ହେଇଯିବା ଜରୁରୀ, ଏକପ୍ରକାର ମୁକ୍ତି । କିନ୍ତୁ କେମିତି ଯେ ! ଧର୍ମଗ୍ରନ୍ଥରେ ପ୍ରବର୍ତ୍ତିତ ସମସ୍ତ ପ୍ରକାର ଚେଷ୍ଟା, ଚିକିତ୍ସା, ଦାନ, ଧର୍ମ, ତୀର୍ଥ ପରେ ପୁତ୍ର ନିମିତ୍ତ ପରପୁରୁଷ ସହ କାମକ୍ରୀଡ଼ାକୁ ବି ସୁପାରିଶ୍ କରାଯାଇଛି । କିନ୍ତୁ ସ୍ୱାମୀଠାରୁ ଅନୁମତି ଗ୍ରହଣ ପୂର୍ବକ ! ପରପୁରୁଷ ସହ ଯୌନଯାତ୍ରା ପାଇଁ ନାରୀ କ'ଣ ତା ସ୍ୱାମୀକୁ ପ୍ରଶ୍ନ କରିପାରିବ ? ସ୍ୱାମୀବୋଲି ବିଚାର ଥିଲେ ନାରୀ ପକ୍ଷେ ଏ ପ୍ରଶ୍ନ ପଚାରିବା କ'ଣ ସମ୍ଭବ ! ସେ ଆଉ ସ୍ତ୍ରୀ ହେଇ ରହିବଟି ? ହୁଏତ ପରପୁରୁଷରତ ହେବା ପାଇଁ କେତେକ ପୁରୁଷଙ୍କର ପରୋକ୍ଷ ବା ପ୍ରତ୍ୟକ୍ଷ

ଅସମର୍ଥନ ଥାଇ ନପାରେ ! କିନ୍ତୁ ସେ କ୍ଷେତ୍ରରେ ସ୍ୱାମୀ ଯେ ନପୁଂସକ ବୋଲି ନିଜର ପରାଜୟକୁ ସ୍ୱୀକାର କରି ନେଇଥାଏ । ଅପୂର୍ବା କ୍ଷେତ୍ରରେ ଏ ସବୁ ପ୍ରସଙ୍ଗ ଜିରୋଠୁ ବି କମ୍ । ଆଉ ସରୋଜାର ସ୍ୱାମୀ ବିକାଶ ଏଡ଼େ ମାରାତ୍ମକ ଭାବରେ ଭଦ୍ର ଯେ ଜାଗା ଅଜାଗାରୁ ଲୁଗା ଖସାଇଦେଇ ତା ସାମ୍ନାରେ ଯଦି ତୁମେ ଶୋଇରୁହ, ସେଇ ଗୋଟିଏ ରୁମ୍‌ରେ ତମେ ଦୁଇଜଣ ବ୍ୟତୀତ ଆଉ କେହି ନଥାନ୍ତି, ତା'ହେଲେ ଘଣ୍ଟା ଘଣ୍ଟା ଧରି ତୁମକୁ ଚାହିଁରହି, କାମନାରେ ଆଖିକୁ ରଂଗଡ଼ିଆ କରି ଉତ୍ତେଜନାରେ ସେ ସେଘରୁ ଫେରିଆସିବ ଏକ ଅତୃପ୍ତ ଦେହ ଓ ମନ ଧରି ସିନା, କିନ୍ତୁ ତୁମକୁ ଛୁଇଁବନି । ହୁଁ, ବିକାଶ ଗୋଟେ ଫୁଲ୍ ! ଅପୂର୍ବାର ମୁହଁରୁ ଭାରି କଷ୍ଟରେ ଏତକ ଉଚ୍ଚାରିତ ହେଇଗଲା । କିନ୍ତୁ ବିକାଶ ସହ ସନ୍ତାନ ନିମିତ୍ତ କାମ ଇଚ୍ଛିବା, ସେଇ ବିକାଶର ସନ୍ତାନକୁ ନିଜେ ମା'ର ସ୍ନେହ ଛାତି ବଢ଼ାଇବା ମଧ୍ୟରେ କ'ଣ ତଫାତ୍ ? ଅଛି ପାର୍ଥକ୍ୟ କିଛି ? ଏଭଳି ପ୍ରଶ୍ନ ଭିତରେ ସନ୍ତାନ ମୁଖ୍ୟ ନା ବିକାଶ ମୁଖ୍ୟ ? ଓଃ, କି ଜଟିଳ ! କି ବିଦ୍ଧକାରୀ ଏ ସଂପର୍କ ସବୁ ! ହୁଏତ ବିକାଶ ଏଠି ଜଣେ ପରପୁରୁଷ ଏବଂ ବିକାଶ ବ୍ୟତୀତ ଆଉ ଯେ କେହି ହେଲେ ବି ସମାନ୍, ଏଟା କ'ଣ ସତ ! ଅପୂର୍ବାର କପାଳ ରେଖା ସବୁ ଫୁଲି ଉଠିଲା । ସେ ମୁଣ୍ଡକୁ ଟିପିଧରି ଖୁବ୍ ଜୋର୍‌ରେ ଏକ ଦୀର୍ଘଶ୍ୱାସ ନେଲା । ଯେମିତି ଏସବୁ ପ୍ରଶ୍ନ ସମୂହର ସମାଧାନ ତାଠୁଁ ଦୂରେଇ ଦୂରେଇ ଯାଉଚି !

ତା ପରଦିନ୍ ସକାଳଯାଏ ଅପୂର୍ବା ଗୁଡ଼ାଏ ଚିନ୍ତାର ଦୋଛକିରେ ଯୁଦ୍ଧ କରି ରକ୍ତାକ୍ତ ହେଇଚି । ମୁଣ୍ଡ ଭାରି ଭାରି ! ଆଖି ଟଳମଳ ।

ଏଣେ କୁନିପୁଅ : ଗୋଟେ ସ୍ଥିତି

ଏଣେ ବିକାଶ : ଦ୍ୱିତୀୟ ସ୍ଥିତି

ଏଣେ ସୁଧୀର : ତୃତୀୟ ସ୍ଥିତି

ଏଣେ ସରୋଜା : ଚତୁର୍ଥ ସ୍ଥିତି

ଅପୂର୍ବାର ନିତ୍ୟ ପ୍ରକୃତ ବର୍ତ୍ତମାନର ହୃଦୟ ଓ ଆତ୍ମା ଏଇ ଚାରୋଟି ଚରିତ୍ର ସହ ନିବିଡ଼ ସଂପର୍କିତ ହେବାକୁ ବାଧ୍ୟ । ଏଇ ଚରିତ୍ର ଗୁଡ଼ିକର ଛାୟା ଭିତରୁ ତା'ର ମୁକ୍ତି ନାହିଁ ଅଥଚ ଏଇ ଚାରିଟିଯାକ ଚରିତ୍ର ତା ପାଇଁ କାହାରି ସହ କାହାରି ମେଳ ରଖି ନାହିଁ । ଗୋଟେ ସହଜ ସାବଲୀଳ ସୂତାରେ ଏ ଚାରୋଟି ଚରିତ୍ରଙ୍କୁ ସେ ନିର୍ଦ୍ଧାରଣ କରିପାରୁ ନାହିଁ । ବରଂ ଏକ ଅସ୍ୱସ୍ତିକର ସନ୍ଦେହାଚ୍ଛନ୍ନ ଐନ୍ଦ୍ରଜାଲିକତା ଭିତରେ ଯାହା ଉବୁଟୁବୁ ହେଉଛି । ଏହି ଚାରୋଟି ଯାକ ସ୍ଥିତି ପାଖରେ ସେ ବିପନ୍ନ !

ରବିବାର । ଅଫିସ୍ ଛୁଟି । ବିକାଶ ସକାଳୁ ସାରା ରବିବାରଟିକୁ ଅର୍ଥପୂର୍ଣ୍ଣ କରିବାକୁ ଯାଇ ତୂଳୀ ଓ ରଙ୍ଗ ଧରି ଗୋଟେ ଆର୍ଟ କରିବାର ଦୃଢ଼ ମନୋବୃତ୍ତି ନେଇ ବସିଛି । ଆଜି ରବିବାର ବୋଲି ସବୁ ଲୁଗାପଟା ସଫା କରିଦେବ ବୋଲି ସରୋଜାର ପ୍ରୋଗ୍ରାମ୍ । ସେ ତରତର । କୁନିପୁଅ ବି କାହିଁକି କେଜାଣି ଅଝଟ ଧରି ସକାଳୁ କାନ୍ଦିବାରେ ଲାଗିଛି । ଆଜି ଅଫିସ୍ ନାହିଁ, ପିଲାଟିକୁ ନିଅ, ସବୁ କାମ ସାରିଦିଏ । ଘରଧୁଆ, ଲୁଗାସଫା

ସବୁ । ସରୋଜା ବିକାଶ ଉଦ୍ଦେଶ୍ୟରେ ଏତକ କହିଲାରୁ ବିକାଶ ଟିକେ ବିରକ୍ତ ହେଲା : କୁନିପୁଅକୁ ଧରିବା କାମ ଆଜି ମୋ ଦ୍ୱାରା ଆଦୌ ସମ୍ଭବ ନୁହେଁ, ବୁଝିଲ ! ଆଜି ରବିବାର । ତୂଳୀ ଆଉ କାଳିରେ ମୋତେ ହଜିବାକୁ ଛାଡ଼ିଦିଅ !

: ବାସ୍, ଭଲ ହେଲା । ତମେ ତମ ତୂଳୀ, କାଳିରେ ବୁଡ଼ିଯାଅ, ମୁଁ ତ ପୁଣି ମୋ କାମ ସାରିବି । ଆଉ ଉପାୟ କ'ଣ ? ଯା କହି ସରୋଜା ରାଗ ଭରଭର ହେଇ ଗୋଟେ ଦଉଡ଼ି ଆଣି କୁନି ପୁଅର ପାଦକୁ ପଲଙ୍କ ଖୁରାରେ ବାନ୍ଧି ଦେଲା ଏବଂ ନିଜ କାମରେ ବାହାରିଗଲା । ବଡ଼ ଝିଅ ସକାଳୁ ଟିଉସନ୍ ପଢ଼ିବାକୁ ଚାଲିଗଲାଣି । ବନ୍ଧନରୁ ମୁକୁଳିବା ପାଇଁ କୁନି ପୁଅ ଟଣାଓଟରା ଆରମ୍ଭ କରିଦେଲା । ତା ସାଙ୍ଗକୁ ଉଃ ଆଃ ମଧ୍ୟ । କିନ୍ତୁ ସେ ଯେତେବେଳେ ନିଶ୍ଚୟ ହେଲା ଯେ ଏ ଶିକୁଳିରୁ ମୁକୁଳିବା ଲାଗି ତା'ର ଟଣା ଓଟରା ଶକ୍ତିଟି ବି ଯଥେଷ୍ଟ ନୁହେଁ, ସେତେବେଳେ ସେ ତା'ର ପାଶୁପତ ଅସ୍ତ୍ର ପ୍ରୟୋଗ କରିବା ଆରମ୍ଭ କଲା-କ୍ରନ୍ଦନ ! ଶିଶୁର କ୍ରନ୍ଦନ ଠୁଁ ବଳୀୟାନ୍ ଅସ୍ତ୍ର ପୃଥିବୀରେ ଆଉ କିଛି ନଥିଲା ବା ନାହିଁ ! ରାହା ଛାଡ଼ି କାନ୍ଦିଲା କୁନିପୁଅ ତୁହାକୁ ତୁହା । ବିକାଶ ସେତେବେଳକୁ ଆରଘରେ ତୂଳୀ ଓ କାଳି ଭିତରେ ବୁଡ଼ିଯିବ ବୁଡ଼ିଯିବ ହଉଚି । କୁନିପୁଅର କାନ୍ଦଣା ତାକୁ ଧକ୍କା ଦେଲା । ସରୋଜା ସେତେବେଳକୁ ଟେପ୍ ପାଖରେ ଲୁଗାରେ ସାବୁନ ଦେଉଛି । କୁନିପୁଅର କାନ୍ଦଣାରେ ସେ ଓଠକୁ ଚିପି ଧରିଲା । ବିକାଶ ଭାବୁଛି : ନିଜ ପୁଅର କାନ୍ଦଣାକୁ କେତେବେଳ ଯାଏ ମା' ସହ୍ୟ କରି ରହିବ ଯେ, ଆପେ ଧାଇଁ ଆସିବ ପୁଅ ପାଖକୁ ! ସରୋଜା ଭାବୁଛି : ସ୍ତ୍ରୀ ଉପରେ ଦାୟିତ୍ୱ ସବୁ ଲଦି ଦେଇ ସେଠି ତୂଳୀ ଧରି  ବସିଛ, ଏଣେ ପୁଅ କାନ୍ଦରେ ରାଜ୍ୟ କମ୍ପାଉଛି ! ଦେଖିବା ତୁମ ବାପପଣିଆ ! ସେଇମିତି କାନ୍ଦୁଥାଉ, କେତେ ସମୟ ଯାଏ ତମେ ତମ ପୁଅର କାନ୍ଦ ସହ୍ୟ କରିପାରୁଛ ଦେଖେଁ !

କୁନିପୁଅର କାନ୍ଦଣା ବଢ଼ିଚାଲିଥାଏ । ବିକାଶର ରାଗ ସରୋଜା ଉପରେ ବଢ଼ିଚାଲିଛି । ଏଣେ ସରୋଜା ବି ବିକାଶ ଉପରେ ରାଗରେ କଅଁ କଅଁ । ଉଭୟଙ୍କର ବଢ଼ନ୍ତା ରାଗକୁ ଆଶ୍ଚର୍ଯ୍ୟରେ ପରିଣତ କରିଦେଇ କୁନିପୁଅର କାନ୍ଦଣା ଯେତେବେଳେ ବନ୍ଦ ହେଇଗଲା, ସେତେବେଳେ ପାଣିଟେପ୍ ପାଖରେ ଲୁଗା, ସାବୁନ୍‌କୁ ଫିଙ୍ଗିଦେଇ ସରୋଜା କ'ଣ ହେଲା ମୋ ଛୁଆର କହି ଉଠିଆସିଲା । ତୂଳୀ ଓ କାଳିକୁ ରଖିଦେଇ ପୁଅର କ'ଣ ହେଲା ଯେ' ଭାବି ସାଁ କିନା ଉଠି ଆସିଲା ବିକାଶ । କିନ୍ତୁ ଉଭୟ ଥମ୍‌କିନା ଛିଡ଼ା ହୋଇପଡ଼ି ଦେଖିଛନ୍ତି ଅପୂର୍ବା କୁନିପୁଅ ଗୋଡ଼ରୁ ଦଉଡ଼ି ଫିଟାଇ ଦେଇ ତାକୁ କାନ୍ଧରେ ପକାଇଛି ଏବଂ ଏକ ସ୍ୱପ୍ନଛୁଆଁ ଆନନ୍ଦ ଭିତରେ ମଜ୍ଜି ଯାଇଛି । କୁନିପୁଅ ବି ଆନନ୍ଦ ଆବେଗରେ ଚହଲି ଉଠୁଛି । ତା ମୁହଁ ଓ ଆଖିରୁ ସ୍ପଷ୍ଟ ଉକୁଟି ଉଠୁଛି । 'ମାଆ ସେଣେ ଲୁଗା କାଚୁଛି, ବାପ ଏଣେ ଚିତ୍ର ଆଙ୍କୁଛି, ଏଠି ପୁଅର ଗୋଡ଼ ରସିରେ ବନ୍ଧା ହେଇଚି, ସେ କାନ୍ଦିକି ଘର ଫଟାଇଲାଣି । ହୁଁ, ଆଉ ଟିକେ ବଡ଼ ହେଲେ ଦଉଡ଼ିରେ ବାନ୍ଧିବା କାମ ତ ହେଇପାରିବନି, ଲୁହା ରଡ଼୍‌ରେ ଗୋଟେ

କଏଦୀଖାନା କରିବାକୁ ପଡ଼ିବ !'' ଏତକ କହି ଅପୂର୍ବା କୁନିପୁଅକୁ କାନ୍ଧରେ ପକାଇ ତା କ୍ୱାର୍ଟର ଆଡ଼କୁ ଆଗେଇ ଚାଲିଥିଲା । ଦୁଆର ମୁହଁରେ ସୁଧୀର ଛିଡ଼ା ହେଇ ଅନେଇଥିଲା ଆକାବାକା ହେଇ ଅପୂର୍ବାକୁ । ଅପୂର୍ବାର କାନ୍ଧରେ କୁନିପୁଅର ଶାନ୍ତ ଓ ସନ୍ତୋଷ ମୁହଁକୁ ଅନୁଭବ କରି ବିକାଶ ମୁହଁରେ ଉଇଁଆସୁଥିବା ଧୀରା ହସକୁ ଲକ୍ଷ୍ୟକରି ସରୋଜା ବିଦ୍ରୂପ କଲା : ଆହା କି ସୁନ୍ଦର ହସଟେ ଗୁମୁରୁଛିମ ! କେତେ ଗହୀରରେ ପାଣି ନା ମୁଁ କହୁଚି ବାବୁ ତୁଠରେ ଅଛନ୍ତି !

ସରୋଜାର ଏଇ ଆକ୍ଷେପ ବିକାଶକୁ ଲାଗିଥିଲା ଏକ ନିଷ୍ପାପ କପୋତ ଉଦ୍ଦେଶ୍ୟରେ ବ୍ୟାଧର ଶର ସନ୍ଧାନ ଭଳି !

ସୁଧୀରର ଚାହାଣୀରୁ ଅପୂର୍ବା ନିଜକୁ ଅପରାଧୀ ଅପରାଧୀ ମଣୁଥିଲା । ଏ ସମୟରେ ସରୋଜାର ଆକ୍ଷେପ ତାକୁ ଲାଗିଲା ବୋମା ପଡ଼ିଲା ଭଳି । ତା'ର କାନମୁଣ୍ଡା ଝାଁ ଝାଁ କରିଗଲା, ସେ ଯେମିତି ସ୍ଥବିର ପାଲଟିଗଲା । ତାର ହାତଗୋଡ଼ ବରଫ ହେଇ ଆସୁଥିଲା । କ୍ରମଶ ତା'ର ହାତ ହୁଗୁଳା ହେଇ ଆସିଲା ଏବଂ କୁନିପୁଅ ଧୀରେ ଧୀରେ ଖସରି ଆସିଲା ତା କୋଳରୁ ସରୋଜା ପାଖକୁ । ସେ ଝଡ଼ ବେଗରେ ଚାଲିଗଲା ତା ବେଡ୍‌ରୁମ୍‌କୁ । ରାଗରେ ଗୋଟାପଣି ରଙ୍ଗ ପଡ଼ିଗଲା । ବିଦ୍ରୋହର ସମସ୍ତ ପାଖୁଡ଼ା ଝରିପଡ଼ିଲା : ପୁଅବେଇ ବୋଲି ଏତେ ଗର୍ବ ! ''ମୁଁ ମାଆ ହେବି... ହେବି... ଅଲବତ୍... '' ଏବଂ ତା ଆଖିରୁ ଝରଝର ହେଇ ଲୁହ ବୋହି ଆସିଲା ।

ସେତେବେଳକୁ ଆମ୍ବଗଛର କୁଆ ବସାରୁ ଖଣ୍ଡିଉଡ଼ା ଦଉଥିବା କୋଇଲିଟେ କୁ କୁ କରି ଉଡ଼ିଯାଉଥିଲା ।

ସଂଜ ପରେ ପରେ ସୁଧୀର ମାର୍କେଟିଂ ସାରି ବସାକୁ ଫେରିଲାବେଳକୁ ଅପୂର୍ବା ମୁଣ୍ଡରେ ଖୋସା କରିସାରିଛି । ପାଦରେ ଅଳତା ଲଗାଇ ସାରିଛି । ଆକର୍ଷିଲା ଭଳି ଶାଢ଼ି ବ୍ଲାଉଜ୍ ପିନ୍ଧିସାରିଛି । ଆଖିରେ କଳା ନାଇ ସାରିଛି । ଆହା, ସୁଲୁସୁଲିଆ ପବନ ବୋହୁଅଛି । ଅପୂର୍ବାର ପାଦ ପାଉଁଜ ଝୁମୁ ଝୁମୁ ବାଜୁଅଛି । ଆକାଶରେ ଜହ୍ନ ଫାଜିଲାମି କରୁଅଛି । ସକାଳେ ଆସିଥିବା ସ୍କ୍ରିନ୍ ମ୍ୟାଗାଜିନ୍ ଭିତରୁ ନାୟିକାମାନେ ସଦ୍ୟ କୁଆଁରୀ ହେଇ ଢଳିଢଳି ଆସୁଛନ୍ତି । ନୂଆବୋହୂ ଭଳି ଆଜିର ରାତି ବଙ୍କେଇ ବଙ୍କେଇ ପାଦ ପକାଉଅଛି । ସେ ପରା ମାଆ ହେବାକୁ...



(ଗୋକର୍ଣ୍ଣିକା : ଅଗଷ୍ଟ ୮୫)

# ଆବିଷ୍କାର

ବାଇଚଢ଼େଇ ଏତେ ସୁନ୍ଦର ଭାବରେ, ଏତେ କୌଶଳରେ ତା ବସା ତିଆରି କରେ କେମିତି ? କେମିତି ମହୁମାଛି ମହୁଫେଣା, ଉଇହୁଙ୍କା ତିଆର କରେ ? କେମିତି ? ଏଭଳି ସୂକ୍ଷ୍ମତର, କଳାପୂର୍ଣ୍ଣ କାରିଗରୀ କ'ଣ ମଣିଷ କରିପାରିବ ? ବଂଶସୂତ୍ରରୁ କେଉଁ ସହସ୍ର ବର୍ଷ ତଳୁ ଏ ଯାବତ୍ ଏଭଳି ବସା ବାନ୍ଧି ଆସୁଥିବା ଏହି ଜୀବମାନଙ୍କର ଚେତନାରେ କ'ଣ କେବେ ଉତ୍ତରଣ ଘଟିନି ? ଢୁ ଢୁ ଖରାବେଳେ ତୋଟାର ତାଳଗଛମୂଳେ ବସି ଏସବୁ ପ୍ରଶ୍ନର ଜାଲରେ ଛନ୍ଦି ହେଇ ପଡୁଥିଲା ଗାର୍ଗୀ ଓ ପବନରେ ଦୋହଲୁଥିବା ବାଇଚଢ଼େଇର ବସାକୁ ମୁଗ୍ଧ ଆଖିରେ ଚାହିଁ ରହିଥିଲା । ଜେଜେମାର ବାରମ୍ବାର ଡାକ ତା କାନକୁ ଭେଦି ପାରୁ ନଥିଲା । ପରମୁହୂର୍ତ୍ତରେ ସେ ଗାର୍ଗୀର ହାତକୁ ମୁଠାଇ ପକାଇ କହିଲେ-ଖରାବେଳେ ଠିଆ ହେଇ ବି ସ୍ୱପ୍ନ ଦେଖୁଚୁ ? ଚମକିଲା ଗାର୍ଗୀ । ଜେଜେମା' ଗାର୍ଗୀକୁ ଟାଣି ଟାଣି ନେଇଯାଇଥିଲେ ତା' ଶୋଇବା ଘର ଭିତରକୁ ଏବଂ କହିଥିଲେ ଖରାବେଳଟାରେ ଟିକେ ଶୋଇପଡ଼ିଲେ ସ୍ୱାସ୍ଥ୍ୟ ଭଲ ରହିବ ! ଜେଜେମା'ର କଥାକୁ ନୀରବରେ ମାନିନେଇଥିଲା ଗାର୍ଗୀ ! ଫ୍ୟାନ୍‌ର ସ୍ପିଡ୍ ବଢ଼ାଇ ଦେଇ ପଲଙ୍କ ଉପରେ ଗଡ଼ି ଯାଇଥିଲା । ଅନୁଭୂତିର ଅଗନାଅଗନି ବଣ ଭିତରକୁ ପଶିଯାଇଥିଲା ସେ ।

ନଗର ଜୀବନରୁ ଗାଁକୁ ଆସିବା ତା'ର ପାଞ୍ଚଦିନ ହେଲାଣି । ଏଇ ପାଞ୍ଚଦିନର ଜୀବନ ତାକୁ କେତେ ସ୍ୱର୍ଗୀୟ ଲାଗୁଚି ସତେ ! ଗାଁର କୋଡ଼ିଏ ଏକର ପାଖାପାଖି ଜମି, ଏତେବଡ଼ ଫୁଲ ଫଳ ତୋଟାକୁ ଛାଡ଼ି ବାପା କାହିଁକି ସହରରେ ଫ୍ୟାକ୍ଟ୍ରି କଲେ, ଦାଦା କାହିଁକି ରାଜନୀତି କଲେ ସେ ବୁଝିପାରେନି । ଏବଂ ପୁଅ ବୋହୂ ନାତି ନାତୁଣୀଙ୍କୁ ଛାଡ଼ି ଜେଜେମା' ଏକୁଟିଆ କାହିଁକି ଗାଁରେ ରହୁଛନ୍ତି, ତା'ର ମର୍ମ ସେ ହେଜି ପାରୁନି । ସତରେ ଗାଁରେ ସଞ୍ଜ ହେଲେ ଶଙ୍ଖଧ୍ୱନି, ବଡ଼ି ଭୋଅରୁ ପାଖ ମସ୍‌ଜିଦ୍‌ରୁ 'ଆଲ୍ଲାହୋ

ଅକ୍‌ବର' ସ୍ୱର ଶୁଣିଲେ ସେ କେମିତି ପୁଲକିତ ହୋଇଉଠେ । ଜଞ୍ଜାଳ ଓ ଚିନ୍ତାର ଉତ୍‌କଟ ପୀଡ଼ାରୁ ମୁକ୍ତି ପାଇ ଏକ ଅନିନ୍ଦ୍ୟ ପରିବେଶ ସହ ସେ ସଂଯୁକ୍ତ ହୋଇଯାଏ । ଏଭଳି ଭାବରେ ଉପଲବ୍‌ଧି ନଥିଲେ ପ୍ରକୃତରେ ଜୀବନଟା କର୍କଶ, ଯାନ୍ତ୍ରିକ ହୋଇଯାନ୍ତା, ନୁହେଁ !

ଜେଜେମା' ଧୀରେ ପଶି ଆସିଲେ ଘରକୁ । ଧଳା ଫର ଫର ଶାଢ଼ି, ହସ ହସ ମୁହଁ, ମଙ୍ଗଳମୟୀ ଆଖିର ଏହି ଜେଜେମା'ଙ୍କୁ ଦେଖିଲେ ଗାର୍ଗୀ ଚହଟି ଉଠେ । ତାକୁ ଲାଗେ ଅନ୍ତରଙ୍ଗ । ଅଥଚ ତା ମା'ର ଅସ୍ତିତ୍ୱକୁ ମନେପକାଇବାକୁ ଚାହିଁଲେ ବି ତାଙ୍କ ଚେହେରାର ପୂର୍ଣ୍ଣଛାପ କେବେ ସେ ସାମ୍ନାକୁ ଆଣିପାରେନି । ଛାପ ସୃଷ୍ଟି କଲାଭଳି କୌଣସି ବିଶେଷତ୍ୱ ହୁଏତ ତା' ମା'ର ନାହିଁ । ସକାଳୁ ସକାଳୁ ମାଆ ବାହାରି ଯାଆନ୍ତି ବହଳ ମେକ୍‌ଅପ୍‌ରେ ଏବଂ ଫେରନ୍ତି ରାତି ବାର ବା ଗୋଟାଏରେ କେଉଁ ପାର୍ଟି, ପିକ୍‌ନିକ୍‌ରୁ ଅବା କେଉଁ ମିଟିଂରୁ, ତା'ର ହିସାବ ସେ ଜାଣେନା । ଆସିଲାବେଳେ ଆଖି ଥାଏ ରଙ୍ଗ ରଙ୍ଗ ! ଏମିତି ବି ହେଇଚି ସେ ତିନି ଚାରିଦିନ ଧରି ତା ମାଆକୁ ଦେଖିବାକୁ ପାଏନି, ସେଇ ଗୋଟିଏ ଘରେ ରହି ବି । ମାଆ କେତେବେଳେ ଯାଆନ୍ତି, କେତେବେଳେ ଫେରନ୍ତି, ଜାଣନ୍ତି କେବଳ ୱାଚ୍‌ମେନ୍, ଖାନ୍‌ସାମା, ଆୟା, ଡ୍ରାଇଭର, ମାଳୀ, ଚାକର, ଓ ଚାକରାଣୀ ଇତ୍ୟାଦି, ଅଥଚ ପୁଅ ରୋହିତ ଓ ଝିଅ ଗାର୍ଗୀ ଜାଣନ୍ତିନି ! ବାପା ତ ବ୍ୟବସାୟ କାମରେ ଆଜି ଦିଲ୍ଲୀ ତ କାଲି ବମ୍ବେ, ତା ପରଦିନ ଲଣ୍ଡନ ଇତ୍ୟାଦି ଇତ୍ୟାଦି । ମାସେ ଦି'ମାସେ ଥରେ ସାକ୍ଷାତ ହେବା କଷ୍ଟକର । ବେଳେବେଳେ ଫୋନ୍‌ରେ ଦୂରରୁ ବାପାଙ୍କ କଣ୍ଠସ୍ୱର (ଯାହା କେତେବେଳେ ବି ଅଚିହ୍ନା ଅଚିହ୍ନା) ଆସେ -'ଗାର୍ଗୀ ! ମୁଁ ତମମାନଙ୍କ ମେଳରେ ବେଶି ସମୟ ଦେଇ ପାରୁନି ବୋଲି ଭାରି ଦୁଃଖ ଲାଗୁଚି । ଯା' ହଉ, ମେନେଜ୍ କରିନେବ !'' ଆଉ ବଡ଼ ଭାଇ ରୋହିତ ! ଚବିଶ ଘଣ୍ଟା ଡ୍ରିଂକ କରୁଚି, ରମି ଖେଳୁଚି, ଝିଅମାନଙ୍କ ସହ ଡେଟିଂ କରୁଚି ।

ବହୁବାର ଗାର୍ଗୀ ରୋହିତକୁ ତା ନିଜ ସମ୍ପର୍କରେ ସଚେତନ କରାଇ ଦେଇଛି, ଜୀବନ ସପକ୍ଷରେ ଯୁକ୍ତି ବାଢ଼ିଛି । ରୋହିତ କିନ୍ତୁ ରୋକ୍‌ଠୋକ୍ ଜବାବ ଦେଇଚି- ''ଆମର ସୋସାଇଟି ଆମ ପାଇଁ ଏୟା ରଖିଚି, ବାସ୍...''

-''ତା ବାହାରେ ବି ଜୀବନ ଅଛି, ଥରେ ଏ ଜୀବନର ବାହାରକୁ ଗୋଡ଼ କାଢ଼ି ଦେଖ୍ ତ !'' -ଗାର୍ଗୀ ବୁଝାଇଛି ।

:''ୟା ଭିତରେ ଯଦି ବଞ୍ଚି ହଉଚି, କିଛି ଆନନ୍ଦ ମିଳି ଯାଉଚି, ତା'ହେଲେ ଏ ଜୀବନର ବାହାରକୁ ଚାହିଁବି କାହିଁକି ଗାର୍ଗୀ !''

ଗାର୍ଗୀ ଆଉ କିଛି ପ୍ରତ୍ୟୁତ୍ତର ଦେଇ ନଥିଲା । ସେ ଜାଣିଥିଲା ବାହାରର ପବନ ଥରେ ଦେହରେ ନ ବାଜିଲାଯାଏ ବା ଘର ଭିତର ପବନ ଶେଷ ନ ହେବାଯାଏ କେହି

ବାହାରର ଜୀବନ ପାଇଁ ବ୍ୟାକୁଳ ହୁଏ ନାହିଁ ! ଅତଏବ ରୋହିତ ନିଜ ରୁଟିନ୍ ଭିତରେ ବନ୍ଦୀ ହେଇ ରହିଛି ।

କିନ୍ତୁ ଗାର୍ଗୀର କ'ଣ ହେଲା ଯେ ସେ ସମସ୍ତ ଆଧୁନିକ ସୁବିଧା, ସୁଯୋଗକୁ ପଛରେ ପକାଇ ଏବେ ପଳାଇ ଆସିଛି ଗାଁକୁ ! ଫିଜିକ୍ସ୍‌ର ଛାତ୍ରୀ ହିସାବରେ ବିଶ୍ୱବିଦ୍ୟାଳୟରେ ତା ସୁନାମ ଥିଲା । ଭବିଷ୍ୟତରେ ଜଣେ ବୈଜ୍ଞାନିକା ହେବାର ଯଥେଷ୍ଟ ସମ୍ଭାବନା । ତା'ର କଳ୍ପନାଶକ୍ତି ବି ପ୍ରଚଣ୍ଡ । ୟୁନିଭରସିଟି ଲାଇବ୍ରେରୀରେ ଗୋଟେ କୋଣରେ ନୀରବ ବସି ହଠାତ୍ ଦିନେ ଗାର୍ଗୀ କହିଲା- 'ସବୁ ବସ୍ତୁ ପରି ଆଲୋକର ମଧ୍ୟ ଓଜନ ଅଛି ।' ଆଉଥରେ କହିଲା- 'ପୃଥିବୀରେ ଶବ୍ଦର କ୍ଷୟ ହୁଏ ନାହିଁ । ଗଚ୍ଛିତ ହେଇ ରହେ । ଦିନେ ଏଭଳି ଶକ୍ତିଶାଳୀ ଯନ୍ତ୍ର ଉଦ୍ଭାବିତ ହେବ ଯେ ଆମେ ଗାନ୍ଧି, ଯିଶୁ, ବୁଦ୍ଧଙ୍କର ମୁହଁର କଥାକୁ ବାୟୁମଣ୍ଡଳରୁ ଉଦ୍ଧାର କରି କାନରେ ଶୁଣି ପାରିବା ।' ଆଉ ଥରେ କହିଲା -କେତକ ପକ୍ଷୀ କଥାବାର୍ତ୍ତା ହୁଅନ୍ତି, ସେମାନଙ୍କର ନିଜସ୍ୱ ଭାଷା ଅଛି । କୈକେୟୀ ପଶୁପକ୍ଷୀମାନଙ୍କର ଭାଷା ବୁଝି ପାରୁଥିଲେ । ମଣିଷ ଦିନେ ସେହି ପକ୍ଷୀମାନଙ୍କର ଭାଷା ବୁଝିପାରିବ । କେତକ ପକ୍ଷୀ ଅଛନ୍ତି ଯେଉଁମାନେ ଆଗତ ଶହେ ବର୍ଷର କମ୍ପନକୁ ଅନୁଭବ କରିପାରନ୍ତି, ସେମାନଙ୍କୁ ବି ମଣିଷ ଜାଣିପାରିବ ।'' ଏଭଳି ଚିନ୍ତାଶୀଳା ଗାର୍ଗୀର କ'ଣ ହେଲା ଯେ ସେ ଏବେ ଗାଁକୁ ପଳାଇ ଆସିଛି ! କ'ଣ ହେଲା ତା'ର ? ତା'ର କଳ୍ପନା ଶକ୍ତି ବିଜ୍ଞାନର ଉଦ୍ଭାବନ ଓ ଆବିଷ୍କାର କ୍ଷେତ୍ରରେ ତ ତାକୁ ବହୁ ଆଗକୁ ନେଇଯାଇ ପାରିଥାନ୍ତା, ବହୁବିଧ ପରୀକ୍ଷାର ସୁଯୋଗ ସୁବିଧା ଥିବା ସେ ସହରରେ । କିନ୍ତୁ ସେ କାହିଁକି ଚାଲିଆସିଛି ଗାଁକୁ ?

ନିଜର ବାପା,ମା, ଭାଇ ଦାଦା ଭଳିଆ ଆତ୍ମୀୟ ମଣିଷମାନଙ୍କୁ ନେଇ ସେ ଜିଇଁଥିବା ଘରଟି ତାକୁ ଲାଗିଛି ଏକ ମଶାଣି ଭଳି । ଏଭଳି ଏକ ମର୍ମାନ୍ତିକ ପରିବେଶରୁ ମୁକ୍ତି ପାଇଁ ପଳାଇ ଆସିଚି ଗାଁକୁ ! କାହିଁ ମଣିଷର ଜ୍ଞାନ, ବୁଦ୍ଧି, କୌଶଳ, ଅର୍ଥ ଓ ବିଜ୍ଞାନ ପ୍ରଦତ୍ତ ସମସ୍ତ ସୁବିଧା ସୁଯୋଗ ତ ତାକୁ ସେ ସହରରେ ଅଟକାଇ ପାରିଲା ନାହିଁ । ହୃଦୟ, ଆତ୍ମା ଯାହା ଚାହୁଁଥିଲା ତାକୁ ପ୍ରଦାନ କରିପାରିଲା ନାହିଁ । ସେ ଅନୁଭବ କରିପାରିଥିଲା ଆଉ କିଛିଦିନ ସେଠାରେ ରହିଥିଲେ ହୁଏତ ସେ ପାଗଳୀ ପାଲଟି ଯାଇଥାଆନ୍ତା । ଗାର୍ଗୀ ଏବେ ଅନୁଭବ କରିଛି ମଣିଷର ରୁଚି, ସୌନ୍ଦର୍ଯ୍ୟ ଓ ସମ୍ପର୍କ ବ୍ୟତୀତ ଏସବୁ କେବଳ ମୂଲ୍ୟହୀନ ନୁହେଁ, ହଳାହଳ ମଧ୍ୟ । ଏକ ରୁଚିହୀନ, ଆନନ୍ଦବିହୀନ ପରିବେଶରେ ରହି ସେ କି ବା ଗବେଷଣା କରିପାରନ୍ତା ! ଇଟା କାଛର ଅଟ୍ଟାଳିକା ପରେ ଅଟ୍ଟାଳିକା ଗଢ଼ି ଚାଲିଛି ମଣିଷ । ସମଗ୍ର ଜୀବନ କାଳର ଅର୍ଦ୍ଧାଧିକ ଉପାର୍ଜନ ଓ ଜୀବନ କାଳର ଦୁଇ ତୃତୀୟାଂଶ ସମୟ କାହାରି କାହାରି ଘର କରିବାରେ କଟିଯାଇଚି, ଅଥଚ ସେଇ ମଣିଷର ତିନିଚତୁର୍ଥାଂଶ ସମୟ କଟୁଚି ପାର୍ଟି, ହୋଟେଲ,

ଲଜିଂରେ । କ'ଣ ପାଇଁ ? କ'ଣ ପାଇଁ ତା'ହେଲେ ମଣିଷ ଅଟ୍ଟାଳିକା ପରେ ଅଟ୍ଟାଳିକା ଗଢ଼ିଚାଲିଛି ? ଏକ ହୋଟେଲ ସଭ୍ୟତାରେ ଜିଇଁ ପାରିଲାନି ଗାର୍ଗୀ ।

ସେଦିନ ସକାଳୁ ସାରା ସହର ହୋ ହାଲ୍ଲା, ହାଉଯାଉ, ଆନନ୍ଦମୁଖର । ମହାତ୍ମା ଗାନ୍ଧିକୀ ଜୟ, ଭାରତ ବର୍ଷକୀ ଜୟ ଶବ୍ଦରେ କମ୍ପୁଚି ଚାରିଆଡ଼ । ମା ହଠାତ୍ ରୁମରୁ ବାହାରିଆସି ବାରଣ୍ଡାରେ ଛିଡ଼ା ହୋଇଥିବା ବାପାଙ୍କର ଜଣେ ସହକାରୀଙ୍କୁ ପଚାରିଲେ- ଏତେ ପାଟିତୁଣ୍ଡ ?

- ଆଜି ଅଗଷ୍ଟ ପନ୍ଦର !

- ସୋ ହ୍ୱାଟ୍ ? କ'ଣ ହେଲା ସେଥୁ ?

- ଭାରତର ସ୍ୱାଧୀନତା ଦିବସ...

- ଓଃ, ବୁଝିଲି । ତେବେ ଗୋଟେ ସ୍ୱାଧୀନ ଦେଶ ତା'ର ପରାଧୀନ ସମୟକୁ ସ୍ମରଣ କରି ଏତେ ହୋ ହାଲ୍ଲା କରିବ କାହିଁକି !

ବାପାଙ୍କ ସହକାରୀ ଜଣକ ନୀରବ ଥିଲେ । କିନ୍ତୁ ଗାର୍ଗୀ ରାଗରେ ପାଚିଯାଇଥିଲା । ସେ ଟିକେ କଡ଼ା ସ୍ୱରରେ ଉତ୍ତର ଦେଇଥିଲା-ମା, ଗୋଟେ ଦେଶ ତା'ର ଅତୀତକୁ ଭୁଲିଯିବା, ଜଣେ ମା' ତା'ର ଅତୀତକୁ ଅର୍ଥାତ୍ ତା'ର ସ୍ୱାମୀ, ପିଲାମାନଙ୍କୁ ଭୁଲିଯିବା ଭଳି !

ସେଇଠୁ ସେ ଘରେ ପ୍ରଳୟ ହେଇଯାଇଥିଲା । ମାଆ ରାଗରେ ଗାର୍ଗୀକୁ ଚଟକଣା ମାରିଥିଲେ ଏବଂ ବାପାଙ୍କୁ ଡକାଇ ଜିଦ୍ ଧରି କହିଥିଲେ ଯେ ଆଜିଠୁ ଗାର୍ଗୀ ଘରେ ନରହି ରହିବ ହଷ୍ଟେଲରେ । ଯେଉଁ ଆଘାତ ସେ ତା ମା'କୁ ଦେଇଛି, ତା'ର କ୍ଷମା ନାହିଁ । ବାପା କିଂକର୍ତ୍ତବ୍ୟବିମୂଢ଼ । ସେ ତଳକୁ ମୁହଁ ପୋତିଥିଲେ ।

: ମୁଁ ବି ଏଠି ଆଉ ରହିବାକୁ ଚାହେଁନି ବାପା ! ଏଠି ପରିବାର ବୋଲି କିଛି ନାହିଁ, ଏଠି ଆମେ ଘର କରିନାହୁଁ, କରିଛୁଁ ଇଟା କାନ୍ଥର ପାଚେରି । ଏଠି କାହାରି କାହା ସହ ସଂପର୍କ ନାହିଁ, ତା ହେଇନଥିଲେ ବାପା ମା ତାଙ୍କ ଝିଅର ଜନ୍ମଦିନକୁ ମନେରଖି ନଥାଆନ୍ତେ ! କୁହନ୍ତୁ ବାପା, ଆଜି ମୋର ଜନ୍ମଦିନ ଆପଣଙ୍କର ମନେଅଛି ? ମନେଅଛି ମାଆଙ୍କର ? ଗାର୍ଗୀର ଆଖିରୁ ଲୁହ ଖସି ଆସିଥିଲା ।

: ଅଗଷ୍ଟ ପନ୍ଦର ! ଗାର୍ଗୀର ଜନ୍ମଦିନ । ବାପା ମା ଦୁହିଁଙ୍କର ଆଖି ବିସ୍ଫାରିତ ହେଇଉଠିଲା । ସେ ଦୁହିଁଙ୍କର ମୁହଁ ହେଇଉଠିଲା ଆର୍ଦ୍ର ଉଦାସ । ଝିଅର ଜନ୍ମଦିନଟିକୁ ଭୁଲିଯାଇଥିବାରୁ ସେ ଦୁହେଁ ଗାର୍ଗୀ ପାଖରେ କ୍ଷମା ମାଗିଥିଲେ ଏବଂ ତତ୍‌କ୍ଷଣାତ୍ ଗାର୍ଗୀର ଜନ୍ମଦିନ ଆଡ଼ମ୍ବରରେ ପାଳନ କରିବାର ସମସ୍ତ ବନ୍ଦୋବସ୍ତ କରିଥିଲେ ।

ଗାର୍ଗୀ କିନ୍ତୁ କହିଥିଲା- ''ବାପା, ଯେଉଁଭଳି ଜୀବନ ଆମେ ଏଠି ଯାପନ କରୁଛୁଁ ସେଥିରେ ଝିଅର ଜନ୍ମଦିନକୁ ବାପା ମା' ଭୁଲିଯିବା ଏକ ଅସ୍ୱାଭାବିକ ଘଟଣା ନୁହେଁ । ଏଭଳି ପରିବେଶ, ବାତାବରଣରୁ ମୁଁ ପ୍ରକୃତରେ ମୁକ୍ତି ଚାହେଁ ବାପା, ଆସନ୍ତାକାଲି ମୁଁ ଗାଁକୁ ଯିବି, ଜେଜେମା' ପାଖରେ ରହିବି ।''

ବାପା ମା'ଙ୍କର ଶତ ବାରଣ ସତ୍ତ୍ୱେ ଗାର୍ଗୀ ଚାଲିଆସିଲା ଗାଁକୁ, ଜେଜେମା'ଙ୍କ ସ୍ନେହ ଆଦରର କୋଳକୁ ।

ଆସିବା ପୂର୍ବରୁ ବାପା କହିଥିଲେ- ''ଗାଁ ଗୁଡ଼ିକ ସହରରେ ପରିଣତ ହେଇ ଆସୁଥିଲା ବେଳେ, ନାନାଦି ବିଷମୟ ପରିବେଶରେ ଗାଁ ସବୁ ଭରି ହେଇ ଯାଇଥିଲା ବେଳେ ତୁ ଗାଁ'କୁ ଯିବା କେତେ ସଙ୍ଗତ ? କିଭଳି ଶାନ୍ତି ଆଉ ଆନନ୍ଦ ତୁ ପାଇପାରିବୁ ଗାର୍ଗୀ ?

''ଗାଁ କିମ୍ବା ସହର ଏଠି ବଡ଼କଥା ନୁହେଁ ବାପା, ବଡ଼କଥା ହେଉଚି ରୁଚି ଆଉ ଭଲ ଲାଗିବା । ଏଠି ମୁଁ ଯାହା ପାଇନାହିଁ, ଗାଁରେ ତାକୁ ଖୋଜିବି । ଏଠି ଚଢ଼େଇଟିଏ ଦେଖିବାକୁ ମିଳେନା । ଚଢ଼େଇଟେ ଦେଖିବାକୁ ଚାହିଁଲେ ପକ୍ଷୀ ଉଦ୍ୟାନକୁ ଯିବାକୁ ପଡ଼େ ।

କୋଇଲିର ସ୍ୱର ମଧୁର, ସେ କୁ କୁ ରାବେ ବୋଲି କୁହାଯାଏ । ସତରେ କ'ଣ ବାପା କୋଇଲି କୁକୁ ରାବେ ? ମୁଁ ତ କୋଇଲିର ସ୍ୱର ଶୁଣିଥିଲି ପାଞ୍ଚବର୍ଷ ତଳେ । ଗାଁରେ ସକାଳୁ ଉଠିଲେ ଅନ୍ତତଃ କେତୋଟି ଚଢ଼େଇଙ୍କର ସ୍ୱର ତ ଶୁଣିପାରିବି !''

ବାପା ଆଉ ଯୁକ୍ତି କରି ନଥିଲେ !

X X X X X X X X X

ଗାଁର ଜମିବାଡ଼ି, ଚାଷ ଇତ୍ୟାଦି ବୁଝିବା ପାଇଁ ଜେଜେମା'ଙ୍କ ପାଖରେ ସବୁବେଳେ ଥାଆନ୍ତି ବୁଢ଼ା ଗୁମାସ୍ତା ବୈକୁଣ୍ଠବାବୁ । ଖରା ଢଳି ଯିବାରୁ ଗାର୍ଗୀ ବୈକୁଣ୍ଠ ବାବୁଙ୍କୁ କହିଲା-ମଉସା, ଗାଁ ଭିତରକୁ ବୁଲିଯିବା ?

ବୈକୁଣ୍ଠ ବାବୁ କହିଲେ-ଗାଁ ଭିତରକୁ ବୁଲି ଯିବାରେ ତମର ଆଗ୍ରହକୁ ମୁଁ ନଷ୍ଟ କରିବି କାହିଁକି ? କିନ୍ତୁ ମା, ଏ ପରିବାରର ଝିଅ ବୋହୂ ଗାଁ ଭିତରକୁ କେବେ ବୁଲିଯାଇ ନାହାନ୍ତି । ତା'ଛଡ଼ା ଗାଁ ଭିତରେ କ'ଣ ଅଛି ଯେ ! କାଇଁ ସେ ନଗର, କାଇଁ ଏ ଗାଁ ?

ଗାର୍ଗୀ କିଛି କହିଲାନି । ବୈକୁଣ୍ଠ ମଉସାଙ୍କୁ ଧରି ଗାଁ ଭିତରକୁ ଗଲା । ଗାଁ ଭିତର ଦେଇ ଯାଉ ଯାଉ ବୈକୁଣ୍ଠବାବୁ ଆଶ୍ଚର୍ଯ୍ୟ ହୋଇଗଲେ । ଚୌଧୁରୀ ବଂଶର ଝିଅବୋହୂ କେବେ ଗାଁ ଦାଣ୍ଡରେ ଚାଲିଗଲେ ଝର୍କାବାଟେ ଦୁଆର ମୁହଁରେ ଝିଅବୋହୂ ପିଲାମାନେ କେତେ ଉତ୍ସୁକରେ ଅନେଇ ଥାଆନ୍ତି ଯିବା ବାଟକୁ, କିନ୍ତୁ ଏବେ ତ କାଇଁ କେହି ନଜର ପକାଉ ନାହାନ୍ତି କି ଖାତିର ନାହିଁ ! ଛକରେ ଥିବା ପାନଦୋକାନ ସାମ୍ନାରେ ବିଡ଼ି ସିଗ୍ରେଟ୍ ଟାଣୁଥିବା ପଞ୍ଚାଏ ଟୋକାଙ୍କୁ ଅତିକ୍ରମ କରିଗଲାବେଳକୁ ଜଣକ କଣ୍ଠରୁ ଶୁଭିଲା ଖଣ୍ଡିକାଶ,ଆଉ ଜଣକ କଣ୍ଠରୁ ଶୁଭିଲା ଏକ ଅଭଦ୍ର ଶବ୍ଦ । ବୈକୁଣ୍ଠ ବାବୁ ପଛକୁ କଟମଟ ଆଖିରେ ଅନାଇଲା ବେଳକୁ ହାତରେ ବଳା ପିନ୍ଧିଥିବା ଟୋକାଟେ କହିଲା-'ଶଳାଟା ଅନଉଚିବେ !'' ବୈକୁଣ୍ଠବାବୁ ଡରିଯାଇ ଆଗେଇଗଲେ । ଗାର୍ଗୀ

ମୁହଁରେ କୌଣସି ପ୍ରତିକ୍ରିୟା ପ୍ରକାଶ ପାଇ ନଥିଲା । କିଛି ବାଟ ଆଗେଇଲା ପରେ ସାମ୍ନାରେ ଆସୁଥିବା ଜଣେ ଯୁବକ ବୈକୁଣ୍ଠ ବାବୁଙ୍କୁ ଅଟକାଇ କହିଲା-''ଦାଦା, ଏଥର ଯାତ୍ରାକୁ ବାଉଁଶ ଚାରିଟା ଦବ ।''

-''ବାଉଁଶ ଦର ଯାହା ହେଲାଣି ଚାରିଟା ଦେଇ ହବନି ବିପିନ । ଠାକୁରାଣୀ ଯାତ୍ରାକୁ ଯେତେଟା ବାଉଁଶ ଗଲା, ଗୋଟେ ହେଲେ ତ ଫେରିଲାନି । ମୁଁ ତ ଗୁମାସ୍ତା, ମୁନିବ ନୁହେଁ ।'' ବୈକୁଣ୍ଠ ବାବୁ ଉତ୍ତର ଦେଇସାରି ଗାର୍ଗୀକୁ ଚାହିଁଲେ ।

-''ହଉ, ନଦିଅ ଦାଦା, ଚାରିଟା ବଦଳରେ ରାତିଅଧିଆ ଛଅଟା ଯଦି ନ ଯାଇଚି ମୋତେ କହିବ !'' ବିପିନ ଉତ୍ତର ଦେଇ ଚାଲିଗଲା ।

- ବୁଝିଲୁ ମାଆ, ଗାଁର ଅବସ୍ଥା ଏୟା । ମାଗିଲେ ଯଦି ନ ଦେଲୁ, ତା'ହେଲେ ଜବରଦସ୍ତି । ଦେଲୁ ଯଦି, ଫେରସ୍ତ ନାସ୍ତି । ପ୍ରତିବର୍ଷ ବାଉଁଶ ନଉଛନ୍ତି, ଯାତ୍ରା କାମ ସରିଗଲା ପରେ ଆମକୁ ନ ଫେରେଇ ନିଜ ନିଜ ଘରକୁ ନେଇଯାଉଛନ୍ତି । ଗାଁ ସବୁ ଆଉ ଗାଁ ହେଇ କ'ଣ ଅଛି ? ବୈକୁଣ୍ଠ ବାବୁ କହି ଚାଲିଲେ । ଗାର୍ଗୀ କିନ୍ତୁ ନୀରବରେ ଶୁଣିଲା ।

ଆଗରେ ଗାଁ ଠାକୁରାଣୀ ମନ୍ଦିର । ମନ୍ଦିର ଚୂଡ଼ାରେ ବରଗଛଟାଏ ମେଲିଲାଣି । ମନ୍ଦିର ତିଆରି ହେବାଠାରୁ ପଲସ୍ତରା ହେଇନି । ଠାଏ ଠାଏ କାନ୍ଥରେ ଆଁ ବି ହେଲାଣି । ମନ୍ଦିର ସାମ୍ନା ପିଣ୍ଡାଟି କିନ୍ତୁ ପଲସ୍ତରା ହେଇଚି ଏବଂ ପିଣ୍ଡାରେ ଗୋଟେ ବରା ଗୁଲୁଗୁଲା ଚା' ଦୋକାନ । ଏକପାଖିଆ ତାସ ଖେଳରେ କିସ୍ତିମାତ୍ କରୁଛନ୍ତି ଗାଁର ପଞ୍ଚେ ଟୋକା, ବୁଢ଼ା ! ଗାର୍ଗୀ କିଛି କହିଲାନି । ନୀରବରେ ଚାଲିଲା ।

ମଥାବାଳ ଧଳା ପଡ଼ିଆସୁଥିବା ଲୋକ ଜଣେ ସ୍କୁଟରରେ ସାମ୍ନାରୁ ଆସୁ ଆସୁ କହିଲା-'ବୈକୁଣ୍ଠଭାଇ ଜୁହାର' ଏବଂ ଅତିକ୍ରମ କରି ଚାଲିଗଲା । ବୈକୁଣ୍ଠ ବାବୁ ଗାର୍ଗୀକୁ କହିଲେ- ଦେଖିଲୁ ମା, ଏଇ ଯେ ସ୍କୁଟରରେ ଗଲେ ସେ ବଟ ବାବୁ । ହାଇସ୍କୁଲର ମାଷ୍ଟର । ସକାଳେ ତିନିଟି, ରାତିରେ ତିନିଟି, ପୁଣି ସିଫ୍ଟ ଅଛି । ଗୋଟେ ସିଫ୍ଟ ପିଲା ତିନିଦିନ ପାଠ ପଢ଼ିବ । ଏମିତି ରବିବାର ଦିନ ଦଶରୁ ଚାରି ଭିତରେ କେତୋଟି ଟିଉସନ୍‌କୁ ମିଶାଇ ପନ୍ଦର ଜାଗା ଟିଉସନ କରୁଛନ୍ତି । ଭୁବନେଶ୍ୱରରେ ଜାଗା କିଣି ଘର କରୁଛନ୍ତି । କହୁଛନ୍ତି ମଲା ପୂର୍ବରୁ ନିଶ୍ଚେ ଘର ଛିଡ଼ା କରିଦେଇଥିବେ । ସାରା ଜୀବନଟା ତାଙ୍କର ଘରଟା କରିବାରେ କଟିଯିବ । ଏ ଦେଶରେ ଏବେ କି ହାଓ୍ୱା ବହିଚି ଯେ, ସମସ୍ତେ ଖାଲି ଘର କରିବାରେ ବ୍ୟସ୍ତ । ମନ୍ତ୍ରୀଠୁଁ ଆରମ୍ଭ କରି ପିଅନ, ପାନ ଦୋକାନୀଯାଏ । ସତେ ଯେମିତି ସମସ୍ତେ ଆଗରୁ ଅଘରୀ ଥିଲେ ! ବାପ୍‌ରେ ବାପ୍, କି ଘର ନିଶା !'' ଗାର୍ଗୀ ଖାଲି ଶୁଣୁଥିଲା ନୀରବରେ । ଏଥର ମୁହଁ ଖୋଲିଲା-''ଠିକ୍ ସେୟା ନୁହେଁ ମଉସା, ସାରା ଭାରତରେ ଯେଉଁ ଏକାନ୍ନବର୍ତ୍ତୀ ପରିବାରର ଢାଞ୍ଚା ଥିଲା, ସେ ଢାଞ୍ଚା ଭୁଷୁଡ଼ି ଯାଉଥିବାର ଏଇଟା ଗୋଟେ ପରିଚୟ ! ବାପା, ମା ଭାଇ ମିଶି

ଯେଉଁ ଘର କରୁଥିଲେ, ସେଇଟା ଏବେ ଆଉ ଦେଖିବାକୁ ମିଳୁଚି ? ଜଣେ ଭାଇ କଟକରେ କୋଠା କଲାଣି ତ ଆଉଜଣେ ବାଲେଶ୍ୱରରେ । ଜଣେ ଗାଁରେ ତ ଆଉ ଜଣେ ଆଉ କେଉଁଠି !''

''ଠିକ୍ କଥା ତ ମାଆ, ଗାଁରେ ବି ଏଠି କେତେଜଣ କୋଠାଘର କରୁଛନ୍ତି, ସମସ୍ତେ ଜଣଜଣିକିଆ । ସେଥିରେ ଅନ୍ୟ ଭାଇର ସ୍ଥାନ ନାହିଁ !'' -ଟାଲୁ ଟାଲୁ କହିଲେ ବୈକୁଣ୍ଠ ବାବୁ ।

ଦିନ ଆଖର ହେବାକୁ ବସିଛି । କିଛି ବାଟ ପୁଣି ଗାଁ ରାସ୍ତାରେ ଆଗେଇଲା ପରେ ପ୍ରଧାନ ସାହି ମିଟ ବୁଢ଼ୀ ବସିଥିଲା ଦାଣ୍ଡ ପିଣ୍ଡାରେ । ଉଠି ଆସି ପଚାରିଲା- ''ରେ କଣ୍ଠ ! ଏ ଝୁଅ କିଏ କିରେ ? ବରାହ ମୁହଁ ଭଳିଆ ଦିଶୁଚି, ତା ଝିଅ... !''

-''ହଁ, ମିଟ ଖୁଡ଼ୀ ! ତାଙ୍କର ଝିଅ ଆଇଚନ୍ତି !''

ଏତକ ଶୁଣିଲା ପରେ ମିଟ ବୁଢ଼ୀ ନଇଁ ନଇଁ ଏକ ପ୍ରକାର ଧାଇଁ ଆସିଲା ଏବଂ ଗାର୍ଗୀକୁ କୁଣ୍ଢାଇ ପକାଇଲା । କହିଲା-''ତୋ ବାପାକୁ ମୁଁ କାଖେଇ କୋଳେଇ ବଡ଼େଇଚି, ତୁ ତାଆରି ଝିଅ ଏଡୁଟେ ହେଲୁଣି, ଆମେ ବା ଚିହ୍ନିବୁ କେମିତି ? ଗାଁ ମାଟି ତ ଏବେ ତମର ବିଦେଶ । କୋଉ ପାଞ୍ଚ ଦଶ ବର୍ଷରେ ଥରେ ମନକୁ ଆସିଲେ ବୁଲି ଆସିବା କଥା ! ବାପା, ବୋଉ ସବୁ ଭଲ ଅଛନ୍ତିଟି ! ବରାହକୁ କହିଦେବୁ, ମିଟ ମରିନାହିଁ ବଞ୍ଚିଛି ।

ଗାର୍ଗୀ ମୁଣ୍ଡ ହଲାଇଲା ନୀରବରେ । ସଂଜ ଲାଗି ଲାଗି ଆସୁଥାଏ । କୋଉଠୁ କୋଉଠୁ ଶଙ୍ଖ ଓ ଘଣ୍ଟା ବାଜିବା ଆରମ୍ଭିଲାଣି । ଦୁହେଁ ଆଗକୁ ଆଗେଇଲା ପରେ ସ୍କୁଲ ପଡ଼ିଆଟିଏ ରାସ୍ତାକଡ଼କୁ ଲାଗି ପଡ଼ିଲା । ପିଲା, ମାଇପେ, ବୁଢ଼ା, ଟୋକାଙ୍କ ହୋ ହଲ୍ଲା, ହସ ନାଚରେ କଂପୁଚି ଛୋଟ ପଡ଼ିଆଟା । ଗାର୍ଗୀ ଛିଡ଼ା ହୋଇପଡ଼ିଲା । ବୈକୁଣ୍ଠ ବାବୁ ବି । -''ଗାଁରେ ଡ୍ରାମା କି ଥିଏଟର ହଉଚି କି ? ଦେଖିବାକୁ ଆସନ୍ତେ !'' ପଚାରିଲା ଗାର୍ଗୀ । ବୈକୁଣ୍ଠ ବାବୁ ହସିଦେଲେ, ଏକ ମଉଳା ହସ । ''ବୁଝିଲ ମା, ସେ ଗାଁ ଆଉ କ'ଣ ଅଛି ! କୁଆଁର ପୁନେଇରେ, ରଜରେ, ଆଉ ଅଲଗା ସମୟରେ ବି ଗାଁ ପିଲାଏ ଡ୍ରାମା, ଥିଏଟର କରୁଥିଲେ, ଘର ଘରକା ଚାନ୍ଦା ମାଗୁଥିଲେ । କେତେ ଉତ୍ସାହ ! ଏବେ ସେ ସବୁ ନାହିଁ । ପ୍ରତି ସପ୍ତାହରେ ମା' ଭି.ଡ଼ି.ଓ. ଆଣୁଛନ୍ତି, ବାସ୍ ପଚାଶ ଟଙ୍କାରେ ତିନିଟା ବହି ! ଏଠି ଭି.ଡ଼ି.ଓ. ହବ ବୋଲି ଲୋକ ଘେରିଛନ୍ତି ! ସହରରୁ ତମେ ସିନା ଗାଁକୁ ପଳାଇ ଆସିଲ, କିନ୍ତୁ ଗାଁଟା ମଲା ମଲା ଲାଗିଲାଣି ।'' ବୈକୁଣ୍ଠ ଭାରି କଣ୍ଠରେ କହିଲେ ।

''ସତ କଥା ମଉସା, କିନ୍ତୁ ପାଣିର ଚବ ଚବ, ଝିଙ୍କର ସିଁ. ସିଁ, ସକାଳର କା' କା' ସୁର ତ ଗାଁରୁ ଯାଇନି । ସତରେ ମଉସା ସହରରେ ସବୁ ଶବ୍ଦ, ସବୁ ସ୍ୱରଗୁଡ଼ିକ ବିକଟ ଉଦ୍‌କଟ । କହିଲ ଦେଖି କୋମଳ ମଧୁର ପୁଣି ଭିନ୍ନ ଭିନ୍ନ ପ୍ରକାର ସୁର ଶବ୍ଦ

ବିନା ମଣିଷ କେମିତି ବଞ୍ଚିବ । ଗାଁ ପିଲାମାନେ ନିଜେ ଡ୍ରାମା କରୁଥିଲେ, ତା ଦ୍ୱାରା ସେମାନଙ୍କର ସାଙ୍ଗଠନିକ ଦକ୍ଷତା ବଢୁଥିଲା, କଳା ପ୍ରତିଭାର ବିକାଶ ଘଟୁଥିଲା, ସେଇଟା ଭି.ଡ଼ି.ଓ. କ'ଣ ଦେଇପାରିବ ?''

ସଞ୍ଜ ପୂରା ଅନ୍ଧାରିଆ ହେବା ଆଗରୁ ଦୁହେଁ ଫେରିଆସିଲେ । ଆସିଲା ବାଟରେ ଗାର୍ଗୀ ପଚାରିଲା-ମଉସା, ଗାଁର ଅନେକ ଜାଗା ଆମେ ବୁଲିଲେ, କିନ୍ତୁ ପିଲାଏ କେଉଁ ଖେଳ ପଡ଼ିଆରେ ଖେଳୁଥିବାର ତ ଦେଖିଲେ ନାହିଁ ।

: ପିଲାମାନେ ଆଉ ପଡ଼ିଆରେ ଖେଳୁନାହାନ୍ତି, ଟି.ଭି.ରେ ଖେଳ ଦେଖୁଛନ୍ତି, କ'ଣ ହେଇଚି କେଜାଣି, ପିଲାମାନଙ୍କର ଖେଳକୁଦରେ ଉତ୍ସାହ ନାହିଁ, ନାହିଁ ବି ଗଛ ଚଢ଼ା, ନଈ ପହଁରାରେ ଜିଗର, ଖାଲି ହାଡ଼ ଟଙ୍ଗ ଟଙ୍ଗ ଦେହର ଜବରଦସ୍ତିଆ ଜୀବନ ! ପୁଣି ଗଞ୍ଜେଇଟଣା, ଯା ଘରୁ ତା ଘରୁ କୁକୁଡ଼ା ଚୋରି କରି ଫିଷ୍ଟ ଖିଆ, ପୂଜା ପାର୍ବଣ କରିବା ନାଁରେ ଚାନ୍ଦା ଆଦାୟ କରି ମାଲ୍ ପିଆ, ଆଉ କହିବାକୁ ଲାଜ ଲାଗୁଚି, ଯା ଝିଅ, ତା ଝିଅ ନାଁରେ ଚିଠି, ନୁଙ୍ଗୁରୁ ପୁଙ୍ଗୁରୁ !''

ଗାର୍ଗୀ ଦୀର୍ଘଶ୍ୱାସଟିଏ ପକେଇ ଫେରିଆସିଲା ଘରକୁ ବୈକୁଣ୍ଠ ମଉସାଙ୍କ ସହିତ । ବାହାରେ ପଡ଼ିଥିବା ଖଟ ଉପରେ ଶୋଇରହି ଆକାଶକୁ ନିରେଖିଲା ଗାର୍ଗୀ । ସଞ୍ଜ ବେଶ୍ ଜମିଯାଇଚି । ''ସହରରୁ ଗାଁକୁ ଚାଲିଆସିବା ତା'ର ଭୁଲ୍ ହେଇଚି କି ? ସହର ଭଳି ଏଠି ବି ସେଇ ବିମର୍ଷ, ବ୍ୟସ୍ତ, ବିରକ୍ତ ଅସହାୟ ମଣିଷର ହାଉଯାଉ । ଧନବାନ ଏବଂ ଦରିଦ୍ର, ସମସ୍ତଙ୍କ ମୁହଁରେ ଭାରାକ୍ରାନ୍ତ ବିଷାଦ ।'' ଏଭଳି ଚିନ୍ତାରେ ବହିଯାଉଥିବାବେଳେ ଆମ୍ବଗଛର ଶୁଖିଲା ଆମ୍ବ ପତ୍ରଟିଏ ଗାର୍ଗୀ ଉପରେ ଖସି ପଡ଼ିଲା । ଚମକିଗଲା ସେ । କଅଁଳ ହସଟେ ଆଙ୍କିଗଲା ଓଠରେ । ଜେଜେମା'ଙ୍କୁ ରୋଷେଇବାସ କରି ଦେଉଥିବା ପଲ୍ଲୀ ନାନୀ କଫି ଦେଇସାରି ପଚାରିଲା– ଜଳଖିଆ ଏଇଠିକୁ ନେଇଆସିବି ?

-''ନା, ସଞ୍ଜବେଳେ ଜଳଖିଆ ଅଭ୍ୟାସ ନାହିଁ, ଭୋକ ବି ନାହିଁ ।'' ଗାର୍ଗୀ ଉତ୍ତର ଦେଲା ଏବଂ କଫି ପିଇଲା ।

ଜେଜେମା' ସଂଧ୍ୟା ସାରି ଗାର୍ଗୀ ପାଖରେ ବସିପଡ଼ିଲେ । ସ୍ନେହ ଓ ଆଶୀର୍ବାଦ ବଲ ବଲ ହାତରେ ଗାର୍ଗୀର ମୁଣ୍ଡବାଳ ସାଉଁଳଉ ସାଉଁଳଉ ପଚାରିଲେ -''ସହରରେ ବଢ଼ି ଆସିଛୁ, ଆଜି ଗାଆଁ ବୁଲିଲୁ, କ'ଣ ଫରକ୍ ଅଛି କହିଲୁ ?''

''ଗାଁ ଆଉ ସହର ଭିତରେ ଥିବା ଫରକ ଧୀରେ ଧୀରେ କମି ଆସୁଛି ଜେଜେମା', ତଥାପି ବି ଫରକ ବାରି ହୁଏ । ବଡ଼ ବଡ଼ ସହରରେ ଲୋକେ କଥା କହିବା ଭୁଲି ଯାଉଛନ୍ତି । କଥା କହିବାର ଆବଶ୍ୟକତା ପଡୁନାହିଁ । ଯଦି ବା କେହି କଥା କହୁଛି ସେଥିରେ ଛଳନା, ପ୍ରତାରଣା ବେଶି । କିନ୍ତୁ ଏଠି ଲୋକଙ୍କର କଥାଗୁଡ଼ିକ କେତେ ଆନ୍ତରିକ !

ଗାର୍ଗୀର କହିବାର ଉଦ୍ଦେଶ୍ୟକୁ ଜେଜେମା' ଅନୁଭବ କରିନେଲେ । ଏବଂ ଗାର୍ଗୀ ଯେ ପ୍ରକୃତରେ ଭାରି ଜ୍ଞାନୀ ଏକଥା ସେ ଶୁଣିଥିଲେ ବି ଆଜି ତା'ର ପ୍ରତ୍ୟକ୍ଷ ପରିଚୟରେ ତାଙ୍କ ମନ କୁଣ୍ଡେ ମୋଟ ହେଇଗଲା । ''ଗାଁ ବୁଲି ବୁଲି ମୋ ସୁନାନାକୀ ନାତୁଣୀର ଗୋଡ଼ ତ ବଥା କରିଯାଇଥିବ ।'' - ଯା କହି ଜେଜେମା ଗାର୍ଗୀର ନାହିଁ ନାହିଁ ସତ୍ତ୍ୱେ ତା ପାଦରେ ହାତ ବୁଲାଇ ଘଷିବାରେ ଲାଗିଲେ । ଆନ୍ତରିକତାର ଏକ ପ୍ରାଣମୟ ଅନୁଭୂତିରେ ଗାର୍ଗୀ ପୁଲକି ଉଠିଲା । ଆମ୍ବଗଛର ଡୀଖରେ ଦୁଇଟି ଚଢ଼େଇଙ୍କର ଫଡ଼୍ ଫାଡ଼୍ ଶବ୍ଦ ବେଶ୍ ବାରି ହେଇଯାଉଥିଲା । ହଠାତ୍ ଗାର୍ଗୀର ଆଖିରୁ ଲୁହ ଥପ୍ ଥପ୍ ଖସିଆସିଲା ଏବଂ ସେ ସୁଁ ସୁଁ କାନ୍ଦି ଜେଜେମା'ର କୋଳ ଉପରେ ମୁଣ୍ଡ ଥୋଇଦେଲା । 'ଆଲୋ ମୋ ଶଙ୍ଖାଳିର କ'ଣ ହେଲା...' ବୋଲି ଏକପ୍ରକାର ଚିତ୍କାର କରି ଗାର୍ଗୀର ଜେଜେମା' ସର୍ବାଙ୍ଗକୁ ଆଉଁସି ପକାଇଲେ ।

: ଏତିକି ସ୍ନେହ ଶ୍ରଦ୍ଧା ଯଦି ସେଠି ପାଇଥାନ୍ତି ଜେଜେମା' ! ଏଇଟା ହିଁ ସଭ୍ୟତା; ଏଇଟା ହିଁ ସଂସ୍କୃତି, ଏଇଟା ହିଁ ପ୍ରକୃତ ସମ୍ପର୍କ । ମଣିଷର ଜ୍ଞାନ, ବିଜ୍ଞାନ, ବିବେକ, ବୁଦ୍ଧି ସବୁ ହୃଦୟ ବ୍ୟତୀତ ନିଷ୍ଫଳ ।'' ସେଇ ସୁଁ ସୁଁ କାନ୍ଦ ଭିତରେ କହି ଯାଉଥିଲା ଗାର୍ଗୀ ।

ଜେଜେମା' ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ପୁଅ ବରାହର କ'ଣ ନାହିଁ ! ସମ୍ମାନ, ପ୍ରତିପତ୍ତି, ଅର୍ଥ, ସମ୍ପତ୍ତି, ସବୁକିଛି ! ସବୁକିଛି ବି ସେ ଦେଇଛି ପିଲାମାନଙ୍କୁ । ତା ସତ୍ତ୍ୱେ ଟିକେ ଆଦର ପାଇଁ କେତେ ବ୍ୟାକୁଳ ନୁହେଁ ଗାର୍ଗୀ ! ନିଜ ଲୁଗା କାନିରେ ଗାର୍ଗୀର ଆଖିରୁ ଲୁହ ପୋଛିଦେଲେ ଜେଜେମା' ।

''ମୁଁ ତୁମକୁ ଛାଡ଼ି କେଉଁଠିକୁ ଯିବିନି ଜେଜେମା'...'' ଆବେଗଭରା କଣ୍ଠରେ କହିଲା ଗାର୍ଗୀ ।

''କୋଉ ମା' ତା ନାତି ନାତୁଣୀଙ୍କୁ ଦୂରେଇ ଦବାକୁ ଚାହେଁ ? ସତକଥା କ'ଣ ଜାଣିଛୁ, ବୁଢ଼ୀମା' ମାନେ ନାତି ନାତୁଣୀଙ୍କୁ ଯେତିକି ସ୍ନେହ କରନ୍ତି, ସେତିକି ଆଦର ବି ପାଇଥାନ୍ତି । ତୁ ମୋ ପାଖରେ ରହିଲେ ମୋ ଆୟୁଷ ଆହୁରି ପାଞ୍ଚବର୍ଷ ବଢ଼ିଯିବ ।'' ଜେଜେମା'ଙ୍କର କଥାରେ ଗାର୍ଗୀ ସାମ୍ନାରେ ଏକ ଫୁଲମୟ ଜୀବନର ପରସ୍ତ ଖୋଲିଗଲା । ପୃଥିବୀର ସବୁ ଜେଜେମା' କ'ଣ ଏମିତି ! ରାତି ପାଇଁ ରୋଷେଇବାସର ତଦାରଖ କରିବାକୁ ପଲ୍ଲୀ ନାନୀ ନିକଟକୁ ଚାଲିଗଲେ ଜେଜେମା' । ଖଟ ଉପରେ ଚିତ୍ ହୋଇପଡ଼ି ଗାର୍ଗୀ ଚାହିଁଲା ଆକାଶକୁ । ଜହ୍ନ ବେଶ୍ ରାସ ଜମେଇ ଆସିଗଲାଣି । ଜହ୍ନର ଏକ ଧୋବ ଶୀତଳ କିରଣରେ ସେ ଭିଜିଗଲା । ଏଇ ଜହ୍ନରେ ମଣିଷ ପାଦ ଥାପିଲାଣି, ଏକଥା ଭୁଲି ହୋଇଯାଏ । ଏଇ ମଣିଷ ଜହ୍ନକୁ ଅଧିକାର କରି ଅସିଥିଲେ ବି ତା'ର ମୁଗ୍ଧ ବାତାବରଣରେ ସେଇ ମଣିଷ ବି ଆତ୍ମହରା ! ପ୍ରକୃତରେ ବିଜ୍ଞାନ ରୁକ୍ଷ ଯାନ୍ତ୍ରିକ ନୁହେଁ, ମଣିଷର ହାତରେ ତାହା ସେପରି ବ୍ୟବହୃତ ହୋଇଛି । ଫୁଲର

ସୌନ୍ଦର୍ଯ୍ୟ, ପବନର ସୁଲୁସୁଲୁ ବିଜ୍ଞାନର ପରିସରରୁ ବାହାରେ ନୁହେଁ । କିନ୍ତୁ କେଉଁ ମହାନ କଳାକାର ହାତରେ ଏକ ବିଜ୍ଞାନସମ୍ମତ ଉପାୟରେ ଏଭଳି ସୌନ୍ଦର୍ଯ୍ୟ ଉଭା ହୋଇଚି, ମଣିଷ ପକ୍ଷରେ ସେଭଳି ସୌନ୍ଦର୍ଯ୍ୟର ସୃଷ୍ଟି ପାଇଁ ଆହୁରି କେତେ ଜନ୍ମର ପ୍ରୟୋଜନ !''

ଏଭଳି ଚିନ୍ତା କଲାବେଳେ ହଠାତ୍ ଶୁଭିଲା ବହୁଦୂର ବିଲକୋଣରୁ ନଈ ସେପାଖରୁ ଅନ୍ଧାର ଭେଦି ବିଲୁଆର ରଡ଼ି । ପ୍ରଥମେ ଚମକି ଉଠିଲା ଗାର୍ଗୀ । ପରେ ପରେ କାନଡ଼େରି ଶୁଣିଲା । ତାକୁ ତାଳ ଧରି ସେ ଉପଭୋଗ କଲା । ଏହି ସମୟରେ ଗେଟ୍ ଡେଇଁ ପଶି ଆସୁଥିଲେ ବୈକୁଣ୍ଠ ବାବୁ । ଗାର୍ଗୀ ସଂଭ୍ରମରେ ଉଠି ବସିଲା । ଏକ ଅତ୍ୟାଧୁନିକ ଓ ତୀବ୍ର କମ୍ପିଟିଟିଭ ବାତାବରଣରେ ଜର୍ଜରିତ ପରିବାରରେ ସେ ଜନ୍ମ ହୋଇଥିଲେ ବି ଗାର୍ଗୀ ସେ ସବୁରୁ ପ୍ରାୟ ମୁକ୍ତ ଥିଲା । ସେ ଥିଲା କିଛିଟା ଖାମ୍‌ଖିଆଲୀ ଓ କଳ୍ପନା-ପ୍ରବଣା । ବୈକୁଣ୍ଠ ବାବୁ ଛିଡ଼ା ହୋଇଥିବା ଦେଖି ଗାର୍ଗୀ ପାଖରେ ଥିବା ଚେୟାରକୁ ଦେଖାଇ କହିଲା-ମଉସା, ବସନ୍ତୁ ନା ଛିଡ଼ା ହେଲେ ଯେ !

ଚାରିଆଡ଼କୁ ସତର୍କ ଦୃଷ୍ଟି ଦେଇ ବୈକୁଣ୍ଠ ବାବୁ ଚେୟାରକୁ ଗାର୍ଗୀ ଆଡ଼କୁ ଘୁଞ୍ଚାଇ ଆଣି ବସୁ ବସୁ ଗାର୍ଗୀ ଉଦ୍‌ବେଳିତ କଣ୍ଠରେ ପଚାରିଲା-ମଉସା, ଏଇଟା ବିଲୁଆ ରଡ଼ିନା ?

ହଁ, ତ ! ଆଶ୍ଚର୍ଯ୍ୟ ହୋଇ କହିଲେ ବୈକୁଣ୍ଠ ବାବୁ ।

: ମୁଁ ପଚାରିଲି ବୋଲି ଆପଣ ଆଶ୍ଚର୍ଯ୍ୟ ହୋଇଯାଉଛନ୍ତି, କିନ୍ତୁ ପ୍ରକୃତରେ ବିଲୁଆର ରଡ଼ି ମୁଁ ଏଇ ଶୁଣିଲି ପ୍ରଥମଥର ପାଇଁ । ଆଗରୁ କେବଳ ବହିରେ ପଢ଼ିଥିଲି 'ହୁକେ ହୋ' 'ହୁକେ ହୋ' ବୋଲି ! ଏଭଳି ଏକ ସ୍ୱୀକାରୋକ୍ତି ଗାର୍ଗୀଠରୁ ଶୁଣି ବୈକୁଣ୍ଠ ବାବୁ ହସି ଉଠିଲେ । ଏବଂ ପରକ୍ଷଣରେ ଯାଡ଼କୁ ସ୍ୟାଡ଼କୁ ଅନାଇ ମୁହଁକୁ ଝୁଙ୍କାଇ ଦେଇ ଚୁପ୍‌ଚାପ୍ ପଚାରିଲେ; ତମେ କୋଉଦିନ ସହରକୁ ଫେରିଯିବଟି ଝିଅ ମା ?

ଏ ପ୍ରଶ୍ନରେ ଗାର୍ଗୀ ଥଥ ମମ ହୋଇପଡ଼ିଲା । କିଛି ଉତ୍ତର ଦେଇପାରିଲାନି ।

''ଏ ଗାଁ ମାଟି, କାଦୁଅ, ଏଠାକାର ଲୋକବାକ, ହାଲଚାଲ ତ ତୁମକୁ ଭଲ ଲାଗୁ ନଥିବ, ସେଇଥିପାଇଁ ପଚାରିଲି, କିଛି ଭାବିବନି । କଥା କ'ଣ କି ତମ ହାତରେ ବାବୁଙ୍କ ପାଖକୁ ଖବର ପଠାଇଥାନ୍ତି । ସାଆନ୍ତାଣୀ ମା'ଙ୍କର ବୟସ ହୋଇଗଲାଣି । କେତେବେଳେ କ'ଣ କହୁଛନ୍ତି, କାହାକୁ କ'ଣ ଦେଇ ଦଉଛନ୍ତି, ମନେ ରହୁ ନାହିଁ । ଏଇକଥା ବାବୁଙ୍କୁ କହି ଦେଇଥାଆନ୍ତ । ଚିଠିରେ ଲେଖିବା ଭଲ ନୁହେଁ । ହଉ, ମୁଁ ଆସୁଛି ।'' ଏତକ କହି ତରତର ହୋଇ ଚାଲିଗଲେ ବୈକୁଣ୍ଠ ବାବୁ ।

ଜେଜେମା'ଙ୍କର ବିସ୍ମରଣ ହେଉଛି, ସେ କାହାକୁ କ'ଣ ଦେଇ ପକଉଛନ୍ତି, ଯଦିବା ହେଉଚି, ଏହାକୁ ଏକ ଅଭିଯୋଗ ରୂପେ ପେଶ୍ କରିବା, ପୁଣି ଜେଜେମା'ଙ୍କ

ଅନୁପସ୍ଥିତିରେ ତାଙ୍କ ନାତୁଣୀ ଆଗରେ ଗୁପ୍ତରେ, ଏସବୁ ଗାର୍ଗୀକୁ ଭଲ ଲାଗି ନାହିଁ। ଏଗୁଡ଼ିକ ଅତିମାତ୍ରାରେ ବୈଷୟିକ ଓ ଶସ୍ତା ମନୋବୃତ୍ତିର ଲୋକମାନଙ୍କର କାରବାର ଭଳି ଗାର୍ଗୀକୁ ଲାଗିଲା। ବୈକୁଣ୍ଠ ମଉସାଙ୍କ ପ୍ରତି ତା'ର ଥିବା ଉଚ୍ଚ-ସମ୍ମାନବୋଧ ଖସି ଆସିଲା। ତାକୁ ଲାଗିଲା ବୈକୁଣ୍ଠ ମଉସାଙ୍କର ଏସବୁ କଥାଗୁଡ଼ିକ ଯେମିତି ଜେଜେମାଙ୍କ ବିରୁଦ୍ଧରେ ଏକ ଷଡ଼ଯନ୍ତ୍ର ! ଗାର୍ଗୀର ମନଟା ଭାରି ଭାରି ହୋଇ ଉଠିଲା।

କିଛି ସମୟ ପରେ ଜେଜେମା' ଆସି ପହଞ୍ଚିଲେ। ଗାର୍ଗୀର ମୁଣ୍ଡ ପାଖରେ ବସିଲେ। ଗାର୍ଗୀର ମୁଣ୍ଡ ଆଉଁସି ଦେଉ ଦେଉ କହିଲେ-''ଠାକୁର ପୂଜାରେ ମୋର ବହୁ ସମୟ ଯାଉଥିଲା, ଏଣିକି ମୋ ନାତୁଣୀ ପୂଜାରେ ଅଧା ସମୟ କଟେଇ ଦେବି। କୋଡ଼ିଏ ବର୍ଷ ଧରି ତୁ ଯେତିକି ସ୍ନେହ ବାପମା'ଙ୍କ ଠୁଁ ପାଇନୁ, କୋଡ଼ିଏ ଦିନରେ ସେତିକି ସ୍ନେହ ମୁଁ ତୋତେ ଦେବି।''

ଗାର୍ଗୀର ସଙ୍ଗେ ସଙ୍ଗେ ଇଚ୍ଛା ହେଉଥିଲା ବୈକୁଣ୍ଠ ମଉସା ଜେଜେମା'ଙ୍କ ବିରୁଦ୍ଧରେ ଚୁପ୍‌ଚୁପ୍ କହିଯାଇଥିବା କଥାଗୁଡ଼ାକ ଜେଜେମା'ଙ୍କୁ କହି ବୈକୁଣ୍ଠ ମଉସାଙ୍କୁ ଗୁମାସ୍ତା ପଦରୁ ବାହାର କରିଦିଅନ୍ତା, କିନ୍ତୁ ସେ କହିଲାନି। ତିନିପୁରୁଷର ଗୁମାସ୍ତା ସେ। ଏ ପରିବାର ପାଇଁ ତାଙ୍କର ସାରା ଜୀବନ କଟିଚି। ଏତେ ଶୀଘ୍ର ଏତେବଡ଼ ପଦକ୍ଷେପ ନେବା ଉଚିତ୍ ହେବ ନାହିଁ। ତା'ଛଡ଼ା ମଉସା ବିଶ୍ୱାସର ସହକାରେ କହିଥିବା କଥାଟା ଖୋଲତାଡ଼୍ କଲେ, ହୁଏତ ସେ ନିଜେ ବିଶ୍ୱାସଘାତିନୀ ହୋଇଯାଇପାରେ।

ଧୀରେ ରାତି ବଢ଼ିଲା। ଜହ୍ନ ବୁଢ଼ା ହୋଇ ଆସିଲା। ଜେଜେମା' ଗାର୍ଗୀର ହାତଧରି ଡାକିଲେ-''ଗାର୍ଗୀ, ଆ, ମା ! ଖାଇବୁ ଆ ! ରାତି ହେଲାଣି !''

X X X X X X X X X

ରାତି ଅଧରୁ ଅଧିକ। ସାଁ ସାଁ। ଖାଁ ଖାଁ। ବେଶ୍ ନିଦ୍ରା ଯାଇଥିଲା ଗାର୍ଗୀ ତା ପଲଙ୍କ ଉପରେ। ହଠାତ୍ ତା ଝର୍କା କବାଟରେ ଧଡ଼୍ ଧଡ଼୍ ହେଲା। ବାହାରୁ କେହି ଜୋର୍‌ରେ କରାଘାତ କରୁଥିଲା। ଧଡ଼୍ ଧଡ଼୍ ଶବ୍ଦରେ ଗାର୍ଗୀର ନିଦ ଭାଙ୍ଗିଗଲା। ସେ ଭୟରେ ଥରିବାକୁ ଲାଗିଲା। ପାଖ ଘରେ ଜେଜେମା' ଶୋଇଥିଲେ। ତାଙ୍କୁ ଡାକିବାକୁ ଚାହିଁଥିଲା ଗାର୍ଗୀ କିନ୍ତୁ ଏତେ ଡରି ଯାଇଥିଲା ଯେ ତା ପାଟିରୁ ଶବ୍ଦ ବାହାରିଲା ନାହିଁ। ଝିଡ଼ିକିରେ ସେମିତି କରାଘାତ ହେଉଥିଲା। ଦୁଆର ସେପାଖରୁ ଜେଜେମା'ଙ୍କ 'ଗାର୍ଗୀ' 'ଗାର୍ଗୀ' ଡାକ ଶୁଣି ଗାର୍ଗୀର ହୋସ ଆସିଲା। ତରତରରେ କବାଟର ଶିକୁଳି ଖୋଲିଦେଲା। ଜେଜେମା' ଘର ଭିତରକୁ ପଶି ଆସିଲାରୁ ଗାର୍ଗୀ 'ଜେଜେମା' କହି ତାଙ୍କ ଛାତିରେ ଲୋଟିପଡ଼ିଲା। ଝର୍କାରେ ସେଇମିତି କରାଘାତ ହେଉଥିଲା। ଜେଜେମା' ଚିତ୍କାର କଲେ- ''କିଏ ସେ ?'' ହଠାତ୍ ଧସ୍‌ଧାସ୍ ହୋଇ ଦୁଇ ତିନିଜଣ ଦଉଡ଼ି ପଳେଇବାର ଶବ୍ଦ ଶୁଭିଲା। 'ବାଳୁଙ୍ଗା, ଛତରା'- କହି ରାଗରେ ଦାନ୍ତ କଡ଼ମଡ଼ କଲେ ଜେଜେମା'। ଏବଂ ଗାର୍ଗୀ ପାଖରେ ସେ ସେଇଠି ଶୋଇଲେ।

ଜେଜେମା'ଙ୍କର ସମସ୍ତ ପ୍ରବୋଧନା ସତ୍ତ୍ୱେ ଗାର୍ଗୀକୁ ରାତିରେ ନିଦ ନଥିଲା। ରାତି ଅଧରେ ତା ଶୋଇବା ଘର ଝରକା ବାଡ଼େଇବା ପଛରେ ସେମାନଙ୍କର କି ଅଭିପ୍ରାୟ ଥିଲା ତାହା ଗାର୍ଗୀକୁ ବୁଝିବାକୁ ଆଉ ବାକି ରହିଲାନି। ଚିନ୍ତାର ପାଟ ପୁଣି ବଦଳିବାକୁ ଲାଗିଲା। ଜେଜେମା'ର ଅମୃତ ଆଦରରେ ସେ ଭିଜି ଯାଇଛି ସତ। ହତାଶା ଓ ଏକାକୀତ୍ୱର ମର-ଶଯ୍ୟାରୁ ସେ ଉଠିଆସିଛି ଜୀବନ୍ୟାସ ପାଇ। ବଞ୍ଚିବାର ସମସ୍ତ ଆକାଙ୍କ୍ଷା ଓ ଜୀବନବୋଧରେ ସେ କୁରୁଳି ଉଠୁଚି ସତ୍ୟ, କିନ୍ତୁ ସେ ଏ ଗାଁରେ କରିବ କ'ଣ ? ସହର ଭଳି ଗାଁରେ ବି ସେଇ ଅତ୍ୟାଚାରୀ, ଅନ୍ୟାୟୀ ବାତାବରଣ। କେତେବର୍ଷ ତଳେ ଗାଁରେ ରହିଥିଲେ ବୁଢ଼ା, ଅକର୍ମଣ୍ୟ, ମହିଳା ଓ ଲଙ୍ଗଳା ପିଲା। ଶିକ୍ଷିତ, ଅଶିକ୍ଷିତ ଯୁବକମାନେ ସହରୀ ହାୱାରେ ଉବୁଟୁବୁ ହେବା ସଙ୍ଗେ ସଙ୍ଗେ କର୍ମନିଯୁକ୍ତି ପାଇଁ ଚାଲିଯାଉଥିଲେ ସହରକୁ। କଳକାରଖାନାରେ ଶ୍ରମିକ ହେଇଯାଉଥିଲେ। କିନ୍ତୁ ଏବେ ସେ ସ୍ରୋତ ବନ୍ଦ୍ ହେଇଯାଇଛି। ଗାଁ ପିଲାଏ ଗାଁରେ, ବେକାର, ହତାଶ ଓ ଅପରାଧପ୍ରବଣ।

ଭୋଅର ବେଳକୁ ନିଦ ଲାଗିଯାଇଥିଲା ଗାର୍ଗୀର, ଉଠିଲାବେଳକୁ ପ୍ରାୟ ଦିନ ଆଠ। ଉଠିପଡ଼ି ମୁହଁ ହାତ ଧୋଇ ଦାଣ୍ଡ ବଙ୍ଗଳାକୁ ଆସିଲା ପରେ ସେ ଦେଖିଲା ଜେଜେମା'ଙ୍କୁ ଘେରି ଗାଉଁଲି ଲୋକ ସାତ ଆଠ ଜଣ ବସିଛନ୍ତି। ପାଖରେ ବୈକୁଣ୍ଠ ମଉସା। ଜେଜେମା' ସେମାନଙ୍କୁ କହୁଛନ୍ତି– "ଠିକ୍ ଅଛି ! ମୁଁ ରାଘବକୁ କୋର୍ଟରୁ ଜାମିନ୍‌ରେ ଆଣିବି, କିନ୍ତୁ ଗୋଟେ କଥା, ଭିକାରୀ ଷଡ଼ଙ୍ଗୀ ଆଗରେ ମୁଣ୍ଡ ନୁଆଁଇବନି, କେଶ୍ ଚାଲୁ, ମୁଁ ଅଛି, ପଇସାବାଲା ହେଇଚି ବୋଲି ଭିକାରୀ କ'ଣ ଯାଛାତା କରିଯିବ ?"

ଏତକ ଶୁଣି ଗାଁ ଲୋକେ ସଗର୍ବରେ ଜେଜେମା'ଙ୍କୁ ଜୁହାର ହେଇ ଚାଲିଗଲେ। ଜେଜେମା'ଙ୍କର ଏଭଳି କାନ୍ତି ଦେଖି ଗାର୍ଗୀ ଆଶ୍ଚର୍ଯ୍ୟ ହେଇଯାଇଥିଲା। ଜେଜେମା' ଯେ ତା'ର କେବଳ ଆଦରଦାତ୍ରୀ ବୁଢ଼ୀମା ନୁହେଁ, ଏ ଅଞ୍ଚଳରେ ଜଣେ ସମ୍ମାନିତ ଗଣ୍ୟମାନ୍ୟ ମହିଳା, ଏ କଥା ଜାଣି ସେ ପୁଲକି ଉଠିଲା। ସେ ଜେଜେମା'ଙ୍କର ନିକଟକୁ ଆସିଲାରୁ ଜେଜେମା ତା'ର ହାତକୁ ଧରି ପକାଇ କହିଲେ- ମୋ ଶଙ୍ଖାଳି ଉଠିପଡ଼ିଲାଣି ଯେ, ଦାନ୍ତ ଘଷିସାରିଲୁଣି ?

-ନା' କହିଲା ଗାର୍ଗୀ। ସେଇଠି ନୀରବ ନରହି ପୂର୍ଣ୍ଣ ଜହ୍ନକୁ ଶିଶୁ ପ୍ରଥମେ ଦେଖି କୁଲୁରି ଉଠିଲା ଭଳି ଗାର୍ଗୀ ଉଚ୍ଛୁଳିପଡ଼ି କହିଲା- "ଜେଜେମା', ତମର ଏସବୁ କଥା ବାପା ତ ଆମକୁ କେବେ କହିନାହାନ୍ତି ?"

-କୋଉ କଥା ? ଜେଜେମା' ପ୍ରଶ୍ନ କଲେ।

-"ଏଇ ଯେ, ଆମ ଜେଜେମା'ଙ୍କର ଗାଁରେ ଏତେ ସମ୍ମାନ, ଏତେ ଆଧିପତ୍ୟ, ଏ ଅଞ୍ଚଳର ଲୋକଙ୍କ ପାଇଁ ଏତେ ଅବଦାନ... ଅଥଚ ଆମେ... ନାତି ନାତୁଣୀ ହେଇ ଜାଣୁନା... ।".

ଢେଙ୍କେମା' ସ୍ୱାଭାବିକ ହସରେ ଗାର୍ଗୀର ମୁଣ୍ଡ ଆଉଁସି କହିଲେ- ଏଇଟା ତ ନିହାତି ସାଧାରଣ କଥା । ଯେଉଁଠି ରହିବ, ସେଠିକାର ଲୋକମାନଙ୍କର ସୁଖ ଦୁଃଖର ଭାଗୀଦାର ହେବ, ସେ ଅଞ୍ଚଳର ସୁବିଧା ଅସୁବିଧା ବୁଝିବ, ମଣିଷ ସହ ମଣିଷର ସମ୍ପର୍କ ନ ରହି କ'ଣ ବଞ୍ଚିହବ ? ଏଥିରେ ତୁ ଆଶ୍ଚର୍ଯ୍ୟ ହେଉଛୁ କାହିଁକି ?

କିନ୍ତୁ ପ୍ରକୃତରେ ଗାର୍ଗୀ ଆଶ୍ଚର୍ଯ୍ୟ ହେଉଥିଲା । ଗାଁର ଜଣେ ସ୍ତ୍ରୀଲୋକ, ପୁଣି ପୂର୍ବତନ ଜମିଦାରଙ୍କ ସ୍ତ୍ରୀ, ଗାଁ ଲୋକଙ୍କର ନେତୃତ୍ୱ ନେବା, ବାସ୍ତବିକ୍ ତାକୁ ଲାଗୁଥିଲା ଖୁବ୍ ନୂଆ, କୌଣସି ଏକ ବୈଜ୍ଞାନିକଙ୍କର ଆବିଷ୍କାର ଭଳି ! ଗତରାତିର ଘଟଣା ପରଠାରୁ ଗାଁ ଛାଡ଼ି ପୁଣି ସହରକୁ ଫେରିଯିବାର ଯେଉଁ ଇଚ୍ଛା ଉଙ୍କିମାରିଥିଲା ତା' ମୁଣ୍ଡରେ, ଏବେ ସେ ଆଗ୍ରହ ନେଉଟିପଡ଼ିଲା । ଢେଙ୍କେମା' ଯେ ବିଜ୍ଞାନର ଏକ ଜୀବନ୍ତ ପ୍ରତିମା, ଏଭଳି ଅନୁଭବ ତା'ର ଆସିଗଲା । ଯେଉଁ ବିଜ୍ଞାନକୁ ସେ ଜୀବନ ଭରି ଉପଲବ୍ଧି କରିବ, ତା'ର ଦୀପ୍ତିରେ ସେ ଆଲୋକିତ ହେଇଉଠିବ । ତା'ର ଚିନ୍ତାରେ, ଅନୁଭବରେ, ହୃଦୟରେ, ଚେତନାରେ କୌଣସି ବିଜ୍ଞାନ ପ୍ରସଙ୍ଗ ଉଦ୍‌ବେଳନ ସୃଷ୍ଟି କଲାଭଳି ଢେଙ୍କେମା'ଙ୍କ ଜୀବନ ତା'ର ପ୍ରତିଟି ମୁହୂର୍ତ୍ତରେ ଏକ ଏକ ଗବେଷଣାର ବିଷୟ ହେଇଉଠିଲା । ଏବଂ ପ୍ରତିଟି ଗବେଷଣାରୁ ଝରିଆସୁଥିଲା ବିନ୍ଦୁ ବିନ୍ଦୁ କାକର, ଥୋପା ଥୋପା ଅମୃତ ।

:ଆଲୋ ମା, ରାଘବକୁ କୋର୍ଟରୁ ଜାମିନ୍‌ରେ ଆଣିବାକୁ କଚେରି ଯିବି, ସେଥିପାଇଁ ମୁଁ ତରତର ହେଉଛି । ତୋତେ ଏକୁଟିଆ ଲାଗିବନି ତ ! ପଲ୍ଲୀ ଅଛି, ବୈକୁଣ୍ଠ ଅଛି । ମୁଁ ସଅଳ ଫେରି ଆସିବାକୁ ଚେଷ୍ଟା କରିବି । ତୁ ଗଲୁ, ଦାନ୍ତ ଘଷିଦେଇ ଜଳଖିଆ ଖାଇନେବୁ । ଅଳ୍ପ ତରତରରେ ଚାଲିଗଲେ ଢେଙ୍କେମା' ଗାଧୁଆ ଘରକୁ ।

x x x x x x x x x

ଢେଙ୍କେମା' କଚେରିକୁ ଚାଲିବାର କିଛି ସମୟ ପରେ ବୈକୁଣ୍ଠ ବାବୁ ଆସି ପହଞ୍ଚିଲେ ଗାର୍ଗୀ ନିକଟରେ । ସହରରୁ ଆସିଥିବା କିଛି ବିଜ୍ଞାନ ପତ୍ରିକାକୁ ବେଶ୍ ଗଭୀରତାର ସହ ଘରେ ପଢୁଥିଲା ଗାର୍ଗୀ । ବୈକୁଣ୍ଠ ମଉସାଙ୍କୁ ନିକଟରେ ଦେଖି ଘରେ ଥିବା ସୋଫାରେ ବସିବାକୁ ଅନୁରୋଧ କଲା ଗାର୍ଗୀ; ଏବଂ ବୈକୁଣ୍ଠ ମଉସା ଯେ ପୁଣି ଢେଙ୍କେମା'ଙ୍କ ବିରୁଦ୍ଧରେ କିଛି କହିବାକୁ ଆସିଛନ୍ତି, ଏଭଳି ଏକ ଅନୁମାନ କରିନେଇ ଏକ ଘୃଣାମିଶ୍ରିତ ଉତ୍ସୁକତାରେ ଚାହିଁ ରହିଲା ।

ବୈକୁଣ୍ଠ ବାବୁ ସୋଫାରେ ବସୁ ବସୁ ଆରମ୍ଭିଲେ: ସାଆନ୍ତାଣୀମାଙ୍କ ବିଷୟ ତମ ପାଖରେ ଯାହା କହିଲି, ସେଥିପାଇଁ ତମ ମନରେ ଘୃଣା ଆସିଥାଇପାରେ, କିନ୍ତୁ ମୁଁ ସତ କହୁଛି ଝିଅ ମା, ସାଆନ୍ତାଣୀ ମା' ତୁମକୁ ଭାରି ଆଦର ସ୍ନେହ କରନ୍ତି ସତ, ମୋତେ ବି ଭାରି ଶ୍ରଦ୍ଧା କରନ୍ତି, ସାହାଯ୍ୟ କରନ୍ତି, ମୋର ବି ଦି'ଟା ଝିଅ ବାହାଘର

ଖର୍ଚ୍ଚ ସେ ତୁଲେଇଛନ୍ତି ସତ, କିନ୍ତୁ ମୁଁ ଏ ଘରର ନିମକ ଖାଇଚି, ସତ କହୁଚି, ସାଆନ୍ତାଣୀ ମା' ତୁମକୁ କେବେ ଏଠି ରଖେଇ ଦେବନି। ତୁମେ ଜାଣିନ ଝିଅ ମା, ସାନବାବୁ ଆଉ ଛୁଆବାବୁ ପାଠପଢ଼ାରୁ ସେଆଡ଼େ ସେଆଡ଼େ। ବାହାଘର ବି ସେଆଡ଼େ। କଦବା କେମିତି ଆସିଲେ ଘଣ୍ଟେ ଦି'ଘଣ୍ଟା ରହି ବାସ୍ ଚାଲିଯାଆନ୍ତି। ଦେଖୁଛ ତ ସାଆନ୍ତାଣୀମା'ଙ୍କର କି ରବାବ୍ ଏ ଅଞ୍ଚଳରେ ! ମୁଁ ବୁଢ଼ା ହେଲିଣି। ସାଆନ୍ତାଣୀ ମା' ବି। ଘର, ଜମିବାଡ଼ି, ତୋଟା, ପୋଖରୀ ସବୁ କିଏ ସମ୍ଭାଳିବ ? ଆଗରୁ ସ୍କୁଲବାଲାଏ ଆସି ପାଞ୍ଚ ଏକର ଜମି ଓ ଦଶହଜାର ଟଙ୍କା ନେଇ ଯାଇଛନ୍ତି। ଏଇମିତି ଏ ଜମିବାଡ଼ି ସବୁ ସାଆନ୍ତାଣୀ ମା' ଶେଷ କରିଦେବେ। ମୋ କଥାକୁ ଖରାପ ଭାବୁଛ କି ?

ଗାର୍ଗୀ ମନରେ ବୈକୁଣ୍ଠ ମଉସାଙ୍କ ପ୍ରତି ଜମିଉଠିଥିବା ସନ୍ଦେହ ଧୀରେ ଧୀରେ ଅପସରି ଗଲା। ଏ ପରିବାରର ହିତୈଷୀ ଏବଂ ପୁରୁଣା ଗୁମାସ୍ତା ହିସାବରେ ତାଙ୍କର କର୍ତ୍ତବ୍ୟ ଯାହା ସେ କରି ଚାଲିଛନ୍ତି। କିନ୍ତୁ ଗାର୍ଗୀକୁ ଆଶ୍ଚର୍ଯ୍ୟ ଲାଗିଲା, ଯେତେବେଳେ ସେ ଶୁଣିଲା ଯେ ଜେଜେମା' ତାକୁ ଏଠାରେ ରଖାଇଦେବେନି, ବାପା, ଦାଦା କି ବୋହୂମାନେ ବି ଏଠାରେ ଜେଜେମା'ଙ୍କ ପାଖରେ ରହିପାରିନାହାନ୍ତି। ସାମାନ୍ୟ ଦୋ ଦୋ ପାଞ୍ଚ ହେଇ ସେ ସେଇ ପ୍ରସଙ୍ଗଟିକୁ ଉତ୍‌ଥାପନ କଲା। ଯଦିଓ ସେ ଚାହୁଁ ନଥିଲା ବୈକୁଣ୍ଠ ମଉସା ଜେଜେମା'ଙ୍କୁ ଜଣେ ଅପରାଧିନୀ ବୋଲି କହନ୍ତୁ।

ଗାର୍ଗୀର ସେ ପ୍ରଶ୍ନ ଉପରେ ବୈକୁଣ୍ଠ ବାବୁଙ୍କ ମନ ଝାଉଁଳିପଡ଼ିଲା। ସେ ଆବେଗବଶତଃ ସବୁ କଥାଗୁଡ଼ିକ ସିନା ଉଖାରିପକେଇଲେ କିନ୍ତୁ ଘାଟିମୁଣ୍ଡଠି ଗାର୍ଗୀ ଅଟକିଯାଇଥିବ ବୋଲି ତାଙ୍କର ଧାରଣା ନଥିଲା। ପ୍ରଶ୍ନକୁ ବାଆଁରେଇବାକୁ ଏପାଖ ସେପାଖ ହେଲାବେଳକୁ ଗାର୍ଗୀ ବିନିତ କଣ୍ଠରେ କହିଲା- ''ମଉସା, ସତ କଥାଟି କହିବେ, ଆପଣଙ୍କ ସମ୍ମାନରେ ଆଞ୍ଚ ଆସିଲା ଭଳି କୌଣସି କାମ ମୁଁ କରିବିନି।''

ତୁଣ୍ଡରୁ ସେ କଥାକୁ ଉଚ୍ଚାରଣ କରିବାକୁ କଷ୍ଟ ଅନୁଭବ କରୁଥିବା ବୈକୁଣ୍ଠ ବାବୁ ଭାରି ଭାରି କଣ୍ଠରେ କହିଲେ- ''କେବେ କହି ନଥିବା, କହିବାକୁ ଚାହିଁ ନଥିବା କଥା କହୁଚି ଝିଅମା', ଦୋଷ ଧରିବନି। ଆମ ଜମିଦାର ସାଆନ୍ତଙ୍କୁ ସାଆନ୍ତାଣୀ ମା' ନିଜ ହାତରେ ମାରିଦେଇଛନ୍ତି ବୋଲି ଏ ଅଞ୍ଚଳରେ ଜନରବ ଅଛି। ସାନ ବାବୁ ପାଟନାରେ ପଢୁଥିଲାବେଳେ ଗାଁ ଲୋକଙ୍କଠାରୁ ଟିଟ୍‌କାରୀ ଶୁଣି ରାଗରେ ଯେତେବେଳେ ମା'ଙ୍କୁ ଏକଥା ପଚାରିଲେ ସେତେବେଳେ ସାଆନ୍ତାଣୀ ମା' କିଛି ନକହି ରାଗରେ ସାନ ବାବୁଙ୍କୁ ଏମିତି ଚାପୋଡ଼େ ମାରିଲେ ଯେ ସେହି ଦିନଠୁଁ ସେ ପ୍ରଶ୍ନ ଏ ଉଆସରେ ଦ୍ୱିତୀୟଥର କେହି ଉଠାଇନାହାନ୍ତି। କିଛିଦିନ ତମେ ଏଠି ରହିଯାଅ, ଗାଁ ଲୋକଙ୍କ ପରିହାସ ବଳେ ଶୁଣିବ ଯେ ! ଏ କଥା ଶୁଣିବା ପୂର୍ବରୁ ସାଆନ୍ତାଣୀ ମା' ତୁମକୁ ସହରକୁ ପଠାଇ ସାରିଥିବେ, ଦେଖିବ।''

ଆଶ୍ଚର୍ଯ୍ୟରେ ଗାର୍ଗୀର ଆଖି ସ୍ଥାଣୁ ପାଲଟିଗଲା । ସେ ନିଜ କାନକୁ ବିଶ୍ୱାସ କରିପାରୁ ନଥିଲା । ଉଆସର ଚାରିଆଡ଼ ଯେମିତି ଏକ ସନ୍ଦେହର କଳା ଛାଇରେ ଭର୍ତ୍ତି ହୋଇଯାଇଛି, ଏକ ପରିତ୍ୟକ୍ତ ଅଟ୍ଟାଳିକାର ଅବିଶ୍ୱାସମୟ ଜୀବମାନଙ୍କ ଗହଣରେ ସେ ଯେମିତି ଛନ୍ଦି ହୋଇ ଯାଇଛି ! ତଥାପି ବି ଗାର୍ଗୀ ପ୍ରଶ୍ନକଲା- ମଉସା, ଏ ଅଞ୍ଚଳର ଲୋକେ ଏକଥା ଜାଣି ମଧ କେମିତି ଜେଜେମା'ଙ୍କ ପାଖକୁ ପ୍ରତିଟି ବିଷୟରେ ଆଲୋଚନା ପାଇଁ ଆସୁଛନ୍ତି ?

''ସାଆନ୍ତାଣୀ ମା'ଙ୍କ ପାଖରୁ ଜମି ନେବେ, ଟଙ୍କା ନେବେ, ସେଇ ଲୋଭରେ । ଏଭଳି ଦାନ ଧର୍ମ କରି ସେ ଲୋକଙ୍କ ମନରୁ ପଛକଥା ପୋଛାଇ ଦବା ପାଇଁ କହୁଛନ୍ତି । କେତେକ ବୁଢ଼ା ବୁଢ଼ା ସ୍ୱାଧୀନତା ସଂଗ୍ରାମୀ କହନ୍ତି ସାଆନ୍ତାଣୀ ମା' କୁଆଡ଼େ ସେମାନଙ୍କୁ ଆନ୍ଦୋଳନ ସମୟରେ ସାହାଯ୍ୟ କରୁଥିଲେ । ତେଣୁ ସେମାନେ ମା'ଙ୍କୁ ମାନନ୍ତି ।'' ବୈକୁଣ୍ଠ ବାବୁ ଏତକ କଥା କହି ସାରିଲା ବେଳକୁ ଗାର୍ଗୀକୁ ଲାଗୁଥିଲା ଯେମିତି ସେ ଅଦ୍ଭୁତ ଷଡ଼ଯନ୍ତ୍ରର କାହାଣୀଟିଏ ଶୁଣିଯାଉଛି । ଏଭଳି ପରିସ୍ଥିତିରେ ସେ ଗାଁରେ ରହିବ କି ବାପା ମା'ଙ୍କ ପାଖକୁ ପଳେଇବ କିଛି ସ୍ଥିର କରିପାରିଲାନି । ନଗର ଜୀବନର ସମ୍ପର୍କହୀନତାରୁ ସେ ଆସି ପହଞ୍ଚିଯାଇଛି ସମ୍ପର୍କର ବିଷଯନ୍ତାରେ ଯେମିତି !

''ମୁଁ ଆସୁଛି ଝିଅ ମା' । କହିବା ମୋର କର୍ତ୍ତବ୍ୟ ବୋଲି ମନେକରି କହିଦେଲି ଏସବୁ ।'' ଏତକ କହି ଦୀର୍ଘଶ୍ୱାସଟିଏ ଛାଡ଼ି ଉଠିଲେ ବୈକୁଣ୍ଠବାବୁ । ଏବଂ ଧୀରେ ଧୀରେ ଗାର୍ଗୀର କୋଠରିରୁ ଚାଲିଗଲେ । ଗାର୍ଗୀ ମୁହଁ ଉଠାଇ ଲକ୍ଷ୍ୟ କଲା । ବୈକୁଣ୍ଠ ବାବୁଙ୍କ ପାଦ ପଡୁଥିଲା ଭାରି ଭାରି । ମୁଁ ଏଠାରେ ରହିବା ଦ୍ୱାରା ବୈକୁଣ୍ଠ ମଉସାଙ୍କ ସ୍ୱାର୍ଥରେ ଆଞ୍ଚ ଆସୁଛି ବୋଲି ଏଭଳି ଚତୁରତା ଓ ଛଳନାର କଥା କହୁ ନାହାନ୍ତି ତ ? - ଗାର୍ଗୀ ମନରେ ସନ୍ଦେହ ଉଙ୍କିମାରି ଆସିଲା । କିନ୍ତୁ ପରମୁହୂର୍ତ୍ତରେ ସେ ଚିନ୍ତାକଲା- ବୈକୁଣ୍ଠ ମଉସା ସବୁ ମିଥ୍ୟା ଛଳନା କରିପାରନ୍ତି, କିନ୍ତୁ ଜେଜେମା' ଜେଜେ ବାପାଙ୍କୁ ହତ୍ୟା କରିଛନ୍ତି ବୋଲି କହିବାର ସାହସ କରିବା ସହଜ ନୁହେଁ, ବିନା କୌଣସି ଧୂଆଁ ନଥିଲେ ! ଗାର୍ଗୀର ମୁଣ୍ଡ ବୁଲାଇ ଦେଲା ।

ଜେଜେମା' ଫେରି ନଥାନ୍ତି । ଗାର୍ଗୀ ଅପରାହ୍ଣରେ ଏକାକିନୀ ଗାଁ ଭିତରକୁ ବୁଲି ବାହାରିଗଲା । ସୂର୍ଯ୍ୟ ପ୍ରାୟ ଅସ୍ତ ହୋଇ ଆସୁଛନ୍ତି । ଉଆସ ବାହାରକୁ ଆସିଗଲା ପରେ ଗାର୍ଗୀକୁ ଲାଗିଲା ହାଲ୍‌କା ହାଲ୍‌କା । ଯେମିତି ସେ ଯନ୍ତାରୁ ମୁକ୍ତ ହେଇଚି । ବାପା, ମା, ସହରର ଭିଡ଼ ଓ ଯନ୍ତ୍ରଣା ଝଡ଼ରୁ ମୁକ୍ତ ହୋଇ ସେ ଯେତେବେଳେ ଗାଁ ଉଆସ ଆଉ ଜେଜେମା'ଙ୍କ ଠାରେ ପହଞ୍ଚିଥିଲା, ସେ ଅନୁଭବ କରିଥିଲା ଏକ ମୁକ୍ତ ଆକାଶର ବିଚରଣ । କିନ୍ତୁ ଏଇ ଏତିକି ଦିନ ଭିତରେ ଉଆସ, ଜେଜେମା', ତାଙ୍କର ଏତେ ସ୍ନେହ, ଆଦର ସତ୍ତ୍ୱେ ଏସବୁ ତାକୁ ଲାଗୁଛି ଫିକା ଫିକା, କୃତ୍ରିମ ଏବଂ ଉଆସ ବାହାରର ପବନ ତାକୁ ଉଲ୍ଲସିତ କରୁଛି ।

. କିଛି ବାଟ ଆଗେଇଲା ପରେ ପଡ଼ିଲା ଗାଁ ଛକ ଓ ପାନ ଦୋକାନ। ଗାର୍ଗୀ ଟିକେ ଡରିଗଲା। କିନ୍ତୁ ସାହସ ସଞ୍ଚୟ କରି ଆଗେଇ ଯାଉ ଯାଉ ପାନ ଦୋକାନରେ ଆଡ୍‌ଡ଼ା ମାରୁଥିବା ଟୋକାଙ୍କ କଣ୍ଠରୁ ଶୁଭିଲା ସେଇ ଖଣ୍ଡିକାଶ ଏବଂ ତା'ର ପାଦ ଥିର୍ ହୋଇଗଲା ଯେତେବେଳେ ସେ ଶୁଣିଲା-''ଘଇତାମାରି ବୁଢ଼ୀର ନାତୁଣୀ ଇଏ।'' ରାଗରେ ଗାର୍ଗୀ ନିଆଁ ହୋଇଗଲା ଏବଂ ବୁଲିପଡ଼ି ପ୍ରଶ୍ନକଲା-ହୁ ଇଜ୍ ଦ୍ୟାଟ୍ ?

ପାନ ଦୋକାନ ଓ ତା'ର ଚାରିପାଖ ଏକଦମ୍ ନୀରବ। ଗାର୍ଗୀର ନାଲିରଙ୍ଗ ଆଖି ପ୍ରତିଟି ଯୁବକର ମୁହଁକୁ ଘୂରିଗଲା। ସବୁ ଆଖି, ସବୁ ମୁହଁ ଭିନ୍ନ-ମୁଖୀ। ଗାର୍ଗୀ ନିଜକୁ ଆୟତ୍ତରେ ରଖି ପାରିଲାନି। ରାଗ,ଦୁଃଖ, ଘୃଣାର ଅବୟବ ଭିତରେ ସେ କାନ୍ଦି ପକାଇବ ଅବା ! ଏକପ୍ରକାର ଧାଇଁ ଆସିଲା ଗାର୍ଗୀ ଉଆସ ଭିତରକୁ ଏବଂ ବିଛଣାରେ ନିଜକୁ ଲୋଟାଇ ଦେଲା। ଏବଂ ଆସନ୍ତାକାଲି ପୁଣି ସହରକୁ ଫେରିଯିବ ବୋଲି ମନେ ମନେ ନିଷ୍ପତ୍ତି ନେଇଗଲା। ଗାଁରେ ପ୍ରକୃତି ବଞ୍ଚିଛି ସତ, କିନ୍ତୁ ମଣିଷ ନିଶ୍ଚେତନ, ଦ୍ୱନ୍ଦ୍ୱ ଓ କାତରତାରେ ସଢୁଚି। ମାନସିକ ଉତ୍ତେଜନାର କ୍ଳାନ୍ତିରୁ ଗାର୍ଗୀକୁ ନିଦ ଆସିଗଲା।

ନିଦ ଭାଙ୍ଗିଲାରୁ ଗାର୍ଗୀ ଉଠିଲା ବେଳକୁ ସଞ୍ଜ। ତା' ଘରର ବେଡ୍ ଲାଇଟ୍ ଦିଆଯାଇଛି। ସେ ଉଠିଯାଇ ମୁହଁ ହାତ ଧୋଇଲା। ଏବଂ ଜେଜେମାଙ୍କ କୋଠରିକୁ ପଶିଗଲା। ଆଶ୍ଚର୍ଯ୍ୟ ହେଲା ଯେତେବେଳେ ସେ ଦେଖିଲା ଜେଜେମା' କାନ୍ଥରେ ଟଙ୍ଗା ହୋଇଥିବା ଜେଜେବାପାଙ୍କ ତୈଳଚିତ୍ରରେ ଫୁଲମାଳ ଧୂପ ଲଗାଇ ପ୍ରଣାମ କରୁଛନ୍ତି। ଛଳନା ଓ ପ୍ରବଞ୍ଚନାର ଏକ ମୂର୍ତ୍ତିମନ୍ତ ରୂପ-ଏଇ ଜେଜେମା', ଏଭଳି ଚିନ୍ତାରେ ଗାର୍ଗୀର ମୁହଁସାରା ଘୃଣାବ୍ରଣ ଜମିଯାଇଥିଲା ଯେମିତି ! ପ୍ରଣାମ ସାରି ଜେଜେମା' ପଛକୁ ବୁଲି ଗାର୍ଗୀକୁ ଦେଖି ହସିଦେଲେ। ନିରୋଳା ସ୍ନେହ ସଞ୍ଚିତ ହସ। ଗାର୍ଗୀର ମୁହଁରେ ଅସନ୍ତୋଷ ଓ ବିବ୍ରତ ବୋଧକୁ ଲକ୍ଷ୍ୟ କରି ତା'ର ମୁଣ୍ଡ ଆଉଁସି କହିଲେ- ''ମୋ ମା'ର ମୁହଁ ଶୁଖିଯାଇଛି ଯେ, ଏଥିପାଇଁ ଯେ ଦାୟୀ ତା'ର ମରଣ ହେଉ ! ତୁ ଏକୁଟିଆ ଗାଁ ଭିତରକୁ ବୁଲି ଯାଇଥିଲୁଟି ! ନିଜ ଗାଁ ଫୂର୍ତ୍ତିରେ, ଖୁସିରେ ବୁଲିବୁ, ମନ ହାଲ୍‌କା ହୋଇଯିବ। ମୁଁ କଚେରିରୁ ଫେରିଲା ପରେ ଦେଖିଲି ତୁ ଶୋଇଚୁ। ତୋ ନିଦକୁ ଭାଙ୍ଗିଲି ନାହିଁ।'' ଏତକ କହି ଜେଜେମା' ଗାର୍ଗୀକୁ ଧରି ବୈଠକଖାନାକୁ ନେଇଗଲେ। ବୈଠକଖାନାରେ ଅପେକ୍ଷାରତ ଜଣେ ଯୁବକକୁ ଦେଖି ଗାର୍ଗୀ ରାଗରେ ଜଳି ଉଠୁଥିଲା। ଏଇ ଯୁବକ ଆଜି ଅପରାହ୍ନରେ ପାନ ଦୋକାନ ସାମ୍ନାରେ ଛିଡ଼ା ହୋଇଥିଲା ଯେଉଁଠି ସେ ପଛପଟୁ 'ଘଇତାମାରି ବୁଢ଼ୀର ନାତୁଣୀ' ବୋଲି ଶୁଣି ଅପମାନିତ, ଆହତ ହୋଇଥିଲା। ଗାର୍ଗୀ କିଛି କହିବା ପୂର୍ବରୁ ଯୁବକଟି ଗାର୍ଗୀ ନିକଟକୁ ଆସିଲା ମୁହଁ ତଳକୁ କରି ଏବଂ ବିନିତ ଓ ଅନୁତପ୍ତ କଣ୍ଠରେ କହିଲା-''ଆଜ୍ଞା ! ମୋତେ କ୍ଷମା କରନ୍ତୁ, ଆଜି ମୁଁ ଆପଣଙ୍କୁ ଆଘାତ ଦେଇଥିଲି।'' ଗାର୍ଗୀର ରାଗ ଓ ଘୃଣା ଧିମେଇ

ଆସିଲା । ସେ ଶୁଣିଥିବା କଟୂକ୍ତି ସମ୍ପର୍କରେ ପଚାରିବ ବୋଲି ଆଗ୍ରହୀ ହୋଇ ଉଠୁଥିଲା । କିନ୍ତୁ ଜେଜେମା'ଙ୍କର ଉପସ୍ଥିତି ତାକୁ ସେଥିରୁ ନିବୃତ୍ତ କଲା । ''ଆପଣ ନିଜର ଭୁଲ ବୁଝିପାରିଛନ୍ତି, ସେତକ ଯଥେଷ୍ଟ ।'' ତା'ର କଣ୍ଠ କ୍ଷମାବନ୍ତ ହୋଇ ଉଠିଲା । ଯୁବକ ଜଣକ ଆଉ କିଛି ନକହି ଧୀରେ ଧୀରେ ଚାଲିଗଲା । ଗାର୍ଗୀ ଜେଜେମା'ଙ୍କ ନିକଟକୁ ଗଲା ଏବଂ ପ୍ରଶ୍ନିଳ ଆଖିରେ ଅନେଇଲା । ଜେଜେମା ଗମ୍ଭୀର ଦେଖାଗଲେ । ଆଖି ତାଙ୍କର କଠୋର ହୋଇ ଆସିଲା । ''ଆଜି ତତେ ବିଦ୍ରୂପ କରିଥିବା ଏଇ ପିଲାର ପରିଣତି ଆହୁରି ଭୟଙ୍କର ହୋଇଥାଆନ୍ତା, କିନ୍ତୁ ସେ ମୋ ଗୋଡ଼ତଳେ ପଡ଼ି କାନ୍ଦିବାରୁ ଏତିକିରେ ଛାଡ଼ିଦେଲି !'' ଜେଜେମା'ଙ୍କ କଣ୍ଠ ଥିଲା ଦୃଢ଼ ।

-''ଏ କଥା ତମେ କେମିତି ଜାଣିଲ ଜେଜେମା ?'' ଗାର୍ଗୀ ପ୍ରଶ୍ନକଲା ।

''ସେତିକି ନୁହେଁ ଗାର୍ଗୀ, ବୈକୁଣ୍ଠ ସହ ବୁଲି ଯାଇଥିଲାବେଳେ ବି ତୋତେ ଖରାପ ଇଙ୍ଗିତ କରିଥିବା କଥା ବି ମୁଁ ଜାଣେ ।'' ଜେଜେମା' କହିଲେ ହାଲ୍କା ସ୍ୱରରେ । ସେତେବେଳେ କିନ୍ତୁ ମୁଁ ନୀରବ ରହିଛି, ଏଇଥିପାଇଁ ଯେ ମୁଁ ଚାହୁଁଥିଲି ତୁ ନିଜେ ତା'ର ସାମ୍ନାକର, ପ୍ରତିରୋଧ କର । ଆଜି ତୁ ପ୍ରତିବାଦ କରିବାର ସାହସ ବାନ୍ଧିଥିବାରୁ ସେ ଯୁବକର କ୍ଷମା ପ୍ରାର୍ଥନା ତୋର ପ୍ରାପ୍ୟ ।'' ଜେଜେମା' କହୁଥିବାବେଳେ ଗାର୍ଗୀ ତାଙ୍କ ମୁହଁରେ ଲକ୍ଷ୍ୟ କରୁଥିଲା ମଧ୍ୟାହ୍ନ ସୂର୍ଯ୍ୟର ଦୃଢ଼ତା । ''ପାନ ଦୋକାନରେ ଭିଡ଼ ଜମାଇଥିବା ସବୁ ପିଲା ଅଭଦ୍ର ଅଶିଷ୍ଟ ନୁହନ୍ତି । ସେଇମାନଙ୍କଠାରୁ ମୁଁ ଖବର ପାଇଥିଲି ।'' ଜେଜେମା ତାଙ୍କର କଥା ଶେଷ କଲେ ।

ଗାର୍ଗୀ ଧୀର ଭାବରେ କହିଲା-'ଜେଜେମା' ମୁଁ କାଲି ବାପାମା'ଙ୍କ ପାଖକୁ ଚାଲିଯିବି ବୋଲି ଭାବୁଛି ।''

''ବାପାମା'ଙ୍କୁ ଛାଡ଼ି ଜେଜେମା' ପାଖରେ ସବୁଦିନ ରହିବାକୁ କ'ଣ ସୁଖ ଲାଗିବ ?'' ଜେଜେମା'ଙ୍କ କଣ୍ଠ ଭାରି ହୋଇ ଆସିଲା । ଦୀର୍ଘଶ୍ୱାସରେ ନିଜ ଯନ୍ତ୍ରଣାକୁ ଉଜାଡ଼ି ଦେଇ ଜେଜେମା' ଗାର୍ଗୀକୁ ଧରି କହିଲେ: କାଲି ତ ଅଛି, ଏବେ ଚାଲିଲୁ ଜଳଖିଆ କରିବୁ । ପଲ୍ଲୀ ଆଜି ତୋ ପାଇଁ କଚୋଡ଼ି କରିଛି ।

x x x x x x x x x

: ବୈକୁଣ୍ଠ ! ସକାଳୁ ଗାର୍ଗୀ ଯିବ, ସବୁ ବନ୍ଦୋବସ୍ତ କରିଦବ । ବାପା ମା'ଙ୍କୁ ଛାଡ଼ି କୋଉ ଛୁଆ ଏତେଦିନ ଧରି ଜେଜେମା' ପାଖରେ ବାହାରେ ରହିପାରିବ ?'' ବେଶ୍ ଖୋଲା ସ୍ୱରରେ କହିଥିବା ଏ କଥାକୁ ଗାର୍ଗୀ ଶୁଣି ହେଉଥିଲା । ବାହାରେ ରାତି ବେଶ୍ ସ୍ୱାଭାବିକ, କିନ୍ତୁ ସେ ନିଜ ଅକ୍ତିଆରରେ ନାହିଁ । ନିଦ ନାହିଁ । ପେଣ୍ଡୁଲମ୍ ଭଳି ଚିନ୍ତା ଗୁଡ଼ିକ ଦୋହଲୁଛି । ଦୁଃଖ ଅଭିମାନ ହୀନ ଭାବରେ କେତେ ସହଜରେ ଜେଜେମା' ଏକଥା କହିଦେଲେ । ବର୍ଷ ବର୍ଷ ଧରି ଏକୁଟିଆ ପୁଅ, ବୋହୂ, ନାତି ନାତୁଣୀ ବନ୍ଧୁ

ବାନ୍ଧବଙ୍କ ସମ୍ପର୍କରୁ ବଞ୍ଚିତା 'ଏଇ ଜେଜେମା', ଲଢ଼ି ଚାଲିଛନ୍ତି ନିଜ ଜୀବନକୁ ନେଇ ଏ ବୟସରେ ! କାହାରି ପ୍ରତି ତାଙ୍କର ଅଭିଯୋଗ ନାହିଁ । ଅଭିମାନ ବି ନାହିଁ । ଆସିବା ପରଠାରୁ ଥରୁଟେ ହେଲେ ପଚାରି ନାହାନ୍ତି ପୁଅ, ବୋହୂଙ୍କ କଥା । ନାତି କଥା । ନାତୁଣୀକୁ ଯେତେବେଳେ ପାଖରେ ପାଇଛନ୍ତି, ଅଜାଡ଼ି ଦେଇଛନ୍ତି ସ୍ନେହ, ଆଦର ଓ ମମତାର ମୋତିସବୁ । ଛଳନା ନାହିଁ କି କୁଣ୍ଠା ନାହିଁ । ଏବଂ ଆଜି ଅତି ସ୍ୱାଭାବିକ ଭାବରେ ତା'ର ଫେରିଯିବାଟାକୁ ବି ଗ୍ରହଣ କରି ନେଇଛନ୍ତି । ବସ୍ତୁ ଜଗତର ବହୁ ନିୟମକୁ ସେ ବୁଝି ପାରିଛି, ଅଥଚ ମଣିଷ ଚରିତ୍ରର ଏଭଳି ବୈଷମ୍ୟକୁ ସେ ଅନୁଭବ କରିପାରୁଚି, କିନ୍ତୁ ବୁଝିପାରୁନି । ଜେଜେମା' ଜାଣିସାରିଛନ୍ତି ଯେ ତାଙ୍କ ସମ୍ପର୍କରେ ରଚିଥିବା ଗୁଜବକୁ ମୁଁ ଜାଣିସାରିଲିଣି, ସେଥିପାଇଁ ବୋଧହୁଏ ମୁଁ ଏଇଠି ଆଉ ବେଶିଦିନ ରହିବା ସେ ଚାହୁଁ ନାହାନ୍ତି ।

କିନ୍ତୁ ପ୍ରତିଟି ବସ୍ତୁର ଗଭୀରତମ ପ୍ରଦେଶରେ ଏକ କଂପନ, ଏକ ସୂକ୍ଷ୍ମସ୍ୱର ଥିଲା ପରି ଗାର୍ଗୀର ଅନ୍ତର ଭିତରେ କିନ୍ତୁ ଜେଜେମା' ପାଇଁ କରୁଣା ଓ ଭକ୍ତିର ସ୍ୱର ଗୁଣୁଗୁଣୁ ହେଉଥିଲା । ସବୁବେଳ ପାଇଁ ଜେଜେମା'ଙ୍କୁ ଜଣେ ଅପରାଧୀ, ଆସାମୀ ଭାବରେ ମନରେ ଧାରଣ କରି ସେ ଫେରିବାକୁ ଚାହୁଁ ନଥିଲା । ଆଦୌ ନୁହେଁ । ପ୍ରକୃତରେ ସେ ବା କାହିଁକି ବାପାମା'ଙ୍କ ନିକଟକୁ ଫେରିଯିବାକୁ ଚାହିଁଚି ? ସେଠି ମଣିଷ ସହ ମଣିଷର ସମ୍ପର୍କହୀନତା ଅଥଚ ଅନାତ୍ମୀୟ କୋଳାହଳ, ହୋ ହୋ ଘୋ ଘୋର ନିତ୍ୟ କର୍କଶ ଆକ୍ରମଣ ଆଉ ଏଠି ନିଜ ଦାୟିତ୍ୱକୁ ଏଡ଼େଇ ଦେଇ ମଣିଷର ଅଯଥା ଅତି-ସମ୍ପର୍କରେ କପଟ-ଆଚରଣ । ଅବଶ୍ୟ ଏଠି କିଛିଟା ନିସ୍ୱାର୍ଥପର କାର୍ଯ୍ୟର ପ୍ରତିଦାନ ଅଛି, ଅଛି କିଛିଟା ପ୍ରକୃତିର ଶାନ୍ତ କୋମଳ ଅବୟବ । କିନ୍ତୁ ସେ ସହରକୁ କାହିଁକି ଫେରିବ ? ଯୋଉଠି ଖାଲି ଗବେଷଣା ଓ ଜୀବନହୀନ ଗବେଷଣାର ଯନ୍ତ୍ର ପାଲଟିଥିବା ପରାଧୀନ ମଣିଷ । ଅର୍ଥ ଓ ବିଳାସ ସୂକ୍ଷ୍ମତା ରହିତ, ଆବେଗହୀନ ଯାନ୍ତ୍ରିକ ବିଳାସ । ଅଥଚ ଝୁଣ୍ଟି ପଡ଼ିଲେ ଆହା ପଦେ କରିବାକୁ ଅନ୍ୟମାନଙ୍କ କଥା ଦୂରେ ଥାଉ, ବାପା ମା' ଭାଇ ବି ଅସମର୍ଥ, କେବଳ ଡାକ୍ତରଙ୍କୁ ଫୋନ୍‌ଟେ କରିବା ବ୍ୟତୀତ !

ନା, ସେ ଜୀବନର ଶ୍ୱାସରୁଦ୍ଧ ପରିବେଶକୁ ପୁଣି ଫେରିବାର କାରଣଟିକୁ ମନରୁ ପୋଛି ଦବ ନାହିଁ । ଏକ ସନ୍ତୁଳିତ ହୃଦୟ ନେଇ ସେ କବାଟ ଖୋଲି ବାହାରକୁ ଆସିଲା । ବାରଣ୍ଡାରେ ଏପାଖ ସେପାଖ ଚଲାବୁଲା କଲା । ନିଶା ଗର୍ଜନର ଭାରା ବଢୁଥିଲା । ଜେଜେମାଙ୍କ କୋଠରିକୁ ସେ ଉହୁଁକି ଚାହିଁଲା । ଆଶ୍ଚର୍ଯ୍ୟ ହେଲା ସେ । ତାଙ୍କ କୋଠରିର ଦୁଆର ମେଲା, ଭିତରୁ ସୁଁ ସୁଁ କାନ୍ଦ । ଚଟ୍‌କରି ଗାର୍ଗୀ ଘର ଭିତରକୁ ପଶିଯାଇ ଲାଇଟ୍ ଅନ୍ କଲା ! ''କିଏ ? - ଚମକି ପଡ଼ିଲେ ଜେଜେମା' ଏବଂ ମୁହଁ ବୁଲାଇ ନେଇ ଲୁହ ଲୁଚାଇବାକୁ ଚେଷ୍ଟା କଲେ । ଗାର୍ଗୀ ଜେଜେମା'ଙ୍କ ନିକଟକୁ ଯାଇ ତାଙ୍କ ପାଖରେ ଖଟ ଉପରେ ବସିଲା । କହିଲା- 'ତମର କାନ୍ଦ ଶୁଣିଛି

ଢେଙ୍କେମା' । ଆସିଲା ପରଠାରୁ ତମେ ମୋର ଯତ୍ନ ନେଇ ଆସିଛ, ଆଜି ମୁଁ ତମର ସେବା କରିବି ।' ଏହା କହି ଗାର୍ଗୀ ଢେଙ୍କେମା'ଙ୍କର ପାଦ ଆଉଁସି ଦେଲା । ଏବଂ ତାକୁ ଏକ ବିଚିତ୍ର ଆନନ୍ଦ ଅନୁଭବ ହେଲା । ଅନ୍ୟର ସେବା କଲେ, ଅନ୍ୟର ଲୁହ ପୋଛିଦେଲେ ଏତେ ସନ୍ତୋଷ, ପବିତ୍ର ଲାଗେ ! ନିଜର ଦୁଃଖ, ଯନ୍ତ୍ରଣା ଏମିତି ଉଭେଇ ଯାଏ ? ସେବାର ଫଳ ସେବିତକୁ ଯେତେ, ସେବକକୁ ବି ସେତିକି ! ଆଃ, ଜୀବନର ଏଭଳି ଆନନ୍ଦ ଏଇ ତା'ର ପ୍ରଥମ ! ପାଦ ଆଉସୁ ଆଉଁସୁ ଗାର୍ଗୀ ଧୀର କଣ୍ଠରେ କହିଲା- ଢେଙ୍କେମା, ଗବେଷଣାଗାରରେ ଗବେଷଣାରେ ବୁଡ଼ିରହି ସୁଦ୍ଧା, ବାପା, ମା, ଦାଦା, ଖୁଡ଼ୀ, ଭାଇମାନଙ୍କ ପାଖରେ ରହି ସୁଦ୍ଧା ମୁଁ ଏକୁଟିଆ ହୋଇଗଲି, ଏତେ ଅସହାୟ ହୋଇଗଲି ଯେ ଏଠିକି ପଳାଇ ଆସିଲି । କିନ୍ତୁ ତମେ କେମିତି ଢେଙ୍କେମା' ଏତେବର୍ଷ ଧରି ଏଇଠି ଏକୁଟିଆ ରହିପାରିଚ, ମୋତେ ଆଶ୍ଚର୍ଯ୍ୟ ଲାଗୁଚି ।''

ଢେଙ୍କେମା'ଙ୍କ ମୁହଁ ଦେଖାଗଲା ବେଶ୍ ଅନୁଭୂତି ସମ୍ପନ୍ନ । ଏକ ଦାର୍ଶନିକଙ୍କ ଭଳି ସେ ଉତ୍ତର ଦେଲେ– ଏକୁଟିଆ ହେବା ଏକ ତପସ୍ୟା । ଏକୁଟିଆ ରହିବା ଆଉ ଏକୁଟିଆ ହୋଇଯିବାର ଦୁଃଖପୂର୍ଣ୍ଣ ଅନୁଭବକୁ ହେଜିବା– ଏ ଦୁଇଟା ଭିନ୍ନ କଥା । ସାଧୁ, ସନ୍ଥ, ସନ୍ୟାସୀମାନେ ବଣ, ପାହାଡ଼ ଗୁମ୍ଫାକୁ ଚାଲିଯାଇ ତପସ୍ୟା କରନ୍ତି ଏକୁଟିଆ । କବି, ଲେଖକ, ଶିଳ୍ପୀମାନେ ସାଧନା କରନ୍ତି ଏକାଏକା । କିନ୍ତୁ ସେମାନଙ୍କର ଏକୁଟିଆ ହୋଇଯିବାର ଦାରୁଣ ଯନ୍ତ୍ରଣା ନଥାଏ । ସେଇଭଳି ମୁଁ କେବେ ଏକୁଟିଆ ହୋଇ ଯାଇଥିବାର ଅନୁଭବ କରିନାହିଁ ଗାର୍ଗୀ ! ଶେଷ ଆଡ଼କୁ କିନ୍ତୁ ତାଙ୍କର କଣ୍ଠ ଥିଲା ଭାରି ଭାରି ।

ଗାର୍ଗୀ ଆବେଗପୂର୍ଣ୍ଣ ହୋଇ ଉଠିଲା । ପ୍ରଶ୍ନ କଲା– ଢେଙ୍କେମା' ! ତା' ହେଲେ ତମେ କାନ୍ଦୁଥିଲ କାହିଁକି ? ସତ କୁହ ! ଗାର୍ଗୀର ଏଇ ପ୍ରଶ୍ନ ପରେ ଢେଙ୍କେମା'ଙ୍କ ଆଗରେ ସତେ ଯେମିତି ଏକ କାନ୍ଦଝଡ଼ ବୋହିବାରେ ଲାଗିଲା । କିଛି ସମୟ ତାଙ୍କର ଆଖି ମୁଦି ହେଇଆସିଲା । ସେ ଧିମା ସ୍ୱରରେ କହିଲେ– 'ଗାର୍ଗୀ, ବାଇଶିବର୍ଷ ହେଲା ଦୁଇପୁଅ, ଦୁଇବୋହୂ, ନାତି ନାତୁଣୀ ମୋତେ ଏକୁଟିଆ କରିଦେବାକୁ ସବୁବେଳେ ଚେଷ୍ଟା କରିଆସିଛନ୍ତି, ତା'ର କାରଣଟା ତୋତେ ଅଜଣା ନୁହେଁ ! ଢେଙ୍କେମା' ଦୀର୍ଘଶ୍ୱାସ ଛାଡ଼ି ପୁଣି ଆଗେଇଲେ– 'ଯେଉଁ କାରଣରୁ ଆଜି ମୋର ନାତୁଣୀ ବି ମୋତେ ଏକୁଟିଆ କରିଦେବାକୁ ବସିଛି ।''

:''ତମେ ଭୁଲ୍ କହୁଚ ଢେଙ୍କେମା, ତମର ପୁଅ ବୋହୂମାନେ ବି ଖୁବ୍ ଏକୁଟିଆ । ଆଉ ନାତି ନାତୁଣୀମାନେ ଜନ୍ମରୁ ଏକୁଟିଆ । ଗାର୍ଗୀ ଉଦାସ ହେଇ ଆସିଲା । ଏବଂ ଉଠିପଡ଼ି ଢେଙ୍କେମା'ଙ୍କ ମଥାକୁ ଆଉଁସୁ ଆଉଁସୁ ଖୁବ୍ ଧୀର ଭାବରେ ପ୍ରଶ୍ନ କଲା– ''ଢେଙ୍କେମା', ତମ ମନରେ ମୁଁ ଦୁଃଖ ଦେବାକୁ ଚାହେଁନି; କିନ୍ତୁ ସେଇ କାରଣଟି,

ସେଇ ଘଟଣାଟି କ'ଣ ଯେ ଯାହା ଆମ ପରିବାରକୁ ଏମିତି ବିଦ୍ରୂପ, ପରିହାସ କରୁଛି, ସେଇଟା ମୁଁ ଜାଣିବାକୁ ଚାହେଁ । ମୋତେ କହିବନି ?''

ଜେଜେମା' ନୀରବି ଗଲେ । ତାଙ୍କର ଆଖି ଡ଼ିମା ଡ଼ିମା ହେଇଗଲା । ଅତୀତର ଫର୍ଦ୍ଦସବୁ ନେଉଟୁଥିଲା ଧୀରେ ଧୀରେ ତାଙ୍କ ସାମ୍ନାରେ । ବ୍ୟାକୁଳ କଣ୍ଠରେ କହିଲେ– ''ସେ କଥା ସମସ୍ତେ ଜାଣନ୍ତି ଗାର୍ଗୀ, କିନ୍ତୁ ସେଇଟା ସମସ୍ତଙ୍କ ବିଶ୍ୱାସର ବାହାରେ ରହିଯାଇଚି । ଆମର ପରମ୍ପରା ଏମିତି ଏକ ସ୍ୱାଭାବିକ ବିଶ୍ୱାସ ସୃଷ୍ଟି କରିଛି ଯେ ତା ବାହାରେ ଥିବା ପ୍ରକୃତ ସତ୍ୟ ନିଜକୁ ବଞ୍ଚାଇ ପାରେନି । ତେଣୁ ଅଯଥା ବିଦ୍ରୂପ, ପରିହାସକୁ ଏ ପରିବାର ସହି ଚାଲିଛି ।''

: ତୁମର ନାତୁଣୀ ହିସାବରେ ମୋତେ ସେ ସତ୍ୟରୁ ବଞ୍ଚିତ କରନା ଜେଜେମା' । ସେ ସତ୍ୟ ମୋ ପାଇଁ ଗର୍ବ ହେଉ, କିମ୍ବା ଅଭିଶାପ ହେଉ, ମୁଁ ମୋ ନିଜ ଭିତରେ ଆଗ ମୁକ୍ତ ହୁଏ । ବିଦ୍ରୂପ, ପରିହାସରୁ ତ୍ରାହି ନ ପାଇଲେ ବି ଆତ୍ମଦୈନ୍ୟରୁ ତ୍ରାହି ପାଏ !''

x x x x x x x x x

''ମୁଁ ଯେଉଁ ପରିବାରରେ ଜନ୍ମ ହେଇ ବଡ଼ ହେଲି, ସେ ପରିବାର ଥିଲା ସ୍ୱାଧୀନଚେତା । ବାପା ଜମିଦାର ଥିଲେ ବି ଭାରତର ସ୍ୱାଧୀନତା ସଂଗ୍ରାମକୁ ତାଙ୍କର ଥିଲା ପ୍ରତ୍ୟକ୍ଷ ପ୍ରୋତ୍ସାହନ । ମୁଁ ମଧ୍ୟ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଆମ ଘରେ ଚର୍ଚ୍ଚା କରୁଥିଲି । ସେମାନଙ୍କର କାର୍ଯ୍ୟକଳାପ ଦ୍ୱାରା ପ୍ରଭାବିତ ହେଉଥିଲି । ମୋର ଶଶୁରଙ୍କ ସହ ବାପାଙ୍କର ସମ୍ପର୍କ ଥିଲା ଅନ୍ତରଙ୍ଗ । ଶଶୁର ବି ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସବୁକ୍ଷେତ୍ରରେ ସାହାଯ୍ୟ କରୁଥିଲେ । ଆବଶ୍ୟକ ପଡ଼ିଲେ ଏଇ ଉଆସର ଗୁପ୍ତଘରେ ସେମାନଙ୍କର ବଂଧୁକ ଗୁଳି ଇତ୍ୟାଦି ଅସ୍ତ୍ରଶସ୍ତ୍ର ଲୁଚାଇ ରଖୁଥିଲେ । ତୋ ସାଆନ୍ତଙ୍କର ବିବାହର ବର୍ଷକ ଯାଉଣୁ ନ ଯାଉଣୁ ଗୋସେଇଁ ସାଆନ୍ତଙ୍କର ମୃତ୍ୟୁ ହୋଇଗଲା । ଶଶୁରଙ୍କ ମୃତ୍ୟୁ ପରେ ତୋ ସାଆନ୍ତ ଅତ୍ୟଧିକ ଲୋଭ ଆଉ କ୍ଷମତାର ଲାଳସାରେ ଇଂରେଜମାନଙ୍କର କ୍ରୀଡ଼ନକ ହୋଇଗଲେ । ଚତୁର ଶାସକ ତୋ ସାଆନ୍ତ ଆଉ ତାଙ୍କର ଲୋଭୀ ସମର୍ଥକଙ୍କ ଦ୍ୱାରା ସଂଗ୍ରାମୀମାନଙ୍କୁ ଗିରଫ କରିବା, ସେମାନଙ୍କର ଆନ୍ଦୋଳନକୁ ଭଣ୍ଡୁର କରିବା ଲାଗି ଚକ୍ରାନ୍ତ ଚଳେଇଲେ । ସାଧାରଣ ଲୋକେ ବି ଅତ୍ୟାଚାରିତ ହେବାକୁ ଲାଗିଲେ ।

ମୁଁ ଆଉ ସହିପାରିଲିନି । ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଗୁପ୍ତରେ ସବୁ ଖବର ଜଣାଇଲି । ପରୋକ୍ଷରେ ସେମାନଙ୍କୁ ସାହାଯ୍ୟ କଲି । କିନ୍ତୁ ବେଶିଦିନ ତାହା ଆଉ ଅଛପା ରହିଲାନି । ଆମ ସ୍ୱାମୀ ସ୍ତ୍ରୀଙ୍କ ଭିତରେ ମତଭେଦ ଲାଗିରହିଲା ସିନା, ସେ କିନ୍ତୁ ମୋ ବିରୁଦ୍ଧରେ କୌଣସି କଠିନ କାର୍ଯ୍ୟ କରିପାରୁ ନଥିଲେ ।

ସେ ଦିନ ରାତି । ଏ ଗାଁଠୁ ତିନିମାଇଲ ଦୂର ଜଂଗଲରେ ସଂଗ୍ରାମୀମାନଙ୍କର ଏକ ଗୁପ୍ତ ବୈଠକ ବସି ଆଲୋଚନା ଚାଲୁଥିଲା । ସେ ବୈଠକରେ ରାଜ୍ୟ ଓ ରାଜ୍ୟ ବାହାରର ବହୁ ବିଶିଷ୍ଟ ବିପ୍ଳବୀ, ସେନାପତିମାନେ ମିଳିତ ହେଉଥିଲେ । ଏ ଗୁପ୍ତ ଖବର ମୁଁ ଜାଣିଥିଲି । କୌଣସି ସୂତ୍ରରୁ ତୋ ସାଆନ୍ତ ବାପା ବି ସେ ଖବରଟି ପାଇଗଲେ । ଏହା ଥିଲା ତାଙ୍କ ପାଇଁ ଏକ ଅପୂର୍ବ ସୁଯୋଗ । ଶାସକ ଓ ପୋଲିସ ବର୍ଗଙ୍କୁ ଜଣାଇ ଫୌଜମାନଙ୍କ ଦ୍ୱାରା ସଂଗ୍ରାମୀମାନଙ୍କୁ ଗିରଫ କରିବା ବା ବନ୍ଧୁକ ମୁନରେ ଶେଷ କରିଦବାର ନିଶାରେ ସେ ହାତରେ ପିସ୍ତଲ ଧରି ଆଗେଇଲାବେଳେ ମୁଁ ତାଙ୍କର ପଥରୋଧ କଲି । ଏଭଳି ଏକ ଗୁରୁତର ଦେଶଦ୍ରୋହୀ କାର୍ଯ୍ୟ ନ କରିବା ଲାଗି ବହୁତ ବୁଝାଇଲି । କିନ୍ତୁ ସେ ସବୁ ନିଷ୍ଫଳ ହେଲା । ସେ ନିଜ ଜିଦ୍‌ରେ ଅଟଳ ହେଇ ଆଗେଇଲା ସମୟରେ ମୁଁ ତାଙ୍କ ସାମ୍ନାରେ ଛିଡ଼ାହେଲି । ସେ ଥିଲା ଏକ ବହୁ ମୂଲ୍ୟବାନ ମୁହୂର୍ତ୍ତ । ସେ ମୁହୂର୍ତ୍ତରେ ମୋର ପରାଜୟ ଥିଲା ବହୁ ତୁଙ୍ଗ ଦେଶଭକ୍ତଙ୍କର ଜୀବନ ମରଣର ଘଡ଼ି । ତୋର ସାଆନ୍ତ ବାପା କିନ୍ତୁ ପିସ୍ତଲ ଧରି ଆଗେଇ ଆସୁଥିଲେ ଗର୍ଜି ଗର୍ଜି– ''ସେମାନଙ୍କୁ ଶେଷ କରିବା ପାଇଁ ମୋର ସ୍ତ୍ରୀକୁ ଯଦି ଜୀବନରୁ ହଟେଇବାକୁ ଆବଶ୍ୟକ ପଡ଼େ ତା'ହେଲେ ବି ମୁଁ ପଛେଇ ଯିବି ନାହିଁ ।'' ଏଥିରୁ ମୋର ଉପଲବ୍ଧି ହେଇଗଲା ତାଙ୍କର ଲାଳସା ଓ ଲୋଭର ଓଜନ ତାଙ୍କ ସ୍ତ୍ରୀର ଜୀବନଠାରୁ ବି ବେଶି ! ସେଇଠୁ ମୁଁ ବି ଦୃଢ଼ ହେଇଗଲି । ମରିବି ପଛେ ତାଙ୍କୁ ଯିବାକୁ ଦେବିନି । ସେତେବେଳେ ମୁଁ ଅନୁଭବ କଲି ନାହିଁ ଯେ ସେ ମୋର ବିବାହିତ ସ୍ୱାମୀ । ସେ ମୋର, ଏ ଦେଶର, ଏ ମାଟିର ଶତ୍ରୁ ବୋଲି ମୋର ଦୃଢ଼ ପ୍ରତ୍ୟୟ ହେଲା । ତାଙ୍କୁ ଅଟକାଇବାକୁ ଯାଇ ଆମେ ଦୁହେଁ ଟଣା ଓଟରା, ଧସ୍ତାଧସ୍ତି ହେଉ ହେଉ ରିଭଲଭଲ୍‌ରୁ ଫାୟାରିଂ ହେଇଗଲା ଏବଂ ତୋର ଜେଜେବାପା ସେଇଠି ଟଳି ପଡ଼ିଲେ । ଏ ସମ୍ପର୍କରେ କୋର୍ଟରେ କେଶ୍ ହେଲା ବି । ମୁଁ ଯେ ତାଙ୍କୁ ହତ୍ୟା କରି ନାହିଁ, ଏକଥା ପ୍ରମାଣିତ ହେଲା ଭାରତର ସ୍ୱାଧୀନତା ପରେ । କିନ୍ତୁ ସମାଜରେ, ଦୁନିଆରେ ବହୁତ ବହୁତ କଥା ଶୁଣାଗଲା । ଶୁଣାଗଲା କିସମ କିସମ୍‌ର ଗୁଜବ । ବରାହ ଆଉ ମିହିର ସେତେବେଳକୁ ଖୁବ୍ ଛୋଟ । ମୁଁ ଏ ଦୁନିଆରେ ସ୍ୱାମୀଘାତିନୀ ଅପବାଦ ନେଇ ରହିଗଲି ।

ଜେଜେମା'ଙ୍କ ଆଖି କୋଣରେ ଲୁହ ଭରି ଆସୁଥିଲା । ସେ କୋହ ଚାପି ପୁଣି କହିଲେ– ''ସେଥିପାଇଁ ମୋର ଦୁଃଖ ନାହିଁ । କାରଣ ମୋ କର୍ତ୍ତବ୍ୟ ମୁଁ ଠିକ୍ କରିଛି । ମୋର ସନ୍ତାପ ଏତିକି ସେଇ ଟଣା ଓଟରାରେ ତାଙ୍କର କାଳ ହୋଇଗଲା ।'' ସେ ନୀରବି ଗଲେ । ଗାର୍ଗୀ ସାମ୍ନାରେ ସେ ଦେଖାଯାଉଥିଲେ ଜଣେ ମହିମାମୟୀ ଦେବୀ ଭଳି । ତାଙ୍କୁ ସନ୍ଦେହ କରିଥିବାର ଗ୍ଲାନିରେ ଗାର୍ଗୀ କଇଁ କଇଁ କାନ୍ଦି ଉଠିଲା । ଏବଂ ପଚାରିଲା– ''ତଥାପି ତ ତମେ ଜେଜେବାପାଙ୍କୁ ପ୍ରତିଦିନ ପ୍ରଣାମ କରୁଛ, ତାଙ୍କ ତୈଳଚିତ୍ରରେ ନିତି ଫୁଲମାଳ ଚଢ଼ାଉଚ ?''

·: ହଁ ଗାର୍ଗୀ, ସେ ମୋର ସ୍ୱାମୀ, ତମର ଜେଜେବାପା । ତାଙ୍କ ଆତ୍ମା ଶାନ୍ତି ପାଉ, ଏ କାମନା ମୁଁ ପ୍ରତିଦିନ କରେ ।'' ଜେଜେମା' ଉତ୍ତର କଲେ ।

x x x x x x x x x

ଭୋଅରୁ ଜେଜେମା' ଉଠିଲା ବେଳକୁ ଗାର୍ଗୀ ସହରକୁ ଯିବାକୁ ପ୍ରସ୍ତୁତ ହେଉଥିଲା । ଜେଜେମା' ଆଶ୍ଚର୍ଯ୍ୟ ହେଲେ ପ୍ରଥମେ । ପରେ ପରେ ଉଦାସ ହୋଇଗଲେ । ଖୁବ୍ ଉଦାସ । ସମ୍ଭାଳି ନ ପାରି ସେ ଗାର୍ଗୀକୁ ଧରି ପକାଇ କାନ୍ଦି ପକାଇଲେ । ଅନୁନୟ ଭରା କଣ୍ଠରେ ପ୍ରଶ୍ନକଲେ—ତୁ ଚାଲିଯିବୁ ଗାର୍ଗୀ, ମୋତେ ଏକୁଟିଆ କରିଦେଇ ତୋ ବାପ ଦାଦା ଭଳି ?

ଦୀର୍ଘଶ୍ୱାସଟିଏ ଛାଡ଼ି ଗାର୍ଗୀ ଉତ୍ତର କଲା— ହଁ ଜେଜେମା', ମୁଁ ଯିବି । ଏତେବଡ଼ ତ୍ୟାଗ କରି ବି ତମେ ଏକୁଟିଆ ହୋଇ ରହିଛ । ଏତେ ବଡ଼ କମ୍ପାନୀର ମାଲିକ ହୋଇ ବାପା ଏକୁଟିଆ । ରାଜ୍ୟର ଜଣେ ବଡ଼ ରାଜନୈତିକ ନେତା ହୋଇ ଦାଦା ବି ନିଜକୁ ଏକୁଟିଆ ଅନୁଭବ କରୁଛନ୍ତି । ବିଜ୍ଞାନର ଗବେଷଣାଗାର ଭିତରେ ବି ମୁଁ ନିଜକୁ ଏକୁଟିଆ ଅନୁଭବ କରୁଛି । ଆମେ ସମସ୍ତେ ଯଦି ଏମିତି ଏକୁଟିଆ ଏକୁଟିଆ, ତା'ହେଲେ ଏ ସବୁର ମୂଲ୍ୟ କ'ଣ ? ଅର୍ଥ କ'ଣ ? ତୁମ ସଂଗ୍ରାମର, ବାପାଙ୍କ ବ୍ୟବସାୟର, ଦାଦାଙ୍କ ରାଜନୀତିର, ମୋ ଗବେଷଣାର ? ମଣିଷ ମଣିଷ ସମ୍ପର୍କ ଯଦି ଶ୍ରଦ୍ଧା ଓ ମମତାରେ ଓଦା ହେଲାନି ? ମୁଁ ଯିବି ଜେଜେମା', ଫେରିଯିବି ବାପା, ମା'ଙ୍କ ପାଖକୁ, ଗବେଷଣାଗାରକୁ ନୁହେଁ । ବାପା, ଦାଦାଙ୍କୁ କହିବି ତାଙ୍କ ମା'ଙ୍କ ପାଖକୁ ସେ ଦୁହେଁ ବି ଫେରିବେ !'' ଜେଜେମା ସେଇମିତି ନୀରବ ଥିଲେ ।

କାରରେ ଚଢ଼ିବା ପୂର୍ବରୁ ଗାର୍ଗୀ ଜେଜେମା'ଙ୍କ ପାଦଧୂଳି ନେଇ ମୁଣ୍ଡରେ ଲଗାଉ ଲଗାଉ କହିଲା— ''ଆଉ ଏକୁଟିଆ ତମେ ରହିବନି ଜେଜେମା' । ତା' ମୁଁ କରାଇ ଦେବିନି ।'' ଏତକ କହି ଗାର୍ଗୀ ଚାଲିଗଲା ।

କାର୍ ଷ୍ଟାର୍ଟ କରି ଯିବାକୁ ଆରମ୍ଭ କଲା ସମୟକୁ ଜେଜେମା'ଙ୍କ ଆଶୀର୍ବାଦର ହାତ ଉପରକୁ ଉଠି ଯାଇଥିଲା ଓ ଆଖି କୋଣରୁ ଦୁଇଟୋପା ଲୁହ । ମନକୁ ମନ ତାଙ୍କ ପାଟିରୁ ବାହାରି ଆସିଥିଲା— ଏକୁଟିଆ ହୋଇଥିଲେ ଏ ଲୁହ ଆସନ୍ତା କେଉଁଠୁ ?

■ ■ ■

(ଗଳ୍ପ- ପୂଜା ୧୯୯୪)

# ଛାନି

ରୂପା ମା' କଳମ ଶାଗ ଗୋଛାଏ କେଉଁଠୁ ଆଣି ଘରେ ଥୋଉ ଥୋଉ ରୂପାକୁ କହିଲା- ଚାଲ୍, ଚାଲ୍, ଭରତ ବାବୁ ଆଇଚନ୍ତି, ଡକେଇଚନ୍ତି । ଭରତବାବୁକୁ ମୁଁ କହିଦେଇଚି ଦରମା ଆଉ ନ ବଢ଼ାଇଲେ ନ ହୁଏ ! ବୁଢ଼ାବୁଢ଼ୀ ଆଉରି ଅଚଳ ହେଇ ଆସିଲେଣି । ଘୁଅ ମୁତ ହେଲେଣି । ଖାଇବା ପିଇବା ନିଜ ହାତରେ ହେଇପାରୁନି ଠିକ୍ ଠିକ୍ । ଏଣିକି ବାପ, ମା'ଙ୍କୁ ନେଇଯାଆନ୍ତୁ ମାଡ୍ରାସ୍ ! ସେଠି ପୁଅ ବୋହୂ ନାତି ନାତୁଣୀଙ୍କ ମେଳରେ ରହିବେ । ହସ-ଖୁସି, ହାଉଯାଉ, ଗେଲ କଉତୁକ, ନା କ'ଣ କହୁଚୁ କହନି ! ବୁଢ଼ାବୁଢ଼ୀ ଦି'ଜଣଙ୍କ ପାଇଁ ଚାରିଟା ଲୋକ ପୋଷା । ରିକ୍ସା ଆଉ ରିକ୍ସାବାଲା ପରିଆ, ବାଡ଼ିଘର ଜମିବାଡ଼ି କ୍ଷେତ ଫସଲ ପାଇଁ ବୁଢିଆ, ବୋଲହାକ, ବାସନ ମଜା, ଅଇଁଠା କଇଁଠା ପାଇଁ ପେଟା ! ବୁଝିଲୁ ରୂପା, ତୁ ସିଧାସିଧା କହିବୁ : ତିନିଶ ଟଙ୍କାରେ ଆଉ କାମ କରି ହବନି ସକାଳଠୁଁ ରାତିଯାଏ ! ଆଉ ପଚାଶ ବଢ଼ାଇଦିଅନ୍ତୁ ! ରୂପା ମା' କହୁଥାଏ । ରୂପା ଶୁଣୁ ଶୁଣୁ ବାହାରକୁ ଆସି ଜଞ୍ଜିର ଓ ଚାବି ଦେଲା । ମା' ଝିଅ ଦିହେଁ ଗାଁ ଦାଣ୍ଡରେ ଚାଲିଲେ । ରୂପା ମା' ଦୋକତାରେ ଚୂନ ଦଳୁ ଦଳୁ ପୁଣି କହିଲା- ହଁ ଲୋ ରୂପା । ସେ ଦରବୁଢ଼ାଟା, ମଦନା ମ, ଆଇଥିଲା । ତୋତେ ଖୋଜୁଥିଲା । ମୁଁ ପଚାରିଲାରୁ କହିଲା- ରୂପା ପାଇଁ ବଜାରରେ ନୂଆ କରି ଖୋଲିଥିବା ଔଷଧ କାରଖାନାରେ ଚାକିରିଟେ ଠିକ୍ କରିଛି । ସେ ଦିନକୁ କୋଡ଼ିଏ ଟଙ୍କା ଲେଖାଁ ଦବ । ତୁ ତାକୁ ଚାକିରି କଥା କହିଥିଲୁ କି ? ସେ ଦରବୁଢ଼ାକୁ ? 'ଦରବୁଢ଼ା' ଶବ୍ଦ ଉପରେ ବେଶି ଜୋର୍ ଦେଲା ରୂପା ମା' ।

ରୂପା କିଛି କହୁ ନଥାଏ । ଚାଲିଥାଏ । ରୂପା ମା' ପୁଣି ଦୋହରାଇଲା- ତୁ କ'ଣ ସତକୁ ବଜାରକୁ ଯିବୁ ? ଫେକ୍ଟେରୀରେ କାମ କରିବୁ ?

: ଏତେ କଥା ତୁ ବୁଝିବା ଦରକାର ନାହିଁ ! ଏତକ କହିଲା ରୂପା । ଭରତର ଘର ଆସିଗଲାରୁ ରୂପା ମା' ଏକପ୍ରକାର ଧାଇଁଗଲା ରୂପାର ଅତି ନିକଟକୁ । ତା'

ହାତକୁ ଧରି ଅଟକାଇ କାନରେ କହିଲା- 'ପଚାଶ ନୁହେଁ, ଶହେ କଥା କହିବୁ, ବୁଝିଲୁ ?'

ଭରତ ଖାଇ ବସିଥିଲା । ରୂପା ଆଣ୍ଠୁନୋଇଁ ପ୍ରଣାମ କଲା ଏବଂ ତରତର କରି ହାଣ୍ଡିଶାଳ ଭିତରକୁ ପଶି ଯାଉ ଯାଉ ଭରତ ମା' ସର କହିଲା- ''ମୁଁ ସବୁ ବାଢ଼ି ଦେଇଚି । ଆଉ କେତେବେଳେ କ'ଣ ଦରକାର ଦେବୁ ।''

ସରବୁଢ଼ୀ କେତେ ଖୁସି ହେଉଚି ସତରେ ! ପୁଅକୁ ଖୁଆଇ ପିଆଇ ମାଆର କି ଆନନ୍ଦ ! ନିଜେ ବରଂ ଭାତଗଣ୍ଡେ ଫୁଟାଇପାରୁ ନାହିଁ କି ଚା'ଟେ ତିଆରି କରିପାରୁ ନାହିଁ । ଭରତର ବାପା ଜଗନ୍ନାଥ ପଥର ହେଇ ଆସୁଚି । କାନକୁ ଭଲକି ଶୁଭୁନାହିଁ କି ଆଖିକୁ ଭଲକି ଦିଶୁନାହିଁ । ପୁଅ ଆଣିଥିବା ଅଙ୍ଗୁରକୁ ନିଜେ ଚିପି ସେଥିରୁ ମଞ୍ଜି କାଢ଼ି ପକାଇ ପାଟିରେ ପକାଉଚି । ମୁହଁରୁ ଆନନ୍ଦର କିରଣ ଝଲସି ଉଠୁଚି । ଏଭଳି ଆନନ୍ଦ, ଏଭଳି ତୃପ୍ତି ଶହେ ଚାକର ଚାକରାଣୀ ଖଟିଲେ ମିଳିବ କି ?

ଖାଉ ଖାଉ ଭରତ କହିଲା- ରୂପା ! ତୁ ଆମର ଝିଅ ବି, ମାଆ ବି । ବାପା, ବୋଉର ଦାୟିତ୍ୱ ତୋ ଉପରେ । ତୁ ଏ ଘରର ମୁରବୀ କହିଲେ ଚଳେ । ମୁଁ କଲିକତାରୁ ଏଇ ବାଟେ ଫେରିଲି ତ, ବାପା ବୋଉଙ୍କୁ ଦେଖିବାକୁ ଏଇଠି ଓହ୍ଲେଇ ପଡ଼ିଲି । ମୁଁ ଆଜି ରାତିରେ ହିଁ ମାଡ୍ରାସ୍ ଫେରିଯିବି । ତୋ ମା' ତୋ ପାଇଁ ଗୋଟେ ଡ୍ରେସ୍, ତୋ ବୋଉ ପାଇଁ ଗୋଟେ ଶାଢ଼ି ପଠେଇଚି । ବୋଉ କହୁଥିଲା ତୋ ଦରମା ବିଷୟରେ ତୁ ଅସନ୍ତୁଷ୍ଟ ! ବୁଢ଼ିଆ ବି ସେମିତି ଚିଠିଟେ ଲେଖିଥିଲା । କ'ଣ ଚାହୁଁଛୁ, ଖୋଲିକି କହୁନୁ ! ଯା' କହି ରୂପା ଆଡ଼କୁ ଲୁଗା ଥିବା ଜରିଖୋଳଟାଏ ବଢ଼ାଇଦେଲା ।

: ଆମର ବଅସ ଯେତେ ବଢୁଛି, ଆମେ ସେତେ ବୁଢ଼ାବୁଢ଼ୀ ହେଇଯାଉଚୁ, ସେତେ ଅକର୍ମଣ୍ୟ ହେଇ ଆସୁଛୁ । ରୂପା ଉପରେ କାମର ଭାର ତେଣୁ ଧୀରେ ଧୀରେ ବଢ଼ିଯାଉଚି । ସେଥିପାଇଁ ମୁଁ ଭରତକୁ କହୁଚି ଦରମା କିଛି ବଢ଼େଇଦଉ ରୂପାର । ସରବୁଢ଼ୀ ରୂପା ମା'କୁ ଅନେଇ କହିଲା ।

ଆଗ୍ରହ ଆଖିରେ ରୂପା ମା' ରୂପାକୁ ଚାହିଁଲା । ରୂପା ମୁହଁ ତଳକୁ କରି କହିଲା ''ବାବୁ ! ଆପଣ ଆସିଲେ, ନ ହେଲେ ମୁଁ ଚିଠି ପଠେଇଥାଆନ୍ତି । ମୁଁ ଆଉ ଏଠି କାମ କରିବି ନାହିଁ । ଔଷଧ କାର୍ଖାନାରେ କାମ କରିବି ବୋଲି ଠିକ୍ କରିଛି ।''

ଏତକ କହିଲାବେଳକୁ ସମସ୍ତେ ଚିହିଁକି ଉଠିଲେ । ଭରତ ଆସି ଖବର ପଠାଇବାରୁ ରିକ୍ସାବାଲା ପରିଆ, ମୂଲିଆ ବୁଢ଼ିଆ, ବୋଲହାକ କରୁଥିବା ପେଟା, ଠାକୁର ପୂଜାରୀ ସର୍ବେଶ୍ୱର ସମସ୍ତେ ଆସି ପହଂଚି ଯାଇଥିଲେ । ରୂପାର ଏକଥା ଶୁଣି ସମସ୍ତେ ହତବାକ୍ ହେଇଗଲେ । ରୂପା ମା' ଚିହିଁକି ଉଠିଲା- କ'ଣ କହିଲୁ, ଦୁଧ ଭାତ ତୋତେ ଜିଭ କୁଂଡ଼େଇ ହଉଚି, ନାଇଁ ? ଏଠି ଘରର ଝିଅ ହେଇ ରୋଷେଇବାସ ସଂଭାଳି ଦରମା

ପାଉଚୁ, ଖାଉଛୁ, ପିଉଛୁ, ଲୁଗାପଟା, ପାଉଡ଼ର ଅଳତା ସବୁ ପାଉଛୁ; ତୋ ମାଆ ଆସି ଚା' ପାଣି, ମୁଢ଼ି ଦୋକତା ସବୁ ନେଉଛି, ଘର ଛପର ପାଇଁ ବାଉଁଶ, କୁଟା, ଯାବତୀୟ ଘରକରଣା ପାଉଚେ, ଏସବୁ ତୋତେ ବାଂତି ଲାଗିଲା ଯେ ଝିଅଛୁଆ ବଜାରକୁ ଯିବୁ ଫେକ୍ଟେରୀକୁ ? ସେଠୁ ମାସକୁ ପାଁଶ ଛଅଶ ପାଇବୁ କି ନା, ପୁଣି ଏ ଯେଉଁ କାଳବେଳ, କେତେବେଳେ କୋଉ ବିପଦ୍, ନା, ନା, ସେ କଥା ହେଇ ପାରିବ ନାହିଁ, ହରଗିଜ୍ ହେଇ ପାରିବ ନାହିଁ, ତୁ ସେ ଫେକ୍ଟେରୀ କଥା ନାଁ ଧରିଲେ, ମୁଁ ମୋ ମୁଣ୍ଡ ବାଡ଼େଇ ଦେବି ରୂପା ! ଏତକ କହି ଏକଦମ୍ ଚୁପ୍ ରହିଗଲା ରୂପା ମା' ।

ରୂପା ମନରେ କୌଣସି ପ୍ରତିକ୍ରିୟା ହେଲାନି । ସେ ଦୃଢ଼ ଥିଲା । ତା' ମୁହଁ ସ୍ପଷ୍ଟ ଥିଲା । ଭରତ, ତା' ମା' ସମେତ ଅନ୍ୟ ସମସ୍ତଙ୍କର ମୁହଁ ଭାରି ହେଇଗଲା । ଭରତ ଖାଇସାରିଥିଲା । ସେ ଉଠିପଡ଼ି ମୁହଁ ଧୋଇଲା । ସମସ୍ତେ ଚୁପ୍ ଚାପ୍ । ମୁହଁ ଧୋଇସାରି ସେ ପିଣ୍ଡା ଉପରେ ପଡ଼ିଥିବା ଆର୍ମଚେୟାରରେ ବସିପଡ଼ିଲା । ସମସ୍ତେ ନିଜ ନିଜକୁ ପ୍ରଶ୍ନ କରୁଥିଲେ : ଏ ଘରେ ରୂପାର କିଛି ଅସୁବିଧା ହେଲା କି ? ପର ଘରର ଝିଅ । ପୁଣି ବଢ଼ିଲା ଝିଅ । ଆଉ ଗୋଟେ ସାଇରୁ ଆସି ଏଠି ଘର ତୁଲାଉଛି । ବାପ୍‌ରେ ! କ'ଣ କିଛି ସୁବିଧା ଅସୁବିଧା ହେଲା କି ? ଏଠି କାମ ନକରି, ବଜାରରେ ଫ୍ୟାକ୍ଟ୍ରୀରେ କାମ କରିବାକୁ ଚାହିଁଛି, କାହିଁକି ଯେ ?

ଭରତ ପୁଣି ଗହୀରେଇକି ଚାହିଁଲା ରୂପାକୁ । ରୂପା ସେମିତି ସ୍ଥିର । ସମସ୍ତଙ୍କ ମୁହଁରେ ପ୍ରଶ୍ନ । ପୁଣି ଦ୍ୱନ୍ଦ୍ୱ । ଚାକର ମିଳିବ, ଚାକରାଣୀ ମିଳିବ, କିନ୍ତୁ ଘର ଚଳେଇବା, ରୋଷେଇବାସ କରି ଖାଇବା ପିଇବାକୁ ଦବା, ଘରର ଯାବତୀୟ କାର୍ଯ୍ୟକୁ ନିଜର ବୋଲି ମାନିନେଇ ଆଦରର ସହ କରିବାକୁ ଗୋଟେ ଝିଅ ମିଳିବା କଷ୍ଟ, ଭାରି କଷ୍ଟ ! ଭରତ ମୁହଁ ଖୋଲିଲା- ତୋର ଏଠି କିଛି ଅସୁବିଧା ହଉଚି କି କହ !

: କିଛି ଅସୁବିଧା ନାହିଁ, କିନ୍ତୁ ମୁଁ ପାରିବିନି । ରୋଷେଇବାସ କରିବାକୁ କଥା ହେଇଥିଲା, ଏବେ ତ ମୋତେ ସବୁ ଦାୟିତ୍ୱ ନେବାକୁ ପଡୁଛି । ଏତେ ଦାୟିତ୍ୱ ମୁଁ ତୁଲାଇ ପାରିବି ନାହିଁ । ଏଠିକି ଗୋଟେ ଓଳି ନ ଆସିଲେ ନ ହୁଏ, ମାଆ ବାବୁ ତ ମୋ ହାତକୁ ସବୁବେଳେ ଅନାଇ ରହୁଛନ୍ତି । ନିଜେ ଚାହିଁଲେ ବି କିଛି କରିପାରୁ ନାହାନ୍ତି, ସେ କ୍ଷେତ୍ରରେ ମୁଁ କ'ଣ କରିପାରିବି ? ନରମ ଓ ସ୍ପଷ୍ଟ ଭାଷାରେ କହିଲା ରୂପା । ବାତାବରଣ ଦୁଃଖଦ ଓ ଓଦାଳିଆ ହେଇ ଆସିଲା ।

ଭରତ ଏକ ଗଭୀର ସମସ୍ୟାରେ ପଡ଼ିଲା । ଅଠାକାଠି । ଏଇଠି ପୁଅ ବୋହୁଙ୍କର କର୍ତ୍ତବ୍ୟ ଅଡ଼ି ବସୁଚି । ମାଗୁଚି ପୁଅପଣିଆ ! ଏଇ ହଉଚି ସେଇ ସମୟ ଯେଉଁଠି ପ୍ରତିଟି ପୁଅ ଶ୍ରବଣକୁମାର ହେଇଯାଏ । କାନ୍ଧେଇବାକୁ ପଡ଼େ ପିତା ମାତାଙ୍କର ମନ, ହୃଦୟ, ଆତ୍ମା ଓ ଶରୀରକୁ । ଯା'ର ବିକଳ୍ପ ଆଉ କିଛି ନାହିଁ । ନା ଚାକର ଚାକରାଣୀ,

ନା ଅର୍ଥ, ନା ଢରା ନିବାସ ! ଘୁଅ ମୃତ ହେଉଥିବା ବାପା, ଆଖିକୁ ଖୁବ୍ ଅଳ୍ପ ଦେଖାଯାଉଥିବା ମାଆର ମମତାସଂପନ୍ନ ଦାୟିତ୍ୱ କିଏ ନେଇ ପାରେ ? କିଏ ତୁଲାଇ ପାରିବ ପୁଅ ବ୍ୟତୀତ ? ବାପା ମା' ପୁଅର ସଂପର୍କ ଏଇଠି ହିଁ ପରୀକ୍ଷା ଦିଏ । ମା' ଅନେଇଲା ଭରତକୁ, ଯେମିତି ସେ ଭରତ ଭିତରେ ବଞ୍ଚିଥିବା ମାତୃପ୍ରେମର ରୂପକୁ ଆବିଷ୍କାର କରିବାକୁ ଚାହେଁ ।

ମୁହଁ ଖୋଲିଲା ଭରତ-ମାନୁଚି, ଏବେ ତୋର ଦାୟିତ୍ୱ ଅଧିକା ବଢ଼ିଯାଇଛି, ସେଥିପାଇଁ ତ ମୁଁ ତୋର ଦରମା ବଢ଼ାଇଦେବାକୁ ଚାହୁଁଛି, କହ, କେତେ ନବାକୁ ଚାହୁଁଛୁ ?

'ଦରମା ଆଉ ଖଟଣିର ପ୍ରଶ୍ନ ବଡ଼ କଥା ନୁହେଁ, ବଡ଼ କଥା ଦାୟିତ୍ୱ । ମୁଁ କିନ୍ତୁ ସେ ଦାୟିତ୍ୱ ନେଇ ସମ୍ଭାଳି ପାରିବିନି । ଆପଣ ବୁଝୁନାହାନ୍ତି କାହିଁକି ? ଅନୁନୟ ହେଲାଭଳି କହିଲା- 'ଏ ସମୟରେ ମା' ବାବୁଙ୍କର ହେପାଜତ୍ ଆପଣ ଆଉ ବୋଉ ନବା କଥା !' ରୂପାର ଏଇ ଶେଷପଦ ଉପରେ ସମସ୍ତେ ନଇଁଗଲେ । ରୂପା ହିଁ ଠିକ୍ କହୁଚି । ସ୍ନେହ, ଶ୍ରଦ୍ଧା, ଆଦର, ପୁଲକରେ ବୁଢ଼ାବାବୁ ଓ ସରବୁଢ଼ୀର ଏ ଶେଷ ଜୀବନ କଟିବା କଥା । ଟଙ୍କା ବିନିମୟରେ ଚାକର ଚାକରାଣୀଙ୍କ ଦ୍ୱାରା ନୁହେଁ । କିନ୍ତୁ କି ଅବାଗିଆ ପରିସ୍ଥିତି ଯେ ଭରତବାବୁ କି ତାଙ୍କ ପରିବାର ମାଡ୍ରାସ୍‌ରୁ ଚାକିରି ଛାଡ଼ି ଏଠାକୁ ଆସିବା ସମ୍ଭବ ନୁହେଁ ଏବଂ ବୁଢ଼ାବୁଢ଼ୀ ଦି'ଜଣ ଏଠା ଗାଁ ଛାଡ଼ି ସେଠାକୁ ଯିବାକୁ ମଙ୍ଗୁନାହାନ୍ତି । ଯଦି ବା ଦି'ତିନିଥର ଯାଇଛନ୍ତି ମାସେ, ଦେଢ଼ମାସ ଭିତରେ ପୁଣି ଫେରିଆସିଛନ୍ତି । ସେଠିକାର ଅବହାଓ୍ୱାରେ ସେମାନଙ୍କୁ ବନ୍ଦୀ ହେଇଗଲା ଭଳି ଲାଗୁଛି । ମନପୂରା ଜୀବନ ପାଉନାହାନ୍ତି ସେଠି । ସେ ବାତାବରଣଠାରୁ ସେ ଦୁହେଁ ଫିଙ୍ଗି ହେଇଯାଉଥିବା ଅନୁଭବ କରୁଛନ୍ତି । ଲାଗୁନାହିଁ ଆପଣା ଆପଣା । ପ୍ରତିମୁହୂର୍ତ୍ତରେ ବୋହୂ ଓ ସେମାନଙ୍କର ଚାକର ଚାକରାଣୀଙ୍କର ହାତଟେକାକୁ ଅନାଇ ରହୁଛନ୍ତି । ପୁଅ ବୋହୂ ନାତି ନାତୁଣୀ ସେମାନଙ୍କର ସାଙ୍ଗ ସାଥୀ, ପାର୍ଟିମାନଙ୍କରେ ବୁଡ଼ି ରହୁଥିଲା ବେଳେ ବୁଢ଼ାବୁଢ଼ୀ ଅସହାୟ, ସଙ୍କୁଚିତ !

ରୂପା ମା' ଚିହିଁକଲା । ଝିଅଟା ପାଗଳୀ ହେଇଗଲା ନା କ'ଣ ? ଆସୁଥିବା ଲକ୍ଷ୍ମୀକୁ ପାଦରେ ଏଡ଼େଇ ଦଉଚି । କ'ଣ ନ ପାଉଚେ ଆମେ ଏ ଘରୁ ? ଟିକି ନିକି ଯଦି ହିସାବ ହୁଏ ମାସକୁ ସାତଶ ଆଠଶ ଟଙ୍କାରୁ କମ୍ ହେବନି ! ରୂପା ତ ଏଠି ହିସାବ କିତାବର ମାଲିକ; କାମତୁଣୀ ବା ରୋଷେୟାଣୀ ଭାବରେ ନାହିଁ, ଅଛି ଝିଅ ଭଳି । କିନ୍ତୁ କି ଫେକ୍ଟ୍ରୀ ଚାକିରି ପଶିଛି ଯା' ମୁଣ୍ଡରେ, ବଜାରକୁ ଯାଇ ଚାକିରି କରିବ, ଯା' ସଙ୍ଗେ ହେଁ ହେଁ, ତା' ସଙ୍ଗେ ଫେଁ ଫେଁ । ସେ ପୋଡ଼ାମୁହାଁ ମଦନା ଦରବୁଢ଼ା ହେଲାଣି, ବାହାହେଇନି । ଏଇ ଚାକିରି ଲୋଭ ଦେଖେଇ ମୋ ଝିଅର

ସର୍ବନାଶ କରିବାକୁ ବସିଛି ଲୋ ମା । ଦଉଡି ତାକୁ ପାନେ, ଏଠୁ ଗଲେ ତା' ସାଙ୍ଗେ କଥାବାର୍ତ୍ତା ! ନିଜକୁ ଆଉ ସମ୍ଭାଳି ପାରିଲାନି । ରୂପା ଆଡ଼କୁ ରାଗିଲା ରାଗିଲା ଚାହାଣୀଟେ ଛାଟିଦେଇ ଭରତକୁ କହିଲା- ବାବୁ ! ରୂପା କଥାରୁ କ'ଣ ମିଳିବ ! ତମେ ମାସକୁ ଆଉ ଶହେଟଙ୍କା ବଢ଼ାଇ ଦିଅ, ବାସ୍ ! ରୂପା ଯିମିତି ଆସୁଥିଲା, ସିମିତି ଆସିବ ! ଏତକ କହି ତାଳି ମାରିଦେଲା ରୂପା ମା' !

ସମସ୍ତେ କହିଲେ- ବାସ୍, ବାସ୍ !

ଭରତ କହିଲା- ହେଲା, ହେଲା ।

ରୂପା କହିଲା- ମୁଁ ପାରିବିନି ।

ରୂପା ମା' ରାଗିଯାଇ କହିଲା- କାହିଁକି ପାରିବୁନି କହୁନୁ ?

:ତୋ ପୁଅ ବୋହୂ ଯଦି ତୋ ପାଖରେ ଥାଆନ୍ତେ, କି ତୁ ଯଦି ତୋ ପୁଅ ବୋହୂଙ୍କ ପାଖକୁ ଯାଇ ଥାଆନ୍ତୁ, ମୁଁ ପାରନ୍ତି । ବାହାହବାର ବର୍ଷେ ହେଇନି ପା ସନାଭାଇ ଭାଉଜକୁ ନେଇ ଏଠୁ ଢମା ଦି ମାଇଲ ଦୂରରେ ଘରଭଡ଼ା ନେଇକି ଅଛି । ଶାଶୁ ବୋହୂ, ମା' ପୁଅ କଳିକଜିଆ ଲାଗିଲା ଯେ ଘରଛାଡ଼ି ଚାଲିଗଲା ସେ । ଏ ଗାଁକୁ କେତେଥର ଆସୁଛି, ଘରକୁ ଆସିଲାଣି ଥରେ ? ମା' ଭଉଣୀ କେମିତି ଅଛନ୍ତି, ମଲେଣି କି ବଞ୍ଚିଛନ୍ତି ବୁଝିବାକୁ ଆସୁଛି ? ତୁ ପୁଅ ବୋହୂଙ୍କ ପାଖକୁ କେତେଥର ଗଲୁଣି ? କାହିଁକି ଯାଉନୁ ସେଠିକି ?

ବୋହୂ କଥା ପଡ଼ିଲାରୁ ରୂପା ମା'ର ନାହି ଡେଇଁଲା ଯେମିତି ! ''ମୁଁ ଖାଇବାକୁ ନ ପାଇ ମରିବି, କିନ୍ତୁ ସେଠିକି ଯିମି ନାଇଁ । ବୋହୂ ହାତ ଟେକାକୁ ଅନେଇମି କାହିଁକି ?'' ଛିଞ୍ଚାଡ଼ି ହେଲା ରୂପା ମା' ।

ରୂପା ମା'ର ଏକଥା ଶୁଣୁ ଶୁଣୁ ଭରତ ମା' ସର ଯୋଖିଲା– ଠିକ୍, ଠିକ୍ କହୁଚି ରୂପା ମା' ! ସେଠି ବୋହୂର ଦମ୍ଭ, ଶାଶୁ ଶଶୁର ମୋ ପାଖରେ ଅଛନ୍ତି । ସେଟା ବୋହୂର ଆଣ୍ଟ । ତାକୁ ସହିବ କିଏ ? ଆମ ବୋହୂ ତ ବାଛିବାର ନୁହଁ । ମୁହଁ ଖୋଲି କିଛି କହେନି । ଘଡ଼ିକି ଘଡ଼ି ଆମ କଥା ବୁଝେ । ପଦେ ରାଗିକି, କି ଛିଞ୍ଚାଡ଼ିକି କହିନାହିଁ । କିନ୍ତୁ ଟିକିନିଖି କଥାରେ ତା' ହାତକୁ ଅନେଇ ରହିବାକୁ ହବ ନା ନାହିଁ ! ସେଠି ବଂନ୍ଦୀ ହେଇଯିବାକୁ ପଡ଼ିବ ।

ଏଠି ରହିଲେ ଶାଶୁର ମୁଣ୍ଡଟେକ ଯେ ବୋହୂ ତା' ପାଖରେ ଅଛି । ବରଂ ଆଖିକୁ ଦେଖା ନଯାଉ, କାନକୁ ନ ଶୁଭୁ । କିନ୍ତୁ ନିଜ ଘରେ ମୁରବୀ ନା ନାହିଁ ? ନିଜ ଘରେ ସ୍ୱାଧୀନ ନା ନାହିଁ !''

ମାଆର ଏ ଅଧିକାରର ଢୁଆରରେ ଭରତ ଶାଶୁ ବୋହୂ ସଂପର୍କ ସବୁର ମୂଳମଞ୍ଜିକୁ ଆବିଷ୍କାର କରୁଥିଲା । ମାଆର କୋଳ ଯେତିକି ଅଭୟ, ତା' କାନିର

ଲାଂବ ସେତିକି ଅସୀମ, ସେତିକି ଟାଣ, ସେତିକି ସ୍ୱାଭିମାନୀ । ଯାହା କୌଣସି ପରିସ୍ଥିତିରେ କେବେ ଭାଙ୍ଗେ ନାହିଁ ! ଶାଶୁ ବୋହୂର ଏ ଅଧିକାର ଦ୍ୱନ୍ଦ୍ୱରେ ଏପାଖ ସେପାଖ ଟାଣି ହେଉଥାଏ ଯାହା ପୁଅ, ବିଚରା ! କିଛି କହିଲାନି ଭରତ ।

ରୂପା ପୁଣି ତା' ମାଆକୁ ଅନାଇ କହିଲା- ପାଞ୍ଚ ଦିନ ତଳେ ପା ମୁଁ ଏଠୁ କାମ ସାରି ଗଲାବେଳକୁ ତୁ ଘର ଭିତରଟାରେ ବେହୋସ୍ ହୋଇ ପଡ଼ିଚୁ ! ପାଣି ଛଟା ଛଟି କଲାରୁ ଉଠିଲୁ । ଦେହ ଦୁର୍ବଳରୁ ମୁଣ୍ଡ ବୁଲାଇ ଇମିତି ହଉଚି, ଛାତି ଦୁର୍ବଳ ଅଛି ବୋଲି ଡାକ୍ତର କହୁଚି ! ତୋ କଥା ବୁଝିବ କିଏ ?

ଏ ଘରେ ମାଆର ଅବସ୍ଥା ଯାହା, ତୋର ଅବସ୍ଥା ବି ସେୟା । ବାବୁ ଆଉ ଜଣକୁ ରଖିପାରିବେ, କିନ୍ତୁ ତୋ ପାଇଁ ଆଉ କିଏ ଅଛି ?'' ରୂପା ଏତିକି କହିଲା ବେଳକୁ ସମସ୍ତଙ୍କର ମୁହଁ ହାଣ୍ଡି ହେଇଯାଇଚି । ସମସ୍ତଙ୍କର ନିଜ ଅନୁଭବ, ନିଜ ଘରର ଅନୁଭବ ସବୁ ନିଜ ସାମ୍ନାରେ ଚିତ୍ରିତ ହେଇଯାଉଚି । ରୂପା ମା' ଚୁପ୍ ରହିଲା । ତା' ମୁହଁ ଉଜ୍ଜ୍ୱଳ ଦେଖାଗଲା । ପରେ ଦେଖାଗଲା କାନ୍ଦିଲା କାନ୍ଦିଲା । ତା' ଲାଗି ରୂପା ଏତେ ବ୍ୟସ୍ତ ! କିନ୍ତୁ ସେ କ'ଣ ସବୁଦିନ ରହିବ ? ଝିଅ ଛୁଆ । ଆଜିକି ଅଛି କାଲିକି ବାହା ହେଇଯିବ । ସେତେବେଳେ ? ଭାବ ପାଉନାହିଁ ଏତେ ଦୂରକୁ ତା'ର । 'ଯା ହବ ଦେଖାଯିବ ସେତେବେଳେ' ଠିଁ ଅଟକି ଯାଉଚି ।

ପୂଜାରୀ ସର୍ବେଶ୍ୱର ମୁହଁ ଖୋଲିଲା- ରୂପା ! ତୁ ଏଇ ଗାଁରେ ଏଇଠି କାମ କରିବୁ, ତୋ ମାଆ ବି ଏଇ ଗାଁରେ ରହିବ, ସୁବିଧା ଅସୁବିଧାରେ ତୋ ମାଆ ପାଖକୁ ହଠାତ୍ ଯାଇପାରିବୁ, ସାଂଗେ ସାଂଗେ ଖବର ପାଇପାରିବୁ । ସିମିତି ଦରକାର ପଡ଼ିଲେ ତୋ ମାଆ ବି ଏଇଠିକୁ ଆସି ବସାଉଠା କରିପାରିବ । ଏଇଟା ତୋତେ ଏତେ ଅସୁବିଧା ହେଉଚି ଯେ ତୁ ବଜାରକୁ ଯାଇ ଫେକ୍ଟେରୀରେ କାମ କରିବୁ ଏତେ ଦୂରରେ !

: ''ମୋତେ ସକାଳୁ ରାତିଯାଏ ରହିବାକୁ ପଡୁଛି । ଅନ୍ୟଠି କାମ କଲେ ସେ କଥା ହବନି । ଦରକାର ପଡ଼ିଲେ ମୁଁ ଫେକ୍ଟେରୀକୁ ନଯାଇ ରହିପାରିବି । କିନ୍ତୁ ଏଠିକି ଗୋଟେ ଓଳି ନ ଆସିଲେ ମା' ବାବୁ ହୀନସ୍ତା ଅବସ୍ଥା ହେଇଯିବେ । କଥାଟା ଯାଇ ସେଠି । କାମର ଦାୟିତ୍ୱ ନବା ଅଲଗା କଥା ! ତମେ ତ ପ୍ରତିଦିନ ସକାଳେ ସଞ୍ଜ ଠାକୁରପୂଜା କରିବାକୁ ଆସୁଛ, ଦେଖୁନ କି ?''

ରୂପାର ଏ ଉତ୍ତରରେ ସର୍ବେଶ୍ୱର ମୁଣ୍ଡ ଟୁଙ୍ଗାରିଲା- ଏଇଟା ସତ ଯେ ରୂପା ନ ହେଲେ ଏ ଘର ଦଣ୍ଡେ ଅଚଳ !

ଭରତ ଦୀର୍ଘଶ୍ୱାସ ନେଲା । ବାପା, ବୋଉ ଗାଁ ଛାଡ଼ି ମାଡ୍ରାସ ଯିବାକୁ ଅମଙ୍ଗ । ବୁଢ଼ା କାଳରେ ଗାଁ ଭିଟା ତାଙ୍କୁ ଅମୃତ ଲାଗୁଛି । ଭଲ କଥା । କିନ୍ତୁ ଚଳିବେ କେମିତି ? ବାପା, ମା'ଙ୍କ ପାଇଁ ସେ କ'ଣ ଚାକିରି ଛାଡ଼ି, ପିଲାମାନଙ୍କର ପାଠପଢ଼ା ବନ୍ଦ କରି

ଗାଁକୁ ପଳେଇଆସିବ ? ଚାକିରି ଛାଡ଼ିଲେ ପିଲାମାନେ ବଞ୍ଚିବେ କେମିତି ? ଗାଁରେ' ବା ଆଉ କ'ଣ ଅଛି ତାଙ୍କର ! ଦି'ମାଣ ଜମି ବ୍ୟତୀତ ? ରୂପା ତ ରାଜି ହେଉନି । ତାକୁ ବୁଝେଇ ଆଉ ଲାଭ କ'ଣ ? ମାଆ ଆଡ଼େ ଅନେଇଲା ଭରତ । ତା'ର ମୁହଁ ଉଦାସ ଦିଶୁଚି । ସ୍ୱପ୍ନଟେ ଆଙ୍କିବା ପାଇଁ ଭରତ କହିଲା—

-''ମା, ଦେଖୁଚୁ ତ ରୂପା କାମ କରିବାକୁ ଆଉ ରାଜି ହେଉନି । ବୟସ ହେଇଗଲେ ସମସ୍ତେ ଅନ୍ୟ ଉପରେ ଭାରା ହେଇଯାଆନ୍ତି, ତୁ କ'ଣ ଜାଣିନୁ ? ତୋ ଶାଶୁ ଶଶୁର କ'ଣ ତୋ ଉପରେ ଭାରା ହେଇ ନ ଥିଲେ ? ପର ଉପରେ ଭାରା ହେବା ଅପେକ୍ଷା ନିଜ ପୁଅ ବୋହୂଙ୍କ ଉପରେ ଭାରା ହେବାଟା କ'ଣ ଖରାପ ଲାଗୁଛି ? ମୋ କଥା ମାନ । ତମେ ଦୁହେଁ ମାଡ୍ରାସ ଚାଲ । ତା' ଛଡ଼ା ଆଉ ବାଟ ନାହିଁ !''

ଭରତ ମା' କିଛି ସମୟ ଗୁମ୍ ହେଇଗଲା । ଖୁଂଦି ହେଇ ଯାଉଥିଲା ଅନୁଭବ ସବୁ । ଏ ଗାଁ ଛାଡ଼ି ଯିବା କଥା କହିଲାବେଳକୁ ଜି ଛାଡ଼ି ଯାଉଚି । କାହିଁକି କେଜାଣି ? ରାହା ଖୋଜି ଖୋଜି ମଣିଷ କାହିଁ କେଉଁଠିକୁ ଚାଲିଯାଇ ବସା ବାଂଧୁଛି । ସତ । କି'ନ୍ତୁ ଜୀବନ ସହ ଏ ମାଟି କେମିତି ଯୋଖି ହେଇଯାଇଛି ଯେ ତା'ର ଆକର୍ଷଣ, ବନ୍ଧନ, ପୁଅ, ଝିଅ, ବୋହୂମାନଙ୍କ ବନ୍ଧନଠୁଁ ଆହୁରି ଟାଣ । ନିଦା । ସେଇ ତ ଭିଟା ମୋହ ! ଶେଷ ଜୀବନ ଏଇ ଗାଁରେ କଟେଇବ ବୋଲି ଭାରତ ବାପାର ଦୃଢ଼ପଣ । ନିଜ ଗାଁ ଛୁଙ୍କରେ ଭାରି ବିଭୋର । ତାଙ୍କ ଝୁଙ୍କରୁ ତାଙ୍କୁ ହଲେଇବା ସମ୍ଭବ ନୁହେଁ । ସେଠି ମାଡ୍ରାସ୍‌ରେ ବି ତ ସେଇ ଚାକର ଚାକରାଣୀଙ୍କ ଉପରେ ନିର୍ଭର ନା ! ଏଠି ସାଇ, ପଡ଼ିଶା, ଗାଁ, ଠାକୁର, ତା'ର ନିତିଆନି, ଉଶ୍ୱାସରେ, ଖୋଲା ସ୍ୱାଧୀନରେ ଦିନ ବିତୁଛି । ସେଠି ମାଡ୍ରାସରେ ତ ସାଇ ପଡ଼ିଶା ନାହିଁ । ଯାହା ନିଜ ଘରେ ବସିବା, ଖାଇବା କଥା... । ବାନ୍ଧି ହେଇଯିବା କଥା ।

''ନା, ମନ ମାନୁନାହିଁରେ ଭରତ ! ଶେଷ କାଳରେ ଛାଡ଼ିଯିବାକୁ ମନ କହୁନିରେ ! ତୋ ବାପା ବି ଏ ମାଟି ଛାଡ଼ି ତିଳାର୍ଦ୍ଧେ ଯିବେ ନାହିଁ ।'' ଭରତ ମା' ଆକୁଳ ହେଲା ।

ବ୍ୟସ୍ତ ଓ କାକୁସ୍ଥ ହେଇପଡ଼ିଲା ଭରତ- ''ଏଠି ଆଉ କ'ଣ ଅଛି ବୋଉ, ଯାହାପାଇଁ ତମେ ଦୁହେଁ ଏ ଅବସ୍ଥାରେ ଏଠି ମାଟି କାମୁଡ଼ି ପଡ଼ି ରହିବ ?''

:''ସେଇ କଥାତ, ଏଠି ଇମିତି କ'ଣ ଅଛି କହିହଉନି, କିନ୍ତୁ ଛାଡ଼ି ଚାଲିଗଲା ବେଳେ ଆତ୍ମା ଖଣ୍ଡ ଖଣ୍ଡ ହେଇଯାଉଛି, ଆମ ଆତ୍ମା ଏଇଠି ଅଛି ।'' ସରବୁଢ଼ୀ ବସେଇ ବସେଇ କହିଲା ।

:ଲୋକେ ତ ପୁଣି ଅନ୍ୟଆଡ଼େ ଘର କରି ଉଠି ଯାଉଛନ୍ତି, ଭାରତର କେତେ ଲୋକ ବିଦେଶରେ ଚିରସ୍ଥାୟୀ ହୋଇ ରହିଗଲେଣି । ଆଉ କେତେ ବର୍ଷ ପରେ ଲୋକ କେବଳ ଗୋଟିଏ ଜାଗାରେ ଘର କରି ରହିବେନି । ଖାସ୍ ବୁଲିବେ, ଏ ଦେଶରୁ ସେ

ଦେଶ । ଘର ନଥିବ । ଖାଲି ଏ ଜାଗାରୁ ସେ ଜାଗା । ଯାଯାବର ମଣିଷ, ବୁଝିଲୁ । ସାରା ପୃଥିବୀଟା ଘର । ବୁଝାଇଲା ଢଙ୍ଗରେ କହିଲା ଭରତ ।

: ସେଟା ପିତାଶି ଚଢ଼େଇ ହେଲା ଭଳିଆ କଥା । ଖାସ୍ ଉଡୁଥିବ, କେଉଁଠି ବସି ପାରିବନି । ହା ହୁତାଶିଆ ଜୀବନ । ଘୂରୁଥିବ, ଘୂରୁଥିବ ମନ କିନ୍ତୁ ପୂରୁ ନଥିବ । ଏଠି ବରଂ ଆମେ ଘୁଅ ମୂତ ହଉଥିବୁ, କିନ୍ତୁ ଏଠା ଛାଡ଼ି ଆଉ ଯିବା କଥା କହନା । ଭରତ ମା ନିଷ୍ପତ୍ତି ନେଲା ।

ଭରତ ଆଖି ମୁଦି ଦେଲା । ସାମ୍ନାରେ ଛିଡ଼ା ହେଇ ଯାଉଚି ଶ୍ରବଣ କୁମାର, ତା' କାନ୍ଧ ଉପରେ ଭାର, ଭାରର ଦି ପାଖରେ ବାପା ମାଆ । ଛାତି ଭିତରଟା ତା'ର ଓଦା ହେଇ ଆସୁଛି । କୋରି ହେଇ ଯାଉଛି । ସେ ଚାହିଁଲା ରୂପା ଆଡ଼କୁ । ତା' ମାଆ ଆଡ଼କୁ । ତା ବାପା ମାଙ୍କର ଡୋରିଟିଏ ଯେମିତି ରୂପାର ହାତରେ ବନ୍ଧା ହେଇଚି । ସେ ଚାହିଁଲା ପରିଆ, ବୁଦ୍ଧିଆ, ପେଟା, ସର୍ବେଶ୍ୱରଙ୍କ ମୁହଁକୁ । ସବୁ ମୁହଁରେ ପ୍ରଶ୍ନ ଓ ଆକୁଳପଣର ଟୁକୁ ଟୁକୁ ଆଖି । ଭରତ ଯଦି ତାଙ୍କ ବାପା ବୋଉଙ୍କୁ ଏଠୁ ମାଡ୍ରାସ୍ ନେଇଯାଏ, ତା' ହେଲେ ସେମାନଙ୍କୁ ଅନ୍ନ ସଂସ୍ଥାନର ଅଲଗା ବ୍ୟବସ୍ଥା କରିବାକୁ ହେବ ତ ପୁଣି !

ଭରତ ପାଟି ଖୋଲିଲା- "ହଉ, ତୋଅରି କଥା ହେଲା, ମାସକୁ ଚାରିଶ ଲେଖାଏଁ ଦେବି । ତୋ ମାଆ ବି ମୋ ବୋଉ ଭଳି ଦୁର୍ବଳ ହେଇ ଆସିଲାଣି । ସେ ବି ଏଇଠି ରହୁ ତୋଅରି ପାଖରେ । ତା' ପାଇଁ ତୋତେ ଆଉ ବ୍ୟସ୍ତ ହେବାକୁ ପଡ଼ିବ ନାହିଁ । ହେଲା ତ ?

ରୂପା ମା ସମେତ ସମସ୍ତଙ୍କର ମୁହଁ ଚମକିଲା । ଏଇ ଯେମିତି ଫୁଲ ଫୁଟି ପଡ଼ିବ । ପ୍ରସନ୍ନ ମୁହଁମାନଙ୍କରୁ ଦାନ୍ତ ଚିକି ଚିକି କରି ଉଠିଲା । 'ଭଲ ହେଲା, ବଢ଼ିଆ ହେଲା' ମନ୍ତବ୍ୟ ସବୁ ବାହାରି ଆସିଲା ସମସ୍ତଙ୍କ ମୁହଁରୁ ।

ରୂପା ଚୁପ୍ ଚାପ୍ । ନୀରବ । କୌଣସି ପରିବର୍ତ୍ତନ ତା'ଠାରେ ଦେଖାଗଲାନି । ଭରତ ମା' ଉତ୍ସୁକ ଅବସ୍ଥାରେ କହିଲା- ରୂପା, କିଛି କହୁନୁ କାହିଁକି ?

: 'ମୁଁ ଔଷଧ ଫେକ୍ଟେରୀରେ କାମ କରିବି' । ମୁହଁ ତଳକୁ କରି ଧୀର ଅଥଚ ଦୃଢ଼ ଭାବରେ କହିଲା । ସମସ୍ତେ ନିରବ ହେଇଗଲେ । ଆଶ୍ଚର୍ଯ, ବିମର୍ଷ ।

ଅସନ୍ତୁଷ୍ଟ ହେଇ ଉଠିଲା ଭରତ । ଗଳା ଟିକେ କଠିନ ହେଇ ଉଠିଲା : ଆଉ ତୋ'ର କ'ଣ ଅସୁବିଧା ରହିଲା, ଅମତ ହେବାର କାରଣ କ'ଣ ? ରୂପା ମା' ରୂପା ଉପରେ ବିରକ୍ତ ହେଇ କହିଲା- ସେ କଥା ପଟିବ ନାଇଁ, ତୋ କଥା କିଛି ଶୁଣିବି ନାହିଁ । ଭରତ ବାବୁ ଯାହା କହିଲେ, ·ସେଇଟା କାଇଲି, ଓ୍ୱାଜିବ୍ ! ରୂପାମା ସହ ତାଳ ଦେଇ ସମସ୍ତେ 'ଠିକ୍ ଠିକ୍' କହି ଚାଲିଲେ । ରୂପା ସେଇମିତି ବସିଥିଲା । ଠିଆ ହେଇ ପଡ଼ିଲା । ମା'କୁ ଡାକିଲା, ଆ ଯିବା ଆ ।

ପୁଣି ସବୁ ଚୁପ୍। ରୂପା ମା' ବି ଉଠୁ ନଥାଏ। ଭରତ ଚିଡ଼ି ଉଠିଲା- 'ଶେଷ କଥା କ'ଣ କହିଲୁ !'

'ମୁଁ ଆଉ ଏଠି କାମ କରିବିନି। ଔଷଧ ଫେକ୍ଟେରୀରେ କାମ କରିବି।' କହିଲା ରୂପା ଜୋର୍‌କରି।

:କାହିଁକି ? ଭରତ ଚଢ଼ା ଗଳାରେ ପ୍ରଶ୍ନ କଲା।

'ଆପଣ ଯେମିତି ବାପା ବୋଉଙ୍କ ପାଇଁ ଚିନ୍ତା କରୁଛନ୍ତି, ମୁଁ ସେମିତି ମୋ ମାଆ ପାଇଁ ଚିନ୍ତା କରୁଛି। ବାପା, ମା ଏଇଠି ଅଛନ୍ତି ବୋଲି ଆପଣ ମୋତେ କାମ କରିବାକୁ କହୁଛନ୍ତି। ସେ ଦୁହେଁ ଯଦି ମାଡ୍ରାସ ଚାଲିଯାଆନ୍ତି, କି ଏତେ ବୟସ ହେଲାଣି; କୁଆଡ଼େ ଯଦି କିଛି ହେଇଯାଏ, ତା'ପରେ ବି ଆପଣ ମୋତେ ଏଇଠି ଚାକିରିରେ ରଖିବେ ତ ? ମାସକୁ ମାସ ଦରମା ଦେବେ ତ ?' ରୂପା ରୋକ୍ ଠୋକ୍ ପ୍ରଶ୍ନ କଲା।

ନୀରବ ରହିଲା ଭରତ। ରୂପା ମା' ଏକଦମ୍ ଚୁପ୍। ସମସ୍ତେ ଖାଡ଼ା ମରିଗଲେ। ପାଟି ବନ୍ଦ। ସତେ ତ ! ବୁଢ଼ା ବୁଢ଼ୀ ଛିଡ଼ି ପାଚିଲା ତାଳ। ଶଣ୍ଡାରୁ ତାଳ ଖୋଳପା ଛିଡ଼ି ଛିଡ଼ି ଆସିଲାଣି। କେତେବେଳେ ଖସିପଡ଼ିବ, କେ ଜାଣେ ! ସେ ବି ବେଶି ଦିନ ନୁହେଁ। ତା' ପରେ ? ତା' ପରେ ରୂପାର ଭବିଷ୍ୟତ... ? ସେଇଠୁ, ସେଇ ପ୍ରଶ୍ନଠୁ ସବୁ ନିରବ।

ଭରତ ମା'ର ଚାରିପାଖ ଶୁନ୍‌ଶାନ୍ ଦେଖାଗଲା। କେହି ଯେମିତି ଟାଣି ନେଇଯାଉଚି ତା'ର ସମସ୍ତ ସଂଭାବନାଗୁଡ଼ିକୁ। ସେ ନରମ ଭାବରେ କହିଲା- ଏତେ ସ୍ନେହ, ଶ୍ରଦ୍ଧା ସବୁ ତୁଚ୍ଛ କରିଦେଲୁ ରୂପା ! ତୁ ଆମର ମାଆ ଥିଲୁ, ଝିଅ ବି ଥିଲୁ !

ଭରତ ମା'ର ଏ ଉଦାସ ଗହ ଗହ କଥାରେ ରୂପା ଚୁପ୍ ହେଇଗଲା। ଗୁମ୍ ହେଇଗଲା। ତା' ଆଖି ଡବଡବେଇ ଗଲା। ସେ ଆଖି ମୁଦିଦେଲା କ୍ଷଣିକ। ସେଇ ମୁଦା ଆଖି ଭିତରୁ ଧୀରେ ଧୀରେ ଆଉ ଆଖିଟିଏ ଜନ୍ମ ନେଲା। କଅଁଳ। ଟୋଳୋବାନ୍। ସେ ସରଳ, ସଳଖରେ କହିଲା- ''ମୁଁ କ'ଣ ମନା କରୁଚି ? ସ୍ନେହ ଆଦର ତମେ ଦେଇଚ। ମୁଁ ବି ଦେଇଚି। ସେଟା ମନ ଗହନର କଥା। ସବୁଦିନ ପାଇଁ ମୁଁ ମୋ ମାଆକୁ ପୋଷିବି କି ନାହିଁ ? ତା' କାନିରେ ସେ ମୋତେ ପାଳି ଆଣିଥିଲା। ଏବେ ମୋ କାନିର ପାଳି। ଯେ ସବୁ ଦାନା ପାଣିର କଥା। ଆପଣ ଆପଣଙ୍କ କଥା ଚିନ୍ତା କରି ପାରୁଛନ୍ତି। କିନ୍ତୁ ମୋ ମାଆଟା ସେତକ କରିପାରୁନି !''

କହିଲା ରୂପା ଏବଂ ମାଆର କାନିକୁ ଧରି ଦାଣ୍ଡେ ଦାଣ୍ଡେ ଚାଲିଲା।





ନୂତନ କଥାସାହିତ୍ୟର ଅନ୍ୟତମ ଉଜ୍ଜ୍ୱଳ ନକ୍ଷତ୍ର - ରଜନୀକାନ୍ତ ମହାନ୍ତି । ବାଲେଶ୍ୱର ଜିଲ୍ଲାନ୍ତର୍ଗତ କ୍ଷୀରକୋଣା ଗାଆଁରେ ଏହି ପ୍ରଖର ପ୍ରତିଭାଧର କଥାଶିଳ୍ପୀଙ୍କର ଜନ୍ମ, ୯ ଜୁଲାଇ ୧୯୫୨ ମସିହାରେ ।

ରଜନୀକାନ୍ତଙ୍କ ଗଳ୍ପ ଓ ଉପନ୍ୟାସରେ ଅନବରତ ଅନୁରଣିତ ହୋଇଥାଏ ଅନ୍ତର୍ମନୁଷ୍ୟର ମର୍ମ-ମୂର୍ଚ୍ଛନା । ଏହି ଦୃଷ୍ଟିରୁ ତାଙ୍କ ଗଳ୍ପ-ଉପନ୍ୟାସଗୁଡ଼ିକ ଦେଶ-କାଳ-ପାତ୍ରର ଊର୍ଦ୍ଧ୍ୱରେ ନିଚ୍ଛକ ମଣିଷର ନିବିଡ଼ ସ୍ୱପ୍ନ ଓ ନିରବଚ୍ଛିନ୍ନ ସଂଘାତ-ସଂଘର୍ଷର ସୂକ୍ଷ୍ମ ସ୍ୱରଲିପି । ନିର୍ଜନ ଗ୍ରାମରୁ ନଷ୍ଟ ନଗରୀ ପର୍ଯ୍ୟନ୍ତ, ସବୁଠି ସଂଚରଣ ଓ ବିଚରଣ କରୁଥାନ୍ତି ଚରିତ୍ରମାନେ... ଅଯୁତ ଅନୁଭୂତିର ଅନ୍ତସ୍ଥ ଆୟତନରେ ଘୂରିବୁଲୁଥିବା ଘଟଣାର ଘୂର୍ଣ୍ଣିଝଡ଼ ଭିତରୁ ସାଉଁଟା ହୋଇ ଆସିଥାଏ ତାଙ୍କ କଥା ଓ କାହାଣୀ ସବୁ । ପାପ, ପୁଣ୍ୟ, ପ୍ରେମ, ପ୍ରତାରଣା, ଦୁଃଖ, ଦହନ, ଆଶା, ଅବଶୋଷର ଏ ଅଧୁରା ଅପନ୍ତରା ଭିତରେ ଆଉ ଏକ ପୃଥକ୍ ପୃଥିବୀର ପରିକଳ୍ପନା ପାଇଁ ପଡିଆରା ଯୋଗାଇ ଦେଇଥାଏ ତାଙ୍କ କଥାପୁରୁଷ । ଆତ୍ମିକ ଓ ଆଙ୍ଗିକ – ଉଭୟ ଦିଗରେ ରଜନୀକାନ୍ତ ନୂତନତାର ଚମକ ପାଇଁ ଚେଷ୍ଟିତ ।

ରଜନୀକାନ୍ତଙ୍କ କଲମରୁ ଏପର୍ଯ୍ୟନ୍ତ ସୃଷ୍ଟି ହୋଇସାରିଛି ଚାରୋଟି ଉପନ୍ୟାସ : 'ଅବତାର', 'ଜାଙ୍ଗଲିକ', 'ପୁଷ୍ୟାନକ୍ଷତ୍ରର ଇତିବୃତ୍ତ' ଓ 'ମେଘା' ଏବଂ ପାଞ୍ଚୋଟି ଗଳ୍ପ ସଂକଳନ : 'ଷଠିଘର', 'ଶତାଣ୍ଡି ପୁରୁଷ', 'ମାଟିଆ ପୁଅ', 'ଆ ସାକ୍ଷୀ ଦେ' ଓ 'ଜଂବୁଦ୍ୱୀପର ଉପକଥା' ।

ଅଠର ବର୍ଷ ବୟସରୁ ବିକଳାଙ୍ଗ କୁଷ୍ଠରୋଗୀମାନଙ୍କ ସେବାରେ ସେ ସମର୍ପିତ । ନିହାତି ନିକଟରୁ ସେ ନିରେଖି ଆସିଛନ୍ତି ନିଆରା ନର୍କର ନୁଖୁରା ନକ୍ସା... ଦୀର୍ଘଶ୍ୱାସ ଭିତରେ ଶୁଣିଆସିଛନ୍ତି ଦୋସରା ଦୁନିଆର ଧୂସର ଧ୍ରୁପଦୀ... ମୃତ୍ୟୁର ମୃଗୟା ମଧ୍ୟରେ ଖୋଜିଚାଲିଛନ୍ତି ଜୀବନର ଜୀର୍ଣ୍ଣ ଜୀବାଶ୍ମ ... ଝିପିଝିପି ଅନ୍ଧାର ଭିତରେ ଅରାଏ ସକାଳର ସୁନା ସୋରିଷ ! ଜୀବନ ପ୍ରତି ଏହି ଭିନ୍ନ ଦୃଷ୍ଟିଭଂଗୀ ତାଙ୍କୁ ତେଣୁ ଅନ୍ୟ ଅନେକଙ୍କ ଅପେକ୍ଷା ଚିହ୍ନାଇ ଦେଇଛି ଅଲଗା କରି ।

'ଝିପିଝିପି ଅନ୍ଧାର' – କୀର୍ତ୍ତିମାନ୍ କଥାକାର ରଜନୀକାନ୍ତଙ୍କ ସେଇ ଭିନ୍ନ ଭାବଧର୍ମିର ଅଭିନ୍ନ ଅଭିବ୍ୟକ୍ତି ।